# ପ୍ରଫେସର କୃଷ୍ଣଚରଣ ସାହୁ

# ରଚନା ସମ୍ଭାର ୭

## ଦୀନକୃଷ୍ଣ ଦାସ : ରସକଲ୍ଲୋଳ



# ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୭

## ଦୀନକୃଷ୍ଣ ଦାସ : ରସକଲ୍ଲୋଳ

## କହେ କୃଷ୍ଣଦାସ କବି

କୃଷ୍ଣଚରଣ ସାହୁ

(୧୯୨୯ - ୧୯୯୭)

ସଂପାଦକ :

ଯତୀନ୍ଦ୍ର ମୋହନ ମହାନ୍ତି

ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ
ଭୁବନେଶ୍ୱର

ପ୍ରଫେସର କୃଷ୍ଣଚରଣ ସାହୁ ରଚନା ସମ୍ଭାର ୭
ଦୀନକୃଷ୍ଣ ଦାସ : ରସକଲ୍ଲୋଳ : କହେ କୃଷ୍ଣଦାସ କବି
ସଂପାଦକ ଯତୀନ୍ଦ୍ର ମୋହନ ମହାନ୍ତି
ସଂପାଦକ ମଣ୍ଡଳୀ : ରାଜେନ୍ଦ୍ର ପ୍ରସାଦ ଦାସ, ସଂଘମିତ୍ରା ମିଶ୍ର, ବିଜୟଲକ୍ଷ୍ମୀ ସ୍ୱାଇଁ
ବିରାଜ ମୋହନ ଦାସ, ଉଦୟ ନାଥ ସାହୁ
ପ୍ରକାଶକ ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ
C/o., ସୁବର୍ଣ୍ଣରେଖା, କଟକ ରୋଡ଼,
(ଲକ୍ଷ୍ମୀସାଗର ଛକ) ଭୁବନେଶ୍ୱର - ୭୫୧୦୦୬
ଅକ୍ଷର ସଜ୍ଜା, ପ୍ରଚ୍ଛଦ, ମୁଦ୍ରଣ :
ଦୀପକ ପ୍ରିଣ୍ଟର
୧୬୨, ମଧୁସୂଦନ ନଗର, ନିକୋ ପାର୍କ ରୋଡ଼,
ଭୁବନେଶ୍ୱର-୧୨
ପ୍ରଥମ ମୁଦ୍ରଣ - ୨୦୦୪
ମୂଲ୍ୟ : ୧୨୦.୦୦ ଟଙ୍କା

**Professor Krushna Charan Sahoo Rachana Sambhar 7**
(Collected Works of Professor Krushna Charan Sahoo. Vol VII)
Editor : **Jatindra Mohan Mohanty**
Editorial Board : Rajendra Prasad Das, Ms. Sanghamitra Mishra, Ms. Bijayalaxmi Swain, Biraj Mohan Das, Udayanath Sahoo.
Publisher : **Professor Krushna Charan Sahoo Smruti Parishad**
C/o. Subarnarekha, Cuttack Road,
(Laxmisagar Chhak) Bhubaneswar - 751006
DTP, Cover, Printing etc. :
Deepak Printer
162, Madhusudan Nagar
Nicco Park Road, Bhubaneswar -12
1st Edition : 2004
Price : Rs. 120.00

# ଉତ୍ସର୍ଗ

ବିଂଶ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ କଥା ସାହିତ୍ୟିକ,
'କହେ କୃଷ୍ଣଦାସ କବି'ର ସଶ୍ରଦ୍ଧ ଆଲୋଚକ
ଗୋପୀନାଥ ମହାନ୍ତିଙ୍କ ସ୍ମୃତି ଉଦ୍ଦେଶ୍ୟରେ

# ମୁଖବଂଧ

ପ୍ରଫେସର କୃଷ୍ଣଚରଣ ସାହୁ ରଚନାସମ୍ଭାର ୭ରେ ଆମେ ପ୍ରଫେସର ସାହୁଙ୍କର ଗୋଟିଏ ସଂପୂର୍ଣ୍ଣ ଗ୍ରନ୍ଥକୁ ଗ୍ରନ୍ଥିତ କରୁଛୁ । ଗ୍ରନ୍ଥଟି ଦୀନକୃଷ୍ଣ ଦାସଙ୍କର ପ୍ରସିଦ୍ଧ କାବ୍ୟ. ରସକଲ୍ଲୋଳର ବିସ୍ତୃତ ଆଲୋଚନା, ଶୀର୍ଷାଙ୍କ କହେ କୃଷ୍ଣଦାସ କବି, ଓ ଏହା ୧୯୭୬ରେ ପ୍ରକାଶ ପାଇଥିଲା । ଗ୍ରନ୍ଥଟି ପ୍ରକାଶ ପାଇବା ପରେ ସୁଧୀ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ଓ ବହୁ ଭାବରେ ଆଲୋଚିତ ହୋଇଥିଲା । ଏପରି ହେବାର ଅନେକ କାରଣ ଥିଲା । ପ୍ରଥମତଃ, କୌଣସି ବିଶିଷ୍ଟ ପ୍ରାଚୀନ କାବ୍ୟ ଉପରେ ଏପରି ବିସ୍ତାରିତ ଆଲୋଚନା ହେବା ପ୍ରଥମ । ଦ୍ୱିତୀୟରେ, ରସକଲ୍ଲୋଳ ପରି ଲୋକପ୍ରିୟ କାବ୍ୟ ଉପରେ ଆଲୋଚନା ବହୁ ପାଠକଙ୍କୁ ଆଗ୍ରହୀ କରିଥିଲା । ତୃତୀୟତଃ, କହେ କୃଷ୍ଣଦାସ କବିର ଆଲୋଚନାର ସଂଗଠନ ପ୍ରାଚୀନ ସାହିତ୍ୟର ଆଲୋଚନାର ପ୍ରଚଳିତ ଧାରାଠାରୁ ଭିନ୍ନ ଧରଣର ଥିଲା, କୁହାଯାଇ ପାରେ ବେଶ୍ ନୂଆ ପ୍ରକାରର, ଅର୍ଥାତ୍ ଲେଖକର ଜୀବନୀମୂଳକ ସୂଚନା ଓ କାବ୍ୟର ବିଷୟବସ୍ତୁର ବିବରଣୀ ବ୍ୟତୀତ, ଗୋଟିଏ ଦିଗରେ କାବ୍ୟର ସଂଗଠନ, ଶୈଳୀ ଓ ଆଭିମୁଖ୍ୟର ଆଲୋଚନା, ଓ ଅନ୍ୟ ଦିଗରେ ସମକାଳୀନ ପରିବେଶର ଅନ୍ତର୍ଦୃଷ୍ଟିସଂପନ୍ନ ସମାଜତାତ୍ତ୍ୱିକ ଆଲୋଚନା ଗ୍ରନ୍ଥଟିକୁ ଗୋଟିଏ ବୁଦ୍ଧିଦୀପ୍ତ, ବିଶିଷ୍ଟ ସମାଲୋଚନା-ଗ୍ରନ୍ଥ ଭାବରେ ପ୍ରତିଷ୍ଠିତ କରି ପାରିଥିଲା । ପୂର୍ବରୁ ପ୍ରଫେସର ସାହୁ ଜଗମୋହନ ରାମାୟଣ ଓ ଷୋଡ଼ଶ ଶତାବ୍ଦୀର ଭକ୍ତକବି ମାନଙ୍କ ବିଷୟରେ ବହୁ ଅନୁସଂଧାନମୂଳକ ଓ ଗବେଷଣାତ୍ମକ ଆଲୋଚନାମାନ କରିଥିଲେ । କହେ କୃଷ୍ଣଦାସ କବି ତାଙ୍କର ଏହି କାର୍ଯ୍ୟ ସବୁର ଏକ ସୁସଂହତ ଓ ସୁସଂଗଠିତ ପରିପ୍ରକାଶ । ପ୍ରାଚୀନ ଓଡ଼ିଆ କାବ୍ୟର ଆଲୋଚନାର ପରିସରରେ ଏପରି ଆଲୋଚନାର ଅନ୍ୟ ଉଦାହରଣ ବିରଳ ।

ପ୍ରଫେସର ସାହୁଙ୍କର ଆଲୋଚନାର ଧାରା ବୁଝିବା ପାଇଁ ତାଙ୍କରି ଗ୍ରନ୍ଥରୁ ସଂକ୍ଷେପରେ କିଛି ଉଦ୍ଧାର କରାଯାଇ ପାରେ । ଯେପରିକି ରସକଲ୍ଲୋଳର ନାମ କରଣ ସଂପର୍କରେ- "କାବ୍ୟର ନାମକରଣ କରିବା ପାଇଁ କବି ସମ୍ମୁଖରେ ଦୁଇଟି ଉପାଦାନ ଥିଲା, ଶରୀରର ସୌନ୍ଦର୍ଯ୍ୟ ଓ ଆତ୍ମା । କାବ୍ୟରେ ଅନୁସୃତ ଓ ଶରୀରର ସୌନ୍ଦର୍ଯ୍ୟର ପରିମାପକ 'କ' ନିୟମ କାବ୍ୟର ନାମକରଣ ଥିବା

ହେତୁ ଏକଥା ସ୍ପଷ୍ଟ ଯେ କବି ଏଇ ନିୟମକୁ କାବ୍ୟର ପ୍ରାଣ ରୂପରେ ଗ୍ରହଣ କରି ନାହାନ୍ତି । ଅନ୍ୟ ପକ୍ଷରେ କାବ୍ୟକୁ ମନ୍ଥନ କରି ଏଥିରୁ ଜାତ ହେଉଥିବା ସାର ପଦାର୍ଥକୁ କବି 'ରସ' କହୁଛନ୍ତି । ଏହା ହେଉଛି କାବ୍ୟର ଆତ୍ମା ଓ ଏହାର ଉପରେ ପ୍ରତିଷ୍ଠିତ କାବ୍ୟର ନାଁ ସେଥିପାଇଁ 'ରସ କଲ୍ଲୋଳ' ।" ଅନ୍ୟତ୍ର, ରସକଲ୍ଲୋଳରେ ବହୁଳ ବ୍ୟବହୃତ 'କାଳ' ଶବ୍ଦକୁ ବିଶ୍ଳେଷଣ କରି ସେ କହନ୍ତି - "କାଳ କେବଳ ନିର୍ଦ୍ଦିଷ୍ଟ ସମୟ ବା ଋତୁ ନୁହେଁ, ମୃତ୍ୟୁ ନୁହେଁ ବା ମୃତ୍ୟୁ ଦେବତା ନୁହେଁ, କଂସ ପକ୍ଷରେ ନିଜେ ଶ୍ରୀକୃଷ୍ଣ ହେଉଛନ୍ତି କାଳ ସ୍ୱରୂପ ('କାଳ ମୋର ଜନମିଛି ତୁମ୍ଭ କୋଳରେ' ୨-୧୧) । ଶ୍ରୀକୃଷ୍ଣଙ୍କ ମଥୁରା ଗମନ ପରେ କନ୍ଦର୍ପ ଗୋପୀମାନଙ୍କୁ 'କାଳସ୍ୱରୂପ' ଗ୍ରାସ କରିଛି (୨୧-୨୧) । ପୁଣି ବର୍ଷାଋତୁ ବର୍ଣ୍ଣନା କରିବା ପ୍ରସଙ୍ଗରେ କାଳ 'କି ଅବା ବିଷ୍ଣୁ ସମାନ ସର୍ବବ୍ୟାପୀ ଅଚ୍ଛିଦ୍ର ନିବିଡ଼ ମୟେ' ହେବା ସଙ୍ଗେ ସଙ୍ଗେ 'କାଳ ପ୍ରାୟେ ବିକରାଳ' ହୋଇ ଉଠିଛି (୧୩-୧୯) । ବିରହରେ ବସନ୍ତ କାଳ ମଧ ଯୋଗୀମାନଙ୍କ ପାଇଁ 'କାଳ' ହୋଇଯାଏ (୧୬-୧) । ଏସବୁ ପ୍ରୟୋଗରେ କାଳ ଶବ୍ଦ ଶ୍ରୀକୃଷ୍ଣ, କନ୍ଦର୍ପ, ବର୍ଷା, ବସନ୍ତ ପ୍ରାୟେ ପ୍ରତୀତ ହେବା ସଙ୍ଗେ ସଙ୍ଗେ ଏକ ସର୍ବବ୍ୟାପୀ ତଥା ସର୍ବଗ୍ରାହୀ ଅର୍ଥ ପରିଗ୍ରହ କରି କାବ୍ୟ, କବି, ପୁଣି କବିର ଦେବତା ସମସ୍ତଙ୍କୁ ଗ୍ରାସ କରିଛି । ସେତେବେଳେ 'କାଳ ବଳୟେ, କାହାରି ଆୟତ ନୁହଁଇ' କବିର ଏ ବାଣୀ ସ୍ପଷ୍ଟ ଓ ଅର୍ଥଯୁକ୍ତ" ।

ପଞ୍ଚଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀର ମଝି ପର୍ଯ୍ୟନ୍ତ, ଯେଉଁ ସମୟକୁ ସାଧାରଣ ଭାବରେ ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ସମୟ ବୋଲି କୁହାଯାଏ, ସେ ସମୟରେ ପ୍ରାୟ ୪୦ରୁ ଊର୍ଦ୍ଧ୍ୱ କାବ୍ୟ ଓଡ଼ିଆରେ ଲେଖା ଯାଇଥିଲା, ଯାହାକି ଭାରତୀୟ ଭାଷାମାନଙ୍କ ଭିତରେ ଗୋଟାଏ ସର୍ବକାଳୀନ ନିର୍ଣ୍ଣୟକ ସଂଖ୍ୟା । ରସକଲ୍ଲୋଳ ଏହି ସମୟର ଗୋଟିଏ ଉତ୍କୃଷ୍ଟ ରଚନା, ଓ କହେ କୃଷ୍ଣଦାସ କବି, ରସକଲ୍ଲୋଳର ସମପର୍ଯ୍ୟାୟଭୁକ୍ତ ଉତ୍କୃଷ୍ଟ ସମାଲୋଚନା ଗ୍ରନ୍ଥ । ଆଶା ରସକଲ୍ଲୋଳ ଓ ପ୍ରଫେସର ସାହୁଙ୍କର ଅନୁରାଗୀ ପାଠକ ପାଠିକାମାନଙ୍କୁ ଏହା ଯଥେଷ୍ଟ ଆନନ୍ଦ ଦେବ ।

ଯତୀନ୍ଦ୍ର ମୋହନ ମହାନ୍ତି

୨୯.୩.୨୦୦୪

# ସୂଚୀ

# (୧)

# କହେ କୃଷ୍ଣ ଦାସ କବି

ପ୍ରାଚୀନ ଓଡ଼ିଆ ସାହିତ୍ୟର ଜଣାଶୁଣା କବିମାନଙ୍କ ମଧ୍ୟରୁ ଦୀନକୃଷ୍ଣ ଦାସ ଅନ୍ୟତମ । ଷୋଡ଼ଶ ଶତାବ୍ଦୀର ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତଙ୍କ ଶିଷ୍ୟ ପ୍ରଶିଷ୍ୟମାନେ ଗୁରୁଙ୍କ ନାଁ ଧରି, ଗୁରୁଙ୍କ ନାଁରେ ନିଜ ରଚିତ ଗ୍ରନ୍ଥ ସବୁକୁ ଚଳେଇ ନେଇ ବହୁ ସମସ୍ୟା ସୃଷ୍ଟି କଲା ପରି ଓଡ଼ିଶାରେ ବହୁ କୃଷ୍ଣ ବା ଦୀନକୃଷ୍ଣ ଦାସ ଜନ୍ମ ହୋଇ ସେଥି ମଧ୍ୟରୁ କେତେକ କବି ହେବା ପରେ ରସକଲ୍ଲୋଳକାର ଦୀନକୃଷ୍ଣ ଦାସଙ୍କୁ ଚିହ୍ନିବାରେ କଷ୍ଟ ହୁଏ । ଅତୀତ ଓଡ଼ିଶାର ସାହିତ୍ୟିକ ପରଂପରାରେ ଯେଉଁ କୃଷ୍ଣଦାସଙ୍କ ଖବର ସାଇତା ହୋଇ ରହିଛି, ସେମାନଙ୍କ ମଧ୍ୟରୁ କେତେଜଣଙ୍କ ପରିଚୟ ନିମ୍ନରେ ଦିଆଗଲା :

୧ । ପ୍ରସିଦ୍ଧି ଦୃଷ୍ଟିରୁ ପ୍ରଥମ ହେଉଛନ୍ତି ରସବିନୋଦକାର । ସେ ନିଜର ପରିଚୟ ନିମ୍ନ ଭାବରେ ଦେଇଛନ୍ତି -

(କ) ମଧୁସୂଦନ ଜ୍ୟେଷ୍ଠ ଶିଷ୍ୟ । ଭଣିଲେ ଦୀନକୃଷ୍ଣ ଦାସ ।

(ଖ) ମଧୁସୂଦନ ଜ୍ୟେଷ୍ଠ ଶିଷ୍ୟ । ନାମ ମୋହର କୃଷ୍ଣ ଦାସ ।

(ଗ) ପଦ ପ୍ରଚ୍ଛିନ୍ନ କଥା ଗୋଟା । ଭଣିଲା ମଧୁଦାସ ବେଟା ।

(ଘ) ପୂର୍ବର କଥା ବିଧି ସତ । ଭଣିଲେ ମଧୁଦାସ ସୁତ ।

୨ । ତାଙ୍କର କୃତ ନାମରତ୍ନ ଗୀତାରେ ଶ୍ରୀ ରାଧାରମଣ ପୁସ୍ତକାଳୟ ପ୍ରକାଶିତ ନୂତନ ସଂସ୍କରଣର ଶେଷ ଅଧ୍ୟାୟରେ ଦୀନବନ୍ଧୁ ଦାସଙ୍କ ପୁତ୍ର କୃଷ୍ଣ ଦାସଙ୍କର ଉଲ୍ଲେଖ ମିଳେ -

ଅମୃତରୁ ଅଧିକ ମାଧୁରୀ ସାଧୁ ବାଣୀ
ଦୀନବନ୍ଧୁ ଦାସ ପୁତ୍ର କୃଷ୍ଣ ଦାସ ଭଣି ।

୩ । ପୁଣି ସେହି ଗ୍ରନ୍ଥର ବୃହତ୍ ସଂସ୍କରଣରୁ (ବୃହତ୍ ନାମରତ୍ନ ଗୀତା) ଜଣେ ବିପ୍ର ନୃସିଂହ ଦାସ ଶିଷ୍ୟ ଦୀନକୃଷ୍ଣଙ୍କର ସୂଚନା ମିଳୁଥିବା ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ କହିଛନ୍ତି ।

୪ । ମାଘ ମାହାତ୍ମ୍ୟ ଓ ଯମ ଗୀତାର ଲେଖକ ମଧ୍ୟ ଜଣେ କୃଷ୍ଣ ଦାସ । ଯମ ଗୀତାରେ ସେ ନିଜକୁ ନୃସିଂହ ଦାସଙ୍କ ଶିଷ୍ୟ ଭାବେ ପରିଚୟ ଦେଇଛନ୍ତି -

(କ) ଭଣେ ନୃସିଂହ ଦାସ ଦଳା ।
(ଖ) ଅନ୍ତେ ପାଇବ ସ୍ୱର୍ଗବାସ । ଭଣେ ନୃସିଂହ ଦାସ ଶିଷ୍ୟ ।

୫ । ଅପ୍ରକାଶିତ ଚୈତନ୍ୟ ତତ୍ତ୍ୱ ସଂହିତାର ରଚୟିତା ମଧ୍ୟ ଜଣେ କୃଷ୍ଣ ଦାସ । ଗ୍ରନ୍ଥ ମଧ୍ୟରୁ କବିଙ୍କ ସମ୍ବନ୍ଧରେ ନିମ୍ନ ଉପାଦାନ ମିଳିଥାଏ । ଦ୍ୱିତୀୟ ଅଧ୍ୟାୟର ଶେଷରେ ସେ ନିଜକୁ ଦୀନକୃଷ୍ଣ ଦାସ କହିଛନ୍ତି ।

କହଇ ହୀନ କୃଷ୍ଣ ଦାସ । ତତ୍ତ୍ୱ ଯେ ସଂହିତାର ରସ । ୧୨୮ ।

ଦ୍ୱିତୀୟ ଅଧ୍ୟାୟରେ ହୀନ ଶବ୍ଦ କୃଷ୍ଣ ନାମର ପୂର୍ବରୁ ନ ଆସି ପରେ ଆସିଛି ।

କହଇ କୃଷ୍ଣ ହୀନ ଭୃତ୍ୟ । ଚୈତନ୍ୟ ପାଦେ ଦେଇ ଚିତ୍ତ ।

ପରବର୍ତ୍ତୀ ଅଧ୍ୟାୟ ଗୁଡ଼ିକରେ ସେ କୃଷ୍ଣ ଅବଧୂତ ନାମରେ ପରିଚିତ ।

(କ) କହଇ କୃଷ୍ଣ ଅବଧୂତ । ସନ୍ଥ ପାଦରେ ଦେଇ ଚିତ୍ତ ।
(ଖ) କହଇ କୃଷ୍ଣ ଅବଧୂତ । ଯେ ତତ୍ତ୍ୱ ସଂହିତା ବାରତ ।
(ଗ) କହଇ କୃଷ୍ଣ ଅବଧୂତ । ନାରୁବନ ପାଦ୍ରେ ଦେଇ ଚିତ୍ତ । ୧୬-୧୦୮ ।

୬ । ଦାର୍ଢ୍ୟତା ଭକ୍ତିର ଲେଖକ ରାମ ଦାସଙ୍କ ପିତାମହ ମଧ ଜଣେ କୃଷ୍ଣ ଦାସ ।

୭ । ଆଉ ଜଣେ କୃଷ୍ଣ ଦାସ ହେଉଛନ୍ତି, ସାରସ୍ୱତ ଗୀତାର ପ୍ରଣେତା ଶ୍ୟାମସୁନ୍ଦରଙ୍କ ପୁତ୍ର ହୀନ ରତ୍ନ ଦାସଙ୍କ ଶିଷ୍ୟ କୃଷ୍ଣ ଦାସ-

କୃଷ୍ଣ ଦାସ ଆଗରେ ଫେଡ଼େ ରତ୍ନାକର ଦାସ ।

୮ । ଭାଗବତ ବର୍ଣ୍ଣାନୁମାଳିକା ବା ରତ୍ନମାଳିକାର ରଚୟିତା କୃଷ୍ଣ ଦାସଙ୍କର ପିତା ହେଉଛନ୍ତି, ଅନନ୍ତ ଦାସ-

କରିଅଛି ଆଶ କହେ କୃଷ୍ଣ ଦାସ ଅନନ୍ତଦାସ କୁମର ।

୯ । ଶିଶୁ ଅନନ୍ତ ଦାସଙ୍କ ଗରୁଡ଼ ସମ୍ବାଦରୁ ଜଣେ କୃଷ୍ଣ ଦାସଙ୍କର ପରିଚୟ ମିଳେ । ସେ ଜାତିରେ ରଇତ (ରହିତ) । ପଦଟି ହେଉଛି-

ନଗା ଗୋପୀନାଥ ପୁରଟି ଯେହୁ
ଅଜଗଜା ଧନ ଅଟନ୍ତିଟି ସେହୁ ।
ଜାତିରେ ରହିତ ନାମ କୃଷ୍ଣ ଦାସ
ଯାହା ପଚାରିଲୁ ବିନତାର ସିସ ।

୧୦ । 'ଛାନୀ ହୋ ଗାଈର ଘର ପର୍ବତ ଶିଖରେ' ଶୀର୍ଷକ କବିତାର କବି ହେଉଛନ୍ତି ଜଣେ ବିପ୍ର କୃଷ୍ଣ ।

ବିପ୍ର କୃଷ୍ଣ କହେ ଫେଡ଼ ମୋ ଦୋଷ ।

୧୧ । ଅପ୍ରକାଶିତ ସୃଷ୍ଟି ସମ୍ଭବ କାବ୍ୟ ବିନୋଦର କବି ଶିଶୁ କୃଷ୍ଣ ଦାସ ଏ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟିକମାନଙ୍କ ନିକଟରେ ଅଜ୍ଞାତ ।

୧୨ । ସୁଭଦ୍ରା ହରଣର କବି ଦୀନକୃଷ୍ଣ ଦାସ ବୋଧ ହୁଏ ଆଉ ଜଣେ । ରସ ବିନୋଦର ଗ୍ରନ୍ଥ ତାଲିକାରେ ଏହାଙ୍କ ନାମ ନାହିଁ । ଅନ୍ତତଃ ରଚନା ଶୈଳୀର ବୈଶିଷ୍ଟ୍ୟ ଦୃଷ୍ଟିରୁ ଏହା ରସକଲ୍ଲୋଳ ଠାରୁ ଭିନ୍ନ । ଏହି ଗ୍ରନ୍ଥରେ ଚଉଦଟି ଛାନ୍ଦ ଓ ପ୍ରତ୍ୟେକ ଛାନ୍ଦ ଗୋଟିଏ ଗୋଟିଏ ରାଗ ଦ୍ୱାରା ନିୟନ୍ତ୍ରିତ । ପରେ ଆଲୋଚିତ ବେଢ଼ିଲାକ, ଦିଶିଲାକ, ପଡ଼ିଲାକ ପ୍ରଭୃତି ପ୍ରୟୋଗ ଏଥିରେ ମଧ୍ୟ ଅଛି । ଏ କାବ୍ୟରୁ କବିଙ୍କର ଯେଉଁ ପରିଚୟ ମିଳେ ତାହା ହେଉଛି ଏହିପରି ।

(କ) ନୀଳଗିରି ନାଥ ଅନାଥର ନାଥ କୋଟିଯେ କୋଟି ଶରଣ ।
ହୀନ ପାମର ଅଧମ ମତିଠାରେ ଦୟାକର ନାରାୟଣ ।
(୧ମ ଛାନ୍ଦ)

(ଖ) ଭବସିନ୍ଧୁ ପାରିକର ପ୍ରଭୁ ନାରାୟଣ ।
ମୂର୍ଖ ଜନ ଆଶା ବଢ଼ାଇଛି ଶ୍ରୀଚରଣ ଯେ । (୨ୟ ଛାନ୍ଦ)

(ଗ) ସାଧୁଜନେ ମୁହିଁ ପାପୀ ତୁମ୍ଭେ ଭାଗ୍ୟବନ୍ତ ।
ମୂର୍ଖ ଦୀନକୃଷ୍ଣ ପାଦେ ଚିତ୍ତ ଯେ । (୩ୟ ଛାନ୍ଦ)

(ଘ) ଜୟ ନୀଳଗିରି ନାଥ ଚରଣେ ଅଧର୍ମ ହୀନ ପଶିଲା ଶରଣେ ।
(୪ର୍ଥ ଛାନ୍ଦ)

(ଙ) କହଇ ହୀନ ପାଦେ ଖଟିଲେ ଶକ୍ରାଜିତ ତନୁଜ । (୫ମ ଛାନ୍ଦ)

(ଚ) ଜୟ ନୀଳଗିରି ନାଥ ଶ୍ରୀପଦ୍ମ ଚରଣେ ।
ହୀନ ମୁର୍ଖ ଅପାବନ ପଶିଲା ଶରଣ ଯେ । (୬ଷ୍ଠ ଛାନ୍ଦ)

(ଛ) ଶ୍ରୀ ଚରଣ ତ ଶରଣ ମାଗଇ ।
ହୀନ ମୂର୍ଖ ବାଇ ଦାସ ସେ । ସୁଜନେ । (୭ମ ଛାନ୍ଦ)

(ଜ) ତୁଚ୍ଛ ଜୀବ ମୁଁ ଯେଡ଼େ ସାହାସ । ଗୋ । (୯ମ ଛାନ୍ଦ)

(ଝ) ଶ୍ରୀ ପାଦତଳେ ହୀନ ଦୀନର ଆଶ ଯେ । (୧୦ମ ଛାନ୍ଦ)

(ଞ) ଜୟ ନୀଳଗିରି ନାଥ ଚରଣେ ।
ଦୀନ କୃଷ୍ଣ ଦାସ ପଶେ ଶରଣ । (୧୧ଶ ଛାନ୍ଦ)

ଏହିପରି ଖୋଜି ବସିଲେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ କୃଷ୍ଣ ଦାସଙ୍କର ଅଭାବ ନାହିଁ । ସେମାନେ କେତେବେଳେ ଅରକ୍ଷିତ କୃଷ୍ଣ ଦାସ, କେତେବେଳେ ହୀନ କୃଷ୍ଣ ଦାସ, କେତେବେଳେ ଦୀନକୃଷ୍ଣ ଦାସ, କେତେବେଳେ ଶିଶୁ କୃଷ୍ଣଦାସ ତ କେତେବେଳେ କେବଳ କୃଷ୍ଣଦାସ ।

ଜାତି ଦୃଷ୍ଟିରୁ ଦେଖିଲେ ବି ରସବିନୋଦକାର ହେଉଛନ୍ତି ରାଜପୁତ । ପରଂପରାରୁ ରସକଲ୍ଲୋଳକାର ଜାତିରେ କରଣ ଥିବା ଜଣାଯାଏ । ନଗା ଗୋପୀନାଥ ପ୍ରସିଦ୍ଧ ହୋଇଥିବା କୃଷ୍ଣ ଦାସଙ୍କ ଜାତି ହେଉଛି ରଇତ । ବିପ୍ର କୃଷ୍ଣଙ୍କର ମଧ୍ୟ କେତୋଟି କବିତା ଦେଖିବାକୁ ମିଳେ । ବୃହଦ୍ ନାମରତ୍ନ ଗୀତାକୁ ଯେଉଁ କୃଷ୍ଣ ଦାସ ଭଣିତା କରିଛନ୍ତି ସେ ମଧ ଜାତିରେ ବିପ୍ର ଥିଲେ । ଯେଉଁ ଗ୍ରନ୍ଥରେ ପିତାଙ୍କ ନାଁ ଅଛି, ବଂଶର ସୂଚନା ମିଳୁଛି, ସେ ଗ୍ରନ୍ଥର କବିଙ୍କୁ ଚିହ୍ନିବାରେ ଓ ଅନ୍ୟ କୃଷ୍ଣଦାସଙ୍କ ଠାରୁ ଅଲଗା କରିବାରେ ଅସୁବିଧା ହୁଏତ କିଛି ନାହିଁ, ଯେପରିକି ରସ ବିନୋଦ, ତତ୍ତ୍ୱ ସଂହିତା, ମାଘ ମାହାତ୍ମ୍ୟ, ଏକାଦଶୀ ମାହାତ୍ମ୍ୟ, ଯମ ଗୀତା ଓ ରତ୍ନ ମାଳିକା ପ୍ରଭୃତି ଗ୍ରନ୍ଥ ଓ 'ଛାନୀ ହେ ଗାଈର ଘର ପର୍ବତ ଶିଖରେ' କବିତା । ଏହା ବ୍ୟତୀତ ରସ ବିନୋଦର ପ୍ରଥମ ଅଧ୍ୟାୟରେ ସନ୍ନିବେଶିତ ହୋଇଥିବା ଗ୍ରନ୍ଥ ତାଲିକାରେ କେତେଗୁଡ଼ିଏ ଗ୍ରନ୍ଥର ନାମ ମିଳେ । ସେ ସବୁ ଗ୍ରନ୍ଥ ଯେ ମଧୁସୂଦନଙ୍କ ଜ୍ୟେଷ୍ଠ ଦୀନକୃଷ୍ଣ ଦାସଙ୍କ ରଚିତ ଏହା ନିଃସନ୍ଦେହ । କିନ୍ତୁ ଯେଉଁ ସବୁ ଗ୍ରନ୍ଥରେ କେବଳ ଦୀନକୃଷ୍ଣ ଦାସ ଅଛି, ସେ ସବୁ ଗ୍ରନ୍ଥର ରଚୟିତା କେଉଁ ଦୀନକୃଷ୍ଣ କହିବା ସେତେ ସହଜ ନୁହେଁ ।

ରସ ବିନୋଦ ରଚନାକରି ସାରିବାପରେ ରସ ବିନୋଦକାର ଯେ ଅନ୍ୟ ଗ୍ରନ୍ଥ ଲେଖିବ ନ ଥିବେ ଏ ଯୁକ୍ତି ଯେପରି ଦୁର୍ବଳ, ଦୀନକୃଷ୍ଣ ଦାସଙ୍କ ନାଁରେ ମିଳୁଥିବା ଗ୍ରନ୍ଥରାଜି ଯେ ରସବିନୋଦକାରଙ୍କ ରଚନା ଏ କଥା ମଧ୍ୟ ସେହିପରି ହାସ୍ୟାସ୍ପଦ । ଦୀନକୃଷ୍ଣ ଦାସଙ୍କ ନାମ ବହନ କରିଥିବା ଗ୍ରନ୍ଥସବୁ ମଧ୍ୟରୁ ରସକଲ୍ଲୋଳକୁ କେବଳ ରସ ବିନୋଦର କବିଙ୍କ କୃତ କହି ବହୁ ଆଲୋଚନା ହୋଇ ଯାଇଛି । ଜଗମୋହନ ଛାନ୍ଦ ଆବିଷ୍କୃତ ହେବାପୂର୍ବରୁ ରସବିନୋଦର କବି ରସକଲ୍ଲୋଳକାରଙ୍କଠାରୁ ସ୍ୱତନ୍ତ୍ର ଥିଲେ । ରସବିନୋଦର ଗ୍ରନ୍ଥ ସୂଚୀରେ ଜଗମୋହନଛାନ୍ଦର ଗଣନା ପୁଣି ଜଗମୋହନ ଛାନ୍ଦ ଓ ରସକଲ୍ଲୋଳର କେତେକ ପଦ ମଧ୍ୟରେ ଅପୂର୍ବ ସାମଞ୍ଜସ୍ୟ ଲକ୍ଷ୍ୟ କରି ଡକ୍ଟର ଆର୍ତ୍ତବଲ୍ଲଭ ରସବିନୋଦ ଓ ରସକଲ୍ଲୋଳର କବିଙ୍କୁ ଏକ ଓ ଅଭିନ୍ନ ରୂପେ ସ୍ଥିର କଲେ ।

ପ୍ରକୃତରେ ଏହାଠାରୁ ବଳି ପ୍ରମାଣ ଆଉ କଣ ଥାଇପାରେ ? ତେବେ ବି ଏ ସମସ୍ୟାର ଶେଷ ସମାଧାନ ହୋଇପାରିଲା ନାହିଁ । ରସବିନୋଦ ଓ ରସକଲ୍ଲୋଳର ରଚନାଶୈଳୀର ତାରତମ୍ୟକୁ ମୂଳ କରି ଆଲୋଚନା ପରେ ଆଲୋଚନା ଲେଖା ହେଲା । ରସକଲ୍ଲୋଳର ପଦଲାଳିତ୍ୟ ସହ ଥରେ ପରିଚିତ ହେବା ପରେ ରସବିନୋଦର ଅକ୍ଷର ଗଣି ପଦ ଯୋଡୁଥିବା କବି ଯେ ଏପରି ସରସ କବିତା ଲେଖି ପାରିବେ ଏ କଥା ଯେତେ ପ୍ରମାଣ ଦେଲେ ବି, ଯେତେ ବୁଝେଇ କହିଲେ ବି ସେମାନଙ୍କର ବିଶ୍ୱାସ ହେଲା ନାହିଁ । ଅଧ୍ୟାପକ ବ୍ରହ୍ମା ସେମାନଙ୍କ ସହ ତାଳ ମିଳେଇ ତାଙ୍କ ପୂର୍ବରୁ ହୋଇଥିବା ସମସ୍ତ ଆଲୋଚନାକୁ ଆଲୋଡ଼ନ କରି ଶେଷରେ ଅନୁମାନ କଲେ ଯେ ରସବିନୋଦର ତାଲିକାରେ ଥିବା ଜଗମୋହନ ଛାନ୍ଦ ପ୍ରକାଶିତ ଗ୍ରନ୍ଥଠାରୁ ସ୍ୱତନ୍ତ୍ର । ଯେତେବେଳ ପର୍ଯ୍ୟନ୍ତ ରସବିନୋଦକାରଙ୍କ ଜଗମୋହନ ଛାନ୍ଦ ଆବିଷ୍କୃତ ନ ହୋଇଛି ସେତେବେଳ ପର୍ଯ୍ୟନ୍ତ ଏହା କେବଳ ଅନୁମାନ । ଏହାକୁ ପ୍ରମାଣ ରୂପେ ଗ୍ରହଣ କରି ହୁଏ ନାହିଁ । ନିମ୍ନରେ ବିଭିନ୍ନ ପ୍ରମାଣ ସାହାଯ୍ୟରେ ରସକଲ୍ଲୋଳର କବିଙ୍କୁ କୃଷ୍ଣ ଦାସଙ୍କ ମେଳରୁ ଅଲଗା କରି ଦେଖାଇବାର ପ୍ରଚେଷ୍ଟା ହୋଇଛି ।

**ରସବିନୋଦର ଗ୍ରନ୍ଥ ତାଲିକା ଓ ଏହାର ପ୍ରମାଣ :**

ରସବିନୋଦର ପ୍ରଥମ ଅଧ୍ୟାୟରେ ରସବିନୋଦର କବି ଦୀନକୃଷ୍ଣଙ୍କ ରଚିତ ରଚନାବଳୀର ଯେଉଁ ତାଲିକା ସନ୍ନିବେଶିତ, ସେଥିରେ ରସକଲ୍ଲୋଳର ନାମୋଲ୍ଲେଖ ହୋଇ ନ ଥିବାରୁ ସେ ଯେ ଏହାର କବି ନୁହନ୍ତି ଅନୁମାନ ସହଜ ଓ ସ୍ୱାଭାବିକ । ନାରାୟଣଚନ୍ଦ୍ର ଦାସଙ୍କ ଦ୍ୱାରା ପ୍ରକାଶିତ ରସବିନୋଦରୁ କବି ତ୍ରୟୋବିଂଶ ଖଣ୍ଡ ଗ୍ରନ୍ଥ ଓ ବହୁ ଚଉତିଶାର ରଚୟିତା ହୋଇ ଥିବାର ଜଣାଯାଏ । ଅଥଚ ଓଡ଼ିଶା ମିଉଜିୟମ ତଥା ପୁରୀର ରଘୁନନ୍ଦନ ପୁସ୍ତକାଗାରରେ ସଂରକ୍ଷିତ ରସବିନୋଦର ଅନୁଲିପିରେ ଅପେକ୍ଷାକୃତ ଅଳ୍ପସଂଖ୍ୟକ ଗ୍ରନ୍ଥର ନାମୋଲ୍ଲେଖ ମିଳେ । ଏ ତାଲିକାରେ ଭକ୍ତିସାଗର, ନାରକାସୁର ବଧ, ରୁକ୍ମଣ ବଧ, ବାଣାସୁର ବଧ, ଜ୍ଞାନଚୂଡ଼ାମଣି, ମହିମା ସାଗର ଓ ସ୍ତ୍ରୀ ପୁରୁଷ ଲକ୍ଷଣର ଉଲ୍ଲେଖ ନାହିଁ । 'ପ୍ରତାବ ସାଗର' ସ୍ଥାନରେ 'ପ୍ରସ୍ତାବ ସାଗର' ବା 'ପ୍ରସ୍ତାବସିନ୍ଧୁ' ଓ 'ପାଞ୍ଚ ପାଟବଂଶୀ ବିଭା' ସ୍ଥାନରେ 'ସତ୍ୟବତୀ ବିଭା'ର ନାମ ଅଛି । ରସକଲ୍ଲୋଳର ମୁଖବନ୍ଧରେ ପ୍ରଦତ୍ତ ଗ୍ରନ୍ଥ ତାଲିକାରେ କେତୋଟି ପାର୍ଥକ୍ୟ ପରିଦୃଷ୍ଟ ହୁଏ । ସେ 'ସଂସାର ବୋଧନ'କୁ 'କଂସ ବୋଧନ', 'ଅମୃତ ସାଗର'

ପରେ ଗୀତ ଗୋବିନ୍ଦ ଅର୍ଥ ଓ ବୃନ୍ଦାବନ ରାସ ଓ କଂସ ବିଭାକୁ ବୃନ୍ଦାବନ ରାସଙ୍କର ବିଭା (ବୋଧହୁଏ ଛପା ଭୁଲ) ଲେଖିଛନ୍ତି । ଏହି ତାଲିକାରେ ରୁକ୍ମଣ ବଧ, ବାଣାସୁର ବଧ, ଜ୍ଞାନ ଚୂଡ଼ାମଣି ଓ ଭକ୍ତି ସାଗରର ନାଁ ନାହିଁ । ଶ୍ୟାମସୁନ୍ଦର ରାଜଗୁରୁ ମଧ୍ୟ ନାରକାସୁର ବଧ, ରୁକ୍ମଣ ବଧ, ବାଣାସୁର ବଧ ଓ ଜ୍ଞାନ ଚୂଡ଼ାମଣିର ଉଲ୍ଲେଖ କରିନାହାନ୍ତି । ସେହିପରି ସବୁଥିରେ ତତ୍ତ୍ୱସାଗରର ନାଁ ଥିଲେ ହେଁ ନାରାୟଣ ଚନ୍ଦ୍ର ଦାସଙ୍କ ତାଲିକାରେ ନାହିଁ । ତେଣୁ ଜଣାପଡୁଛି ନାରକାସୁର ବଧ, ରୁକ୍ମଣ ବଧ, ବାଣାସୁର ବଧ ଓ ଜ୍ଞାନ ଚୂଡ଼ାମଣି ପ୍ରଭୃତି ଗ୍ରନ୍ଥପରେ ସଂଯୋଜିତ ହୋଇ ମୂଳ ତାଲିକାର କଳେବରକୁ ବୃଦ୍ଧି କରିଛି । ଏଥିରେ ମଧ ରସକଲ୍ଲୋଳର ନାମ ଉଲ୍ଲେଖ ହୋଇ ନ ଥିବାରୁ ରସବିନୋଦର କବି ଯେ ସ୍ୱତନ୍ତ୍ର ଥିଲେ ଏହାହିଁ ଅନୁମିତ ହୁଏ ।

**ପ୍ରମାଣ ରୂପେ ପ୍ରକାଶିତ ଜଗମୋହନ ଛାନ୍ଦ :**

ରସବିନୋଦ ଅନୁଯାୟୀ ଜଗମୋହନ ଛାନ୍ଦରେ ଛଅଶହ ଅଶୀ ପଦ । ଜଗମୋହନ ଛାନ୍ଦର ପ୍ରାଚୀ ସଂସ୍କରଣର ସମ୍ପାଦକଙ୍କ ଗଣନାନୁସାରେ ଏହାର ପଦ ସଂଖ୍ୟା ହେଉଛି, ଛଅଶହ ଷୋହଳ । ତୃତୀୟ ଛାନ୍ଦର ପଦ ଗଣନା କଲାବେଳେ ସମ୍ପାଦକ ଦୁଇପାଦକୁ ଏକପଦ ରୂପେ ଗଣନା କରିଥିବା ବେଳେ ଜଣେ ଲିପିକାର ଛଅ ପାଦରେ ଏକପଦ କରିଛନ୍ତି । ତାଙ୍କ ହିସାବ ଅନୁଯାୟୀ ଜଗମୋହନ ଛାନ୍ଦରେ ମୋଟେ ପାଞ୍ଚଶହ ଅଠାବନ ପଦ । ପ୍ରାଚୀନ ପ୍ରକାଶିତ ଗ୍ରନ୍ଥର ପଦ୍ୟ ଗଣନାକୁ ପ୍ରାମାଣିକ ରୂପେ ଗ୍ରହଣ କଲେ ରସବିନୋଦରେ ଗଣନାଠାରୁ ଚଉଷଠି ପଦ କମିଯାଏ । ଲିପିକାରଙ୍କର ସାଧାରଣ ପ୍ରବୃତ୍ତି ହେଉଛି ପଦ ଯୋଡ଼ିବା । ଯେ କୌଣସି ପ୍ରାଚୀନ ଗ୍ରନ୍ଥର ବୃହତ କଳେବର ଏହାର ମୂକ ସାକ୍ଷୀ । ଛାନ୍ଦ ଗ୍ରନ୍ଥ ସବୁରେ ଏ ପ୍ରକାର ପ୍ରକ୍ଷେପାଂଶର ସଂଖ୍ୟା ଅପେକ୍ଷାକୃତ କମ ହେଲେ ବି ପଦ କାଟି ଗ୍ରନ୍ଥର କଳେବରକୁ କ୍ଷୁଦ୍ର କରିବା ପ୍ରାୟ ଦେଖାଯାଏ ନାହିଁ । ଏଥିରୁ ଜଣାପଡୁଛି ରସବିନୋଦରେ ଥିବା ଜଗମୋହନ ଛାନ୍ଦ ପ୍ରାଚୀ ପ୍ରକାଶିତ ଗ୍ରନ୍ଥଠାରୁ ସ୍ୱତନ୍ତ୍ର ।

**ଚୈତନ୍ୟ ତତ୍ତ୍ୱ ସଂହିତାର ସୂଚନା :**

ଚୈତନ୍ୟ ତତ୍ତ୍ୱ ସଂହିତା ଏ ପର୍ଯ୍ୟନ୍ତ ଅପ୍ରକାଶିତ । ଖଣ୍ଡିଏ ଅସଂପୂର୍ଣ୍ଣ ପୋଥିରୁ ଦୀନକୃଷ୍ଣ ଦାସଙ୍କ ସମ୍ବନ୍ଧରେ କେତୋଟି ମୂଲ୍ୟବାନ ଉପାଦାନ ମିଳିଥାଏ ।

ଏଥିରେ ଚୈତନ୍ୟ ବକ୍ତା ଓ ସାର୍ବଭୌମ ଶ୍ରୋତା । ଏହାର ରଚୟିତା କୃଷ୍ଣଦାସ ନିଜକୁ କୃଷ୍ଣ ଅବଧୂତ କହିଛନ୍ତି । ଏହାଙ୍କ ଗୁରୁଙ୍କ ନାମ ଲକ୍ଷ୍ମଣ ଅବଧୂତ ଓ ପିତାଙ୍କ ନାମ ମଧୁସୂଦନ । ରସବିନୋଦ ରଚୟିତା ଦୀନକୃଷ୍ଣ ଦାସଙ୍କ ପିତା ମଧ୍ୟ ମଧୁସୂଦନ । ରସବିନୋଦକାରଙ୍କ 'କଲାକ' 'କରିବାକ' ପ୍ରଭୃତି ପ୍ରୟୋଗ ଏଥିରେ ବି ଅଛି । ରସବିନୋଦରେ ଆଲୋଚିତ ହୋଇଥିବା ତତ୍ତ୍ୱଜ୍ଞାନ ଏ ଗ୍ରନ୍ଥର ମଧ୍ୟ ମୁଖ୍ୟ ବିଷୟବସ୍ତୁ । ଏ ସବୁ ପ୍ରମାଣରୁ ରସବିନୋଦର ରଚୟିତାଙ୍କୁ ଚୈତନ୍ୟ ତତ୍ତ୍ୱ ସଂହିତାର ଲେଖକ ରୂପେ ଗ୍ରହଣ କରାଯାଇପାରେ । ରସବିନୋଦର ଗ୍ରନ୍ଥସୂଚୀରେ ଚୈତନ୍ୟ ତତ୍ତ୍ୱ ସଂହିତାର ନାଁ ନ ଥିବାରୁ ଏହା ବୋଧହୁଏ ପରବର୍ତ୍ତୀ ରଚନା । ରସବିନୋଦରେ ଆଦର୍ଶ ସିଦ୍ଧଙ୍କର ଯେଉଁ ବର୍ଣ୍ଣନା ରହିଛି ସେଥିରୁ ପରବର୍ତ୍ତୀ ଜୀବନରେ ସେ ଜଣେ ଅବଧୂତ ସନ୍ୟାସୀଙ୍କୁ ନିଜର ଗୁରୁ କରିଥିବା ଅସମ୍ଭବ ନୁହେଁ । ଏପରି ଜଣେ ଅବଧୂତ ଯୋଗୀ ପକ୍ଷରେ ରସକଲ୍ଲୋଳ ସଦୃଶ ପ୍ରେମରସାପ୍ଲୁତ ଗ୍ରନ୍ଥ ରଚନା କରିବା କେତେଦୂର ସମ୍ଭବ ତାହା ସୁଧୀ ପାଠକବୃନ୍ଦ ସହଜରେ ଅନୁମାନ କରି ପାରିବେ ।

**ଭାଷା ପ୍ରୟୋଗର ବିଶିଷ୍ଟତା :**

ଏ ସବୁ ଆନୁସଙ୍ଗିକ ପ୍ରମାଣକୁ ପୁଷ୍ଟ କରେ ଭାଷା ରାଜ୍ୟରେ କବିଙ୍କର କେତୋଟି ବିଶିଷ୍ଟ ପ୍ରୟୋଗ । ପ୍ରଥମ ବୈଶିଷ୍ଟ୍ୟ ହେଉଛି କ୍ରିୟାପଦର ଶେଷରେ 'କ' ଯୋଗକରି 'କଲାକ' 'କରିବାକ', 'ହୋଇଲାକ', ପ୍ରଭୃତି କ୍ରିୟାର ସୃଷ୍ଟି । ଏହାକୁ ରସବିଦୋଦକାରଙ୍କ ବ୍ୟବହୃତ ଭାଷାର ଏକ ବୈଶିଷ୍ଟ୍ୟ ରୂପେ ଗ୍ରହଣ କରି ପରୀକ୍ଷା କଲେ ଜଣାପଡ଼ିବ ଯେ ରସବିନୋଦର ତାଲିକାରୁ ପ୍ରକାଶିତ ହୋଇଥିବା ଗ୍ରନ୍ଥ ସବୁରେ ଏ ପ୍ରକାର ବ୍ୟବହାରର ଉଦାହରଣ ମିଳୁଛି । ଦୃଷ୍ଟାନ୍ତ ପାଇଁ ରସବିନୋଦର କେତୋଟି ଧାଡ଼ି ହେଉଛି-

୧ । ବିଷ୍ଣୁଙ୍କୁ କଲାକ ଦର୍ଶନ । (ପୃ-୧୩)

୨ । ବୋଲିଣ କଲାକ ରୋଦନ । (ପୃ-୪୦)

୩ । ଗାଣ୍ଡିବ ଧଇଲାକ ହସ୍ତ । (ପୃ-୩୦୪)

୪ । ବୁଦ୍ଧିଏ ସ୍ଫୁରିଲାକ ଆସି । (ପୃ-୨୮୧)

୫ । ସେ ତାକୁ ପାଳିଲାକ ଶ୍ରେଷ୍ଠ । (ପୃ-୨୮୧)

ନାମରତ୍ନ ଗୀତାରୁ ମଧ୍ୟ ଏ ପ୍ରକାର ପ୍ରୟୋଗର ଉଦାହରଣ ମିଳେ ।

୧ । ଏଥିର କାରଣ କହିବାକ ଚଉବାହା । (ପୃ-୭)

୨ । ସାର କରି ଅସାର କଲାକ ବୃଷକେତୁ । (ପୃ-୧୬)

୩ । ଅବଶ୍ୟ ଏମନ୍ତ ବୋଲି କରିବାକ ଇଯେ । (ପୃ-୨୨)

୪ । ମନୁଷ୍ୟ ରୂପ ପ୍ରକାଶ ହୋଇଲାକ ତହୁଁ । (ପୃ-୨୬)

ଏ ପ୍ରକାର କ୍ରିୟାରୂପ ପ୍ରସ୍ତାବସିନ୍ଧୁ, ଗୁଣସାଗର ଓ ଭୂତକେଳିରେ ବି ଅଛି ।
ପ୍ରସ୍ତାବସିନ୍ଧୁରୁ କେତୋଟି ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା-

୧ । ପ୍ରବେଶ କଲାକ ନାମ ଭିତର । (ପୃ-୩୧)

୨ । କହୁଁ କହୁଁ ନାମ ଗଲାକ ଭାସି । (ପୃ-୩୨)

୩ । କେ ଅବା କାହାକୁ କଲାକ ରାୟେ । (ପୃ-୩୭)

୪ । ଏଣେ ଯେ ଖବର ଦେଲାକ ବସି । (ପୃ-୪୪)

୫ । ଏତେ ବୋଲି ମାଳା ଦେଲାକ ଶୋକେ । (ପୃ-୫୫)

୬ । ଏମନ୍ତ ବିଦେଶୀଥିଲାକ ବସି । (ପୃ-୬୩)

୭ । ଚୋର ଖଣ୍ଡ ନିଏ କଲେକ ହେଲା । (ପୃ-୭୦)

୮ । ପ୍ରସବ କଲାକ ସାଧବ ନାରୀ । (ପୃ-୭୮)

ଗୁଣ ସାଗର ଏ ପ୍ରକାର ବ୍ୟବହାରରୁ ମୁକ୍ତ ନୁହେଁ ।

୧ । ବହୁତ ନିନ୍ଦିଣ ପ୍ରହ୍ଲାଦବୀରକୁ ସ୍ଥାନରୁ ଦେଲାକ କାଢ଼ି ।(ପୃ-୧୯)

୨ । ବିଷ୍ଣୁ ଦୂତମନେ ବ୍ରାହ୍ମଣକୁ ଆସି ବେଢ଼ିଲେକ ସେହିକ୍ଷଣି । ପୃ-୩୦)

ଭୂତକେଳିରେ ଅଛି -

୧ । କଥାରେ ଭୁଲାଇ ରାଧା ଭାଙ୍ଗିଲେକ ଅଣ୍ଡା । (ପୃ-୫)

୨ । ସମ୍ପୂର୍ଣ୍ଣ ଚଉଦ ଘଡ଼ି ହୋଇଲାକ ନିଶି । (ପୃ-୬)

୩ । ନୟନ ମଳିଣ ରାଧା ଚାହିଁଲେକ ଚାଣ୍ଡେ । (ପୃ-୭)

୪ । ନିଦାନ ବେଳକୁ ଯେଣୁ ଘୋଟିଲାକ ଯମ । (ପୃ-୧୧)

୫ । ଅନ୍ତର୍ଯ୍ୟାମୀ ଠାକୁର ତା ଜାଣିଲେକ ତହିଁ । (ପୃ-୧୫)

୬ । ମଲା ପ୍ରାଣୀଠାରେ କେତେ ମାରିବାକ ମାଡ଼ । (ପୃ-୨୨)

୭ । ବିନୟ ହୋଇଣ ସ୍ତୁତି କରିବାକ ଯାଇ । (ପୃ-୨୫)

୮ । ଶ୍ରୀହରିଙ୍କ ଉଦରକୁ ଦେଲେକ ଅନାଇ । (ପୃ-୩୭)

ରସକଲ୍ଲୋଳ ଜଗମୋହନଛାନ୍ଦ ଓ ଚଉତିଶା ମଧୁଚକ୍ରରେ ଥିବା ଦୀନକୃଷ୍ଣ ଦାସଙ୍କ ଚଉତିଶା ସବୁରେ ଏ ପ୍ରକାର ପ୍ରୟୋଗ ଥରେ ହେଲେ ବି ଆସିନାହିଁ । ଏ ସବୁ ଉଦାହରଣକୁ ପ୍ରମାଣରୂପେ ଗ୍ରହଣ କଲେ ରସବିନୋଦ ରଚୟିତା ଯେ ଜଣେ ସ୍ୱତନ୍ତ୍ର ବ୍ୟକ୍ତି ଏହାହିଁ ସ୍ପଷ୍ଟ ହୁଏ ।

ଅନ୍ୟ ପ୍ରମାଣ ବଳରେ ରସକଲ୍ଲୋଳକାରଙ୍କୁ ରସବିନୋଦକାରଙ୍କ ଠାରୁ ସ୍ୱତନ୍ତ୍ରରୂପେ ଉପସ୍ଥାପିତ କରାଯାଇ ପାରେ । ଜଗମୋହନ ଛାନ୍ଦ, ରସକଲ୍ଲୋଳ ଓ ମଧୁମଙ୍ଗଳରେ ବହୁ ପଦର ସମାନତା ଅଛି । ଏ ପ୍ରକାର ସମାନତାକୁ କବି ଦୀନକୃଷ୍ଣଙ୍କ ରଚନାଶୈଳୀର ଏକ ବୈଶିଷ୍ଟ୍ୟରୂପେ ଗ୍ରହଣ କରାଯାଇ ପାରେ । ପଦର ସମାନତାକୁ ପ୍ରମାଣରୂପେ ଗ୍ରହଣ କଲାବେଳେ ପ୍ରଧାନ ଅସୁବିଧା ହେଉଛି ଦୀନକୃଷ୍ଣଙ୍କ ପଦ୍ୟାବଳୀର ଲୋକପ୍ରିୟତା । ଦୀନକୃଷ୍ଣ କବି ଭାବରେ ପ୍ରସିଦ୍ଧ ହେବା ପରେ ତାଙ୍କ ସରସ ରଚନାବଳୀ ବହୁ ପରବର୍ତ୍ତୀ କବିଙ୍କୁ ପ୍ରଭାବିତ କରିଥିବ । ତେଣୁ ସେମାନଙ୍କ କାବ୍ୟରେ ରସକଲ୍ଲୋଳ ପଦ ସଦୃଶ ପଦସବୁକୁ ଦେଖି ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ । ସେମାନଙ୍କୁ ଦୀନକୃଷ୍ଣଙ୍କ ଦ୍ୱାରା ପ୍ରଭାବିତ କବି ଭାବରେ ଗ୍ରହଣ କରାଯାଇ ପାରେ । ଏ ଶ୍ରେଣୀୟ କବିଙ୍କ ଠାରୁ ଅନନ୍ତଦାସ ସୁତ ଓ ନାମମାଳିକାର ଲେଖକ କୃଷ୍ଣଦାସଙ୍କ କଥା ସ୍ୱତନ୍ତ୍ର । ପଣ୍ଡିତ ବିନାୟକ ମିଶ୍ର, ତାରିଣୀ ଚରଣ ରଥଙ୍କ ବିବରଣୀ ଉପରେ ନିର୍ଭର କରି ଗୀତ ଗୋବିନ୍ଦ, ମାଘ ମାହାତ୍ମ୍ୟ, ପୀୟୂଷ ରତ୍ନାକର, ଦେଉଳ ତୋଳା ଓ ଭାଗବତ ପ୍ରଭୃତି ଗ୍ରନ୍ଥ ଏହି କବିଙ୍କ ଦ୍ୱରା ରଚିତ ହୋଇଥିବା କହନ୍ତି । ଅନନ୍ତଦାସ ସୁତଙ୍କ ରଚିତ ଏ ସବୁ ଗ୍ରନ୍ଥ ପଣ୍ଡିତ ବିନାୟକଙ୍କ ପରି ମୁଁ ମଧ ଦେଖିନାହିଁ । ତେବେ ଏଥିରେ ଥିବା ମାଘ ମାହାତ୍ମ୍ୟ ବୋଧହୁଏ ନୃସିଂହଦାସ ଶିଷ୍ୟ କୃଷ୍ଣଦାସଙ୍କର, ଓ ଦାମଦାସଙ୍କ ରଚିତ ଦେଉଳତୋଳାର ଛପା ବହିର ଶେଷରେ ଓ ମଲାଟ ଉପରେ କୃଷ୍ଣଦାସଙ୍କ ରଚିତ କୁହାଯାଇଛି । ହୁଏତ ସେଇଥିରୁ କୃଷ୍ଣଦାସଙ୍କୁ ଦେଉଳତୋଳାର ଲେଖକରୂପେ ଗ୍ରହଣ କରାଯାଇଛି । ଅନନ୍ତଦାସ କୁମର କୃଷ୍ଣଦାସଙ୍କର ଦୁଇଟି ଗ୍ରନ୍ଥ ମୋ ଦୃଷ୍ଟିରେ ପଡ଼ିଛି । ସେଥିରୁ ପ୍ରଥମଟି ହେଉଛି ନାମମାଳିକା ଓ ଦ୍ୱିତୀୟଟି ହେଉଛି କୁମାର ବୋଧନ । କୁମାର ବୋଧନର ଅନୁଲିପି ମୋ ନିକଟରେ ବର୍ତ୍ତମାନ ନ ଥିବାରୁ ମୁଁ ଏହାର ଆଲୋଚନା କରିପାରୁ ନାହିଁ । ରସକଲ୍ଲୋଳ ସହ ନାମମାଳିକା ଗ୍ରନ୍ଥର ସାଦୃଶ୍ୟ ନିମ୍ନରେ ପ୍ରଦତ୍ତ କେତୋଟି ଉଦାହରଣରୁ ସ୍ପଷ୍ଟ ହେବ :

୧ । କରିଅଛି ଆଶ କହେ କୃଷ୍ଣଦାସ ଅନନ୍ତଦାସ କୁମର -
ନାମମାଳିକା ।
କରିଥିଲା ଆଶ ଶ୍ରୀକ୍ଷେତ୍ରେ ନିବାସ କରିବାକୁ ଦୀନକୃଷ୍ଣ -
ରସକଲ୍ଲୋଳ ।
୨ । ସେ ତରୁ ମହିମା କେ କହି ପାରିବ ମାନବ ଶରୀର ବହି -
ନାମମାଳିକା ।
କେ କହିବ ଗୋପ ଯୁବତୀଙ୍କ ତପ ମାନବ ଶରୀର ବହି -
ରସକଲ୍ଲୋଳ ।

୩ । ନାମମାଳିକାରେ ଭାଗବତକୁ ପରମ ପୀୟୁଷ ରସ କହିବା ପରି ରସକଲ୍ଲୋଳରେ କୃଷ୍ଣ କଥାକୁ ରସ ମଧ୍ୟେ ପୀୟୁଷ କୁହାଯାଇଛି । ଏହା ବ୍ୟତୀତ ନାମମାଳିକାର 'କଳିକଳୁଷ କଞ୍ଜ ବାରଣ', 'ଭାଷୁଥାନ୍ତି କୋମଳ ବଚନ' ଓ 'ଭାଗବତ ବାନ୍ଧି ଭେଳାରେ ଭବାବଧିତରିବାର ନୋହେ' ସହ ରସକଲ୍ଲୋଳର 'କଳମଷ ବାରଣ ବାରଣ ଅନ୍ତକ', 'କୋମଳକରି କଥାମାନ କହ', 'କଳିକଳୁଷ ସଂଘାତ' ଓ 'କରେ ଧଇଲ ପର୍ବତ ନୋହିଲା' ପ୍ରଭୃତି ପଂକ୍ତିର ତୁଳନା କରାଯାଇ ପାରେ । ଏ ସବୁ ପଂକ୍ତିରେ ଥିବା ସମାନତାକୁ ପ୍ରଭାବ କୁହାଯାଇ ପାରେନାହିଁ । ଅନନ୍ତଦାସ ସୁତ କୃଷ୍ଣଦାସ ଶୁଣି ଏ ସବୁକୁ ନକଲ କରିଥିବା ଅନୁମାନ କଲେ ଅସଂଗତ ହେବ । ତେଣୁ ଏ ସବୁ ପଂକ୍ତିକୁ ପ୍ରମାଣ ରୂପେ ଗ୍ରହଣ କରି ରସକଲ୍ଲୋଳକାରଙ୍କୁ ଅନନ୍ତଦାସ ସୁତ କୃଷ୍ଣଦାସ ରୂପେ ଗ୍ରହଣ କରାଯାଇ ପାରେ ।

ଅନନ୍ତଦାସ କୁମର କୃଷ୍ଣଦାସଙ୍କୁ ପଣ୍ଡିତ ବିନାୟକ ମିଶ୍ର ଅଷ୍ଟାଦଶ ଶତାବ୍ଦୀର ଓ ରସବିନୋଦକାରଙ୍କ ପୂର୍ବବର୍ତ୍ତୀରୂପେ ଗ୍ରହଣ କରିଛନ୍ତି । ଏ ପ୍ରକାର ସମୟ ନିର୍ଦ୍ଧାରଣ ପାଇଁ ସେ କୌଣସି କାରଣ ଦର୍ଶାଇ ନାହାନ୍ତି । ଶ୍ରୀ କେଦାରନାଥ ମହାପାତ୍ର ଖୁର୍ଦ୍ଧା ଇତିହାସରେ ସାରସ୍ୱତ ଗୀତାର ପ୍ରଣେତା ରତ୍ନାକର ଦାସଙ୍କୁ ବିନା କାରଣରେ ଅନନ୍ତଦାସ କୁମର କୃଷ୍ଣଦାସଙ୍କର ଗୁରୁରୂପେ ଅନୁମାନ କରି କୃଷ୍ଣଦାସଙ୍କୁ ପୁଣି ବିନା କାରଣରେ ବୀରକେଶରୀ ଦେବଙ୍କ ସମକାଳୀନରୂପେ ଗ୍ରହଣ କରିଅଛନ୍ତି । ଅନନ୍ତଦାସ ସୁତ କୃଷ୍ଣଦାସ ଜଣେ ପ୍ରାଚୀନ କବି । ରସକଲ୍ଲୋଳ ସହ ନାମମାଳିକାରେ ଥିବା କେତୋଟି ପଂକ୍ତିର ସମାନତାର ଏ

ଦୁଇ ଗ୍ରନ୍ଥର ଲେଖକଙ୍କୁ ଜଣେ ବୋଲି ଗ୍ରହଣକରି ଏହି କବିଙ୍କ ସମୟ ଅଷ୍ଟାଦଶ ଶତାବ୍ଦୀ କୁହାଯାଇପାରେ ।

ଆଲୋଚନାର ନିଷ୍କର୍ଷ ହେଉଛି ଯେ ରସବିନୋଦର ତାଲିକାରେ ରସକଲ୍ଲୋଳର ନାଁ ନ ଥିବାରୁ, ରସବିନୋଦର ଭାଷା ସହ ରସକଲ୍ଲୋଳର ସମାନତା ପ୍ରମାଣିତ ନ ହେବାରୁ, ପୁଣି ଅପର ପକ୍ଷେ ଜାମମାଳିକାର ଭାଷା ସହ ରସକଲ୍ଲୋଳର ସାଦୃଶ୍ୟ ଥିବାରୁ ରସକଲ୍ଲୋଳକାରଙ୍କୁ ମଧୁସୂଦନ ଜ୍ୟେଷ୍ଠ ଶିଷ୍ୟ ନ କହି ଅନନ୍ତଦାସ ସୁତ କୃଷ୍ଣଦାସ କହିଲେ ବିଶେଷ ଯୁକ୍ତିଯୁକ୍ତ ହେବ । ସେତେବେଳେ ରସକଲ୍ଲୋଳକାରଙ୍କୁ ପୁରୀବାସୀ କରଣ ଓ ରସବିନୋଦକାରଙ୍କୁ ଜଳେଶ୍ୱରବାସୀ ରାଜପୁତ କହିବାରେ ହୁଏତ ଅସୁବିଧା ହେବ ନାହିଁ ଓ ଲୋକପ୍ରଚଳିତ ଜନଶ୍ରୁତି ମଧ୍ୟ ସମର୍ଥିତ ହେବ । ଏ ସବୁ ପ୍ରମାଣରୁ ରସକାଲ୍ଲୋଳକାର ଯେ ରସବିନୋଦର ରଚୟିତା ନୁହନ୍ତି ଏହାହିଁ ପ୍ରମାଣିତ ହୁଏ ।

**ପୁରୀବାସୀ ଦୀନକୃଷ୍ଣ**

ରସକଲ୍ଲୋଳର ଶବ୍ଦାବଳୀକୁ ଅଧ୍ୟୟନ କଲେ କବିଙ୍କ ବାସସ୍ଥାନ ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ଜାତ ହୁଏ । କବି ଶ୍ରୀକୃଷ୍ଣ ତଥା ଜଗନ୍ନାଥଙ୍କ ଦିନଚର୍ଯ୍ୟା ବା ନିତ୍ୟକୃତ୍ୟ (୨୭-୩୮) ବର୍ଣ୍ଣନା କଲାବେଳେ ଏକ ସ୍ୱତନ୍ତ୍ର ପ୍ରକାର ଭାଷା ବ୍ୟବହାର କରିଛନ୍ତି । ସେଥିମଧ୍ୟରୁ ମଣୋହି (୨୭-୩୬), ଭୁଞ୍ଜାଇବା (୫-୨୯), ଆଚମନ, (୫-୨୯), ପହୁଡ଼ିବା (୫-୨୭), ଅପହୁତ (୩୫-୨୨), ମାର୍ଜ୍ଜନ (୨୫-୨୫), ବିଜେ (୧୩-୨୧), କାଠିଲାଗି (୨୪-୧୭), ତଡପ ଲାଗି (୨୪-୧୬), ବାସଲାଗି, (୨୪-୧୭), ଭଲାଗି (୨୭-୩୮), ଅବକାଶ (୬-୩୫), ପରିକ୍ରମା (୨୪-୧୪), ମୁଖ ପଖାଳିବା (୨୪-୧୪), ଶ୍ରୀଅଙ୍ଗ ମର୍ଦ୍ଦନ (୫-୨୯), ଶ୍ରୀମୁଖ ପୋଛା (୫-୨୯), ସେବା (୭-୨୮), ନିଯୋଗ (୨୭-୨୯) ପ୍ରଭୃତି ଶବ୍ଦ ବା ପ୍ରୟୋଗ ବିଶେଷଭାବେ ଉଲ୍ଲେଖଯୋଗ୍ୟ । ଏ ସବୁ ଶବ୍ଦ ରସକଲ୍ଲୋଳରେ ବହୁଳ ଭାବେ ବ୍ୟବହୃତ । ରସବିନୋଦରେ ଏ ସବୁ ଶବ୍ଦମଧ୍ୟରୁ କେବଳ ବିଜେ କରିବାର ବ୍ୟବହାର ଅଛି । ଏ ସବୁ ଶବ୍ଦ ଜଗନ୍ନାଥକ୍ଷେତ୍ରର ପ୍ରଚଳିତ ଶବ୍ଦ । କବି ପୁରୀ ବା ନିକଟବର୍ତ୍ତୀ କୌଣସି ସ୍ଥାନରେ ରହୁଥିବା ଯୋଗୁଁ ଏ ସବୁ ଶବ୍ଦ ସହ ପରିଚିତ ହୋଇଥିବେ ଓ କାବ୍ୟରେ ବ୍ୟବହାର କରିଥିବେ । ରସବିନୋଦରେ ଏ ସବୁ ଶବ୍ଦ ନ ଥିବାରୁ ରସବିଦୋଦକାରଙ୍କର ପୁରୀ ସହ ବିଶେଷ ସଂପର୍କ ନଥିବା

ପ୍ରମାଣିତ ହୁଏ । ରସବିନୋଦର କବି ମଧ୍ୟ ନିଜକୁ ପୁରୀବାସୀ ନ କହି ଜଳେଶ୍ୱରବାସୀ କହିଛନ୍ତି ।

ନିତ୍ୟ ନୀଳାଦ୍ରି ବିଳାସ ଗ୍ରନ୍ଥରୁ କୃଷ୍ଣଦାସଙ୍କର ଯେଉଁ ପରିଚୟ ମିଳେ, ସେଥିରୁ ସେ ଅତିବଡ଼ି ଜଗନ୍ନାଥ ଗୋସ୍ୱାମୀ ପ୍ରଶିଷ୍ୟ, ପୁରୀବାସୀ, ପୁଣି ଗୃହୀ ବୈଷ୍ଣବ ଥିବା ଜଣାଯାଏ । ଏହି ଗ୍ରନ୍ଥ ଅନୁଯାୟୀ କୃଷ୍ଣଦାସଙ୍କ ଗୁରୁ ପରଂପରା ହେଉଛି - ଶ୍ରୀ ଅତିବଡ଼ ଜଗନ୍ନାଥ ଗୋସ୍ୱାମୀ, ହରିଦାସ ଗୋସ୍ୱାମୀ, କୃଷ୍ଣଦାସ ଗୋସ୍ୱାମୀ, ବନ୍ଧୁ ଗୋସ୍ୱାମୀ, ମୁରାରି ଗୋସ୍ୱାମୀଳ, ଶ୍ରୀ ନିବାସ ଦାସ, ମାଧୁରୀ ଦାସ, ଦୀନବନ୍ଧୁ ଦାସ, ଦାମୋଦର ଗୋସ୍ୱାମୀ, ଅନନ୍ତ ଦାସ (ଗୃହୀ)କୃଷ୍ଣଦାସ ବାସୁଦେବ/ସାଧୁ/ଦୀନ ହଂସ । କୃଷ୍ଣଦାସଙ୍କ ପରିଚୟ ପ୍ରଦାନ କରି ନିଜେ ନୀଳାଦ୍ରି ବିଳାସର କବି କହିଛନ୍ତି :

ତାଙ୍କ ନନ୍ଦନ ଚତୁର୍ଥେ ଜ୍ୟେଷ୍ଠ କୃଷ୍ଣଦାସ
ବାସୁଦେବ ସାଧୁନାମ ଦୀନ ହଂସ ।୩୯୮।
ସେ ଗୃହାଶ୍ରମେ ଥାଇଂଣ ଅନାଥ
ଯେକ କ୍ଷଣେ ନାଥ ନାମ ଜଗନ୍ନାଥ ।୩୯୯।
ନୀଳକନ୍ଦରେ କରିଛନ୍ତି ଘର ।
ନାମ କହନ୍ତି ସେ କରୁଣାସାଗର । ୪୦୦।

ଶ୍ରୀ ଭାଗବତ ବର୍ଣ୍ଣାନୁମାଳିକା ବା ନାମମାଳିକା, ଜଗନ୍ନାଥଦାସଙ୍କ ଭାଗବତର ସଂକ୍ଷେପ ସଂସ୍କରଣ । ସେଥିରେ ଜଗନ୍ନାଥଦାସଙ୍କ ମହିମାବର୍ଣ୍ଣିତ । ନିତ୍ୟ ନୀଳାଦ୍ରି ବିଳାସ ଅନୁଯାୟୀ ମଧ୍ୟ ସେ ଜଗନ୍ନାଥ ଦାସଙ୍କ ପ୍ରଶିଷ୍ୟ । ଉଭୟ ଗ୍ରନ୍ଥରେ ତାଙ୍କ ପିତାଙ୍କ ନାମ ଅନନ୍ତଦାସ । ନୀତ୍ୟ ନିଳାଦ୍ରି ବିଳାସ ମତରେ ସେ ପୁରୀବାସୀ । ରସକଲ୍ଲୋଳର ଶବ୍ଦାବଳୀ ତଥା ବହୁ ଉକ୍ତି କବିଙ୍କୁ ପୁରୀବାସୀରୂପେ ପ୍ରମାଣିତ କରେ । ଏ ସବୁ ପ୍ରମାଣ ଉପରେ ନିର୍ଭର କରି ରସକଲ୍ଲୋଳକାରଙ୍କୁ ପୁରୀବାସୀ, ଅତିବଡ଼ି ସଂପ୍ରଦାୟଭୁକ୍ତ ଜଣେ ଗୃହୀ ବୈଷ୍ଣବରୂପେ ଗ୍ରହଣ କରିବା ବିଶେଷ ସମୀଚୀନ ।

# (୨)

## କଥା ନୋହେ ଦିବ୍ୟ ଅଦିବ୍ୟ ସମ

ରସକଲ୍ଲୋଳ ସଂପର୍କରେ କବି ଦୀନକୃଷ୍ଣଙ୍କର ଗୋଟିଏ ଉକ୍ତି ହେଉଛି, 'କଥା ନୋହେ ଦିବ୍ୟ ଅଦିବ୍ୟ ସମ' । ଏହାର ଅର୍ଥ ସମ୍ବନ୍ଧରେ ମତ ଦେଇ କଲ୍ଲୋଳ କୌମୁଦୀକାର କହିଛନ୍ତି, ନୋହେ ଦିବ୍ୟ-ସଂସ୍କୃତ ନୁହେଁ, ଅଦିବ୍ୟ ସମ- ପ୍ରାକୃତ ତୁଲ୍ୟ (କଲ୍ଲୋଳ କୌମୁଦୀ, ପ-୮୮) । କଥା ଶବ୍ଦର ଅର୍ଥ ଏଥିରେ ନାହିଁ । ପରବର୍ତ୍ତୀ କେତେକ ସମାଲୋଚକ ଅଭିମନ୍ୟୁଙ୍କ- "ଦିବ୍ୟ ଅଦିବ୍ୟ ଭାଷାରେ ପଦ ହେବ ସିଦ୍ଧି / ଦେଖ ମହାଜନ ମାର୍ଗ ପରଂପରା ବିଧି ।" ମନରେ ରଖି 'କଥା' ଶବ୍ଦକୁ ଭାଷା ଅର୍ଥରେ ଗ୍ରହଣ କରି ଦୀନକୃଷ୍ଣ ସଂସ୍କୃତ ନୁହେଁ ପ୍ରାକୃତ ଭାଷା ବ୍ୟବହାର କରିଥିବା, ପୁଣି ସଂସ୍କୃତ ଓ ପ୍ରାକୃତ ଉଭୟ ଭାଷାକୁ ସମାନ ଭାବରେ ପ୍ରୟୋଗ କରିଥିବା, ବା ସଂସ୍କୃତ ଓ ପ୍ରାକୃତ ଭାଷା ରଚିତ ଗ୍ରନ୍ଥସବୁକୁ ସମାନଭାବରେ ଅନୁସରଣ କରିଥିବା ପ୍ରଭୃତି ବହୁ ବିଚିତ୍ର ଅର୍ଥ ଗ୍ରହଣ କରିଛନ୍ତି । ଦୀନକୃଷ୍ଣଙ୍କ ଦିବ୍ୟ ଅଦିବ୍ୟ କଥା ଓ ଅଭିମନ୍ୟୁଙ୍କ ଦିବ୍ୟ ଅଦିବ୍ୟ ଭାଷାର ଅର୍ଥ ଏକା ନୁହେଁ । କଥା ଶବ୍ଦ ଏଠି ସିଧାସଳଖ ଭାବେ ଗଳ୍ପ, କାହାଣୀ ବା ଆଖ୍ୟାୟିକା, ବିଶେଷ କରି କୃଷ୍ଣ କଥା ଅର୍ଥରେ ବ୍ୟବହୃତ ହୋଇଛି ।

କଥା ଶବ୍ଦକୁ ଆଖ୍ୟାୟିକା ଅର୍ଥରେ ଗ୍ରହଣ କଲେ, ସଂସ୍କୃତ ନୁହେଁ, ପ୍ରାକୃତ ତୁଲ୍ୟ, ଅର୍ଥାତ୍ ରସକଲ୍ଲୋଳର କଥାବସ୍ତୁ ସଂସ୍କୃତ ଭାଷା ରଚିତ ଗ୍ରନ୍ଥସବୁକୁ ଅନୁସରଣ ନ କରି ପ୍ରାକୃତ ଭାଷା ରଚିତ ଗ୍ରନ୍ଥ ସବୁକୁ ଆଦର୍ଶରୂପେ ଗ୍ରହଣ କରିଥିବା ଅର୍ଥ ମଧ୍ୟ ଉପଯୁକ୍ତ ମନେ ହୁଏନାହିଁ । କାରଣ ସଂସ୍କୃତ ଭାଷାରେ ରଚିତ କୃଷ୍ଣକଥାର ଗ୍ରନ୍ଥ କହିଲେ ମହାଭାରତ, ହରିବଂଶ, ବ୍ରହ୍ମବୈବର୍ତ୍ତପୁରାଣ, ପଦ୍ମପୁରାଣ ଓ ଶ୍ରୀମଦ୍‌ଭାଗବତକୁ ହିଁ ବୁଝାଏ । ବୈଷ୍ଣବ କବିମାନେ ସାଧାରଣତଃ ଶ୍ରୀମଦ୍‌ଭାଗବତକୁ ଆଧାର ଗ୍ରନ୍ଥରୂପେ ଗ୍ରହଣ କରିଥାନ୍ତି । ପ୍ରାକୃତ କହିଲେ ଲୋକକଥାରୁ ଆରମ୍ଭ କରି କବି ଦୀନକୃଷ୍ଣଙ୍କ ପୂର୍ବରୁ ପ୍ରାକୃତ, ଅପଭ୍ରଂଶ ଓ ଓଡ଼ିଆ ଭାଷାରେ ରଚିତ କୃଷ୍ଣକଥା ସମ୍ବନ୍ଧୀୟ ବହୁ ଗ୍ରନ୍ଥକୁ ବୁଝାଇବ । ଏମାନଙ୍କ ମଧ୍ୟରୁ ଜଗନ୍ନାଥ ଦାସଙ୍କ ଭାଗବତ ଓ ଅଚ୍ୟୁତାନନ୍ଦଙ୍କର ହରିବଂଶ କବିଙ୍କୁ ପ୍ରଭାବିତ କରିଥିବା ଅନୁମାନ କରାଯାଇପାରେ । ତାହାହେଲେ

ସଂସ୍କୃତ ନୋହେ ପ୍ରାକୃତ ତୁଲ୍ୟ ଅର୍ଥରୁ ଓଡ଼ିଆ ଭାଗବତ ବା ହରିବଂଶ ରସକଲ୍ଲୋଳର ମୁଖ୍ୟ ଆଧାର ଗ୍ରନ୍ଥ ହୋଇଥିବା ସମ୍ଭବ । କିନ୍ତୁ ପ୍ରକୃତରେ ତାହା ନୁହେଁ । କବି ଦୀନକୃଷ୍ଣ ପ୍ରାକୃତ ପରି ସଂସ୍କୃତ ଭାଷା ରଚିତ ଗ୍ରନ୍ଥସବୁକୁ ବିଶେଷ କରି ଶ୍ରୀମଦ୍ ଭାଗବତକୁ ନିଜ ଗ୍ରନ୍ଥର ଆଧାର ଗ୍ରନ୍ଥରୂପେ ଗ୍ରହଣ କରିଛନ୍ତି । ତେଣୁ କଥା ନୋହେ ଦିବ୍ୟ ଅଦିବ୍ୟ ସମ କହିଲାବେଳେ କବି ନିଜ ବାକ୍ୟର କଥାବସ୍ତୁର ମୂଳସ୍ରୋତ ସମ୍ବନ୍ଧରେ ମନ୍ତବ୍ୟ ନ ଦେଇ ଅନ୍ୟ କିଛି କହିଥିବା ମନେହୁଏ । ସଂସ୍କୃତରେ ଦିବ୍ୟ ଶବ୍ଦ ସଂସ୍କୃତ ଭାଷା ବ୍ୟତୀତ ଦେବସମ୍ବନ୍ଧୀୟ ଅଲୌକିକ ବା ଅପ୍ରାକୃତ ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ । ଅଦିବ୍ୟ ଦିବ୍ୟ ଶବ୍ଦର ବିପରୀତ । ତେଣୁ ଏହାର ଅର୍ଥ ହେଲା, ଲୌକିକ ବା ପ୍ରାକୃତ । ଏ ଦୃଷ୍ଟିରୁ ପଂକ୍ତିଟିର ଅର୍ଥ ହେଉଛି, କଥା=ନୋହେ ଦିବ୍ୟ, ନୋହେ ଅଦିବ୍ୟ=ସମ। କଥା କହିଲେ କୃଷ୍ଣ କଥା । ରସକଲ୍ଲୋଳର କୃଷ୍ଣ କଥା କେବଳ ଦିବ୍ୟ (ଅଲୌକିକ) ନୁହେଁ ବା ଅଦିବ୍ୟ (ଲୌକିକ) ନୁହେଁ । ଏଥିରେ ଶ୍ରୀକୃଷ୍ଣଙ୍କ ଦିବ୍ୟ ଓ ଅଦିବ୍ୟ ଲୀଳା ସମାନ ଭାବରେ ବର୍ଣ୍ଣିତ । ନିମ୍ନ ଆଲୋଚନାରୁ ଏହା ଆହୁରି ସ୍ପଷ୍ଟ ହେବ ।

ସଂସ୍କୃତ ଶ୍ରୀମଦଭାଗବତର କଥାବସ୍ତୁକୁ (କୃଷ୍ଣକଥା) ଦୁଇଭାଗରେ ବିଭକ୍ତ କରାଯାଇଥାଏ - ବ୍ରଜଲୀଳା ଓ ମଥୁରାଲୀଳା । ବ୍ରଜଲୀଳାର ପୁଣି ଦୁଇଭାଗ :- ଗୋକୁଳ ଲୀଳା ଓ ବୃନ୍ଦାବନ ଲୀଳା । ପ୍ରତ୍ୟେକ ଲୀଳା ପୁଣି ଲୌକିକ ଓ ଅଲୌକିକ ଭେଦରେ ଦ୍ୱିବିଧ :

୧ । ଅଲୌକିକ ଗୋକୁଳ ଲୀଳା-
  - (କ) କୃଷ୍ଣ ଜନ୍ମ
  - (ଖ) ପୂତନା ବଧ
  - (ଗ) ଶକଟାସୁର ବଧ
  - (ଘ) ତୃଣାବର୍ତ୍ତ ବଧ
  - (ଙ) ଶ୍ରୀକୃଷ୍ଣଙ୍କର ମୃତ୍ତିକା ଭକ୍ଷଣ ଏବଂ ଯଶୋଦାଙ୍କୁ ବିଶ୍ୱରୂପ ଦର୍ଶନ ।
  - (ଚ) ଯାମଳାର୍ଜ୍ଜୁନ ମୋକ୍ଷ ।

୨ । ଲୌକିକ ଗୋକୁଳ ଲୀଳା
  - (କ) ନାମକରଣ ଓ ଅନ୍ୟାନ୍ୟ ସଂସ୍କାର
  - (ଖ) ବାଲ୍ୟ ଲୀଳା ।

୩ । ଅଲୌକିକ ବୃନ୍ଦାବନ ଲୀଳା-

(କ) ବତ୍ସା, ବକା, ଅଘା, ଧେନୁକା ଓ ପ୍ରଲମ୍ବାସୁର ବଧ ।

(ଖ) ବିଧି ମୋହ

(ଗ) କାଳୀୟ ଦଳନ

(ଘ) ଦାବାନଳ ପାନ

(ଙ) ଗୋବର୍ଦ୍ଧନ ଧାରଣ

(ଚ) ବରୁଣ ଗୃହରୁ ନନ୍ଦଙ୍କ ଉଦ୍ଧାର ତଥା ଗୋପାଳମାନଙ୍କ ଦ୍ୱାରା ବୈକୁଣ୍ଠ ଦର୍ଶନ ।

(ଛ) ଶଙ୍ଖଚୂଡ଼, ଅରିଷ୍ଟ, କେଶୀ ଓ ବ୍ୟୋମ ବଧ ।

୪ । ଲୌକିକ ବୃନ୍ଦାବନ ଲୀଳା -

(କ) ବୃନ୍ଦାବନ ଗମନ ।

(ଖ) ଗୋ-ଚାରଣ ।

(ଗ) କାତ୍ୟାୟନି ବ୍ରତ ଓ ଚୀର ହରଣ

(ଘ) ବ୍ରାହ୍ମଣ ପତ୍ନୀଙ୍କ ଉପରେ ଅନୁଗ୍ରହ ।

ରାଧା ପ୍ରଧାନ କୃଷ୍ଣ ଲୀଳା ବୃନ୍ଦାବନ ଲୀଳାର ଏକ ବିଶେଷ ଘଟଣା । ଏଥିରେ ରାଧାଜନ୍ମ, ରାଧାକୃଷ୍ଣଙ୍କ ପ୍ରଥମ ମିଳନ, ଶ୍ରୀକୃଷ୍ଣ ବିଭିନ୍ନ ବେଶ, ସମ୍ଭୋଗ, ବୃନ୍ଦାବନ ଓ ଷଡ଼ଋତୁ ବର୍ଣ୍ଣନା ପ୍ରଭୃତି ପ୍ରସଙ୍ଗ ଲୌକିକ, ଓ ରାସଲୀଳା ଅଲୌକିକ ।

୫ । ମଥୁରାର ଅଲୌକିକ ଲୀଳା -

(କ) ରଜକ ବଧ

(ଖ) କୁବ୍‌ଜା ଉଦ୍ଧାର, ଧନୁର୍ଭଙ୍ଗ

(ଗ) କୁବଳୟା ହସ୍ତୀ ଓ ଅଷ୍ଟମଲ୍ଲ ବଧ

(ଘ) କଂସ ବଧ

୬ । ମଥୁରାର ଲୌକିକ ଲୀଳା-

(କ) ଅକ୍ରୂର ସହ ମଥୁରା ଗମନ

(ଖ) ମଥୁରା ଦର୍ଶନ

(ଗ) ଉଦ୍ଧବର ବ୍ରଜଯାତ୍ରା

(ଘ) ଗୋପୀ ଉଦ୍ଧବ ସମ୍ବାଦ ଓ ଭ୍ରମର ଗୀତା

(ଙ) କୁବ୍‌ଜା ରମଣ

କବି ଦୀନକୃଷ୍ଣ ରସକଲ୍ଲୋଳରେ ଗୋପୀ ଓ ଗୋପୀନାଥଙ୍କ ପ୍ରୀତିସ୍ନେହ ବାଣୀକୁ ମୁଖ୍ୟ ଭାବରେ ବର୍ଣ୍ଣନା କରି ଅଘା , ବକା, ବତ୍ସାସୁରବଧ ଓ ଅନ୍ୟାନ୍ୟ ବହୁ ଘଟଣାର କେବଳ ଉଲ୍ଲେଖ ମାତ୍ର କରିଛନ୍ତି । ଅଲୌକିକ ଗୋକୁଳ ଲୀଳା ମଧ୍ୟରୁ କୃଷ୍ଣଜନ୍ମ, ପୂତନାବଧ ଓ ଲୌକିକ ଲୀଳାରୁ ନାମକରଣ ଓ ଶିଶୁ ଶ୍ରୀକୃଷ୍ଣଙ୍କର ବିଭିନ୍ନ ଅବସ୍ଥା ବିସ୍ତୃତ ଭାବେ ବର୍ଣ୍ଣିତ । ସେହିପରି ଅଲୌକିକ ବୃନ୍ଦାବନ ଲୀଳା ମଧ୍ୟରୁ କାଳୀୟ ଦଳନ ଓ ଲୌକିକ ଲୀଳାରୁ ବସ୍ତ୍ରହରଣ ପ୍ରାଧାନ୍ୟ ପାଇଛି । ରାସଲୀଳା ବର୍ଣ୍ଣନା କଲାବେଳେ କବି ରାସଲୀଳା (ଅଲୌକିକ) ଓ ସୁରତି ଲୀଳାକୁ (ଲୌକିକ) ସ୍ୱତନ୍ତ୍ର ଭାବେ ବର୍ଣ୍ଣନା କରିଛନ୍ତି । ମଥୁରାଲୀଳାରେ ମଧ୍ୟ ସେହି କଥା । ଏହିପରି ଦେଖିଲେ ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ଦିବ୍ୟ ଓ ଅଦିବ୍ୟ ଲୀଳା ପ୍ରାୟ ସମାନ ସ୍ଥାନ ପାଇଛି । ନିମ୍ନରେ ରସକଲ୍ଲୋଳର କଥାବସ୍ତୁକୁ ଅନୁସରଣ କରି ପ୍ରତ୍ୟେକ ଲୀଳାର ବିଶ୍ଳେଷଣ କରାଯାଇଛି ।

**କୃଷ୍ଣ ଜନ୍ମ**

ରସକଲ୍ଲୋଳର ଶ୍ରୀକୃଷ୍ଣଙ୍କ ଜନ୍ମ କଥାରେ ଶ୍ରୀକୃଷ୍ଣଙ୍କ ଜନ୍ମ ପୂର୍ବରୁ ପୃଥିବୀର ପ୍ରାର୍ଥନା, ଶ୍ରୀକୃଷ୍ଣଙ୍କ ଜନ୍ମ ଓ ବସୁଦେବ କର୍ତ୍ତୃକ ଶ୍ରୀକୃଷ୍ଣଙ୍କର ବ୍ରଜପୁର ଗମନ ପ୍ରଭୃତି ଘଟଣା ବିଶେଷଭାବେ ଉଲ୍ଲେଖନୀୟ । କୃଷ୍ଣଜନ୍ମ ବର୍ଣ୍ଣନାରେ ସଂସ୍କୃତ ଓ ଓଡ଼ିଆ ଭାଗବତରେ କୌଣସି ପାର୍ଥକ୍ୟ ନାହିଁ । ଭାଗବତ ଅନୁଯାୟୀ ପୃଥିବୀ କଂସର ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ଗୋରୂପରେ ବ୍ରହ୍ମାଙ୍କ ସମୀପରେ ନିଜ ଦୁଃଖ ବ୍ୟକ୍ତ କରିଛି । ବ୍ରହ୍ମା ଅନ୍ୟ ଦେବତା ତଥା ପୃଥିବୀ ସହ କ୍ଷୀରସାଗରଶାୟୀ ବିଷ୍ଣୁଙ୍କ ପାଖକୁ ଯାଇ ପୃଥିବୀର ଦୁଃଖ ନିବେଦନ କରିଛନ୍ତି । ପୃଥିବୀର ଦୁଃଖରେ ଦ୍ରବିତ ହୋଇ ବିଷ୍ଣୁ ବ୍ରହ୍ମାଙ୍କୁ ସ୍ୱପ୍ନରେ ଅବତାର ଗ୍ରହଣ କରିବାକୁ ପ୍ରତିଶ୍ରୁତ ହୁଅନ୍ତି । କବି ଦୀନକୃଷ୍ଣ ପୂର୍ବୋକ୍ତ କଥାରୁ ପୃଥିବୀର ଗୋ-ରୂପ ଓ ଅନ୍ୟ ଦେବତାମାନଙ୍କର ଉଲ୍ଲେଖ କରିନାହାନ୍ତି । କ୍ଷୀରସାଗରଶାୟୀ ବିଷ୍ଣୁଙ୍କ ସ୍ଥାନରେ ବୋଧହୁଏ ନୀଳାଚଳବାସୀ ଜଗନ୍ନାଥ ଅଛନ୍ତି । ସ୍ୱପ୍ନାଦେଶ ସ୍ଥାନରେ ପ୍ରତ୍ୟକ୍ଷ ଆଜ୍ଞା ହୋଇଛି ।

ଶ୍ରୀକୃଷ୍ଣ ଜନ୍ମକାଳରେ ଅଦ୍ଭୁତ ରୂପ ଧାରଣ କରି ଜନ୍ମ ହୋଇଥିବା ସଂସ୍କୃତ ତଥା ଓଡ଼ିଆ ଭାଗବତରେ ଓ ରସକଲ୍ଲୋଳରେ ଅଛି । ସଂସ୍କୃତ ଭାଗବତ ଅନୁଯାୟୀ ଅଦ୍ଭୁତ ବାଳକର ନେତ୍ର କମଳ ସଦୃଶ କୋମଳ ଓ ବିଶାଳ ତାଙ୍କର ସୁନ୍ଦର ସୁନ୍ଦର ଚାରି ହାତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଅଛି ।

ବକ୍ଷସ୍ଥଳରେ ଶ୍ରୀବତ୍ସର ଚିହ୍ନ, ଗଳାରେ କୌସ୍ତୁଭମଣି । ବର୍ଷାକାଳୀନ ମେଘସଦୃଶ ଶ୍ୟାମଳ କଳେବରରେ ପୀତାମ୍ବର ଧାରଣ କରିଛନ୍ତି । କିରୀଟ, କୁଣ୍ଡଳ, କାଞ୍ଚି, ଅଙ୍ଗଦ ଓ କଙ୍କଣ ପ୍ରଭୃତି ଅଳଙ୍କାରଦ୍ୱାରା ଶରୀର ବିଭୂଷିତ । ଜଗନ୍ନାଥ ଦାସ 'ଅପୂର୍ବ ରୂପ ଯୋଗେଶ୍ୱର । ଦେବ ମାନବେ ଅଗୋଚର ।' ଭଗବାନଙ୍କ ରୂପ ବର୍ଣ୍ଣନା କଲାବେଳେ 'ହୃଦରେ ପଦକ ପଇତା' ଓ ପାଦରେ ନୂପୁର ଓ ରତ୍ନପାଦୁକାର ଅଧିକା ସଂଯୋଜନା କରିଛନ୍ତି । କଉସ୍ତୁଭ ମଣିର ଉଲ୍ଲେଖ ନାହିଁ । ଦୀନକୃଷ୍ଣଙ୍କ ଶ୍ରୀକୃଷ୍ଣ କଂସ ଠାରେ କ୍ରୋଧ କରି ବାଳକାକୁଁ ବୀରବେଶ ପ୍ରକାଶ କରିଛନ୍ତି । ସେ ଚତୁର୍ଭୁଜ ନୁହନ୍ତି । କେବଳ ଶଙ୍ଖ ଓ ଚକ୍ରର ଉଲ୍ଲେଖ ଅଛି । ବକ୍ଷଦେଶର ଶ୍ରୀବତ୍ସ ଚିହ୍ନ ଭକ୍ତ ଶ୍ରୀବତ୍ସ ବ୍ରାହ୍ମଣର ପଦଚିହ୍ନରେ ପରିଣତ ହୋଇଛି । ଓଡ଼ିଆ ଭାଗବତର ଶ୍ରୀକୃଷ୍ଣଙ୍କ ପରି ସେ ମଧ୍ୟ ନୂପୁର ପିନ୍ଧିଛନ୍ତି ।

ଶ୍ରୀକୃଷ୍ଣଙ୍କ ଅଦ୍ଭୁତ ରୂପକୁ ଜନକ ଜନନୀ ଅତି ଆଶ୍ଚର୍ଯ୍ୟ ହୋଇ ଦର୍ଶନ ଓ ସ୍ତୁତି ନିବେଦନ କରିବା ସବୁଥିରେ ବର୍ଣ୍ଣିତ । ମାୟାବଳରେ 'ଏ ରୂପ ସଂହରି ହରି' କେବଳ ସଂସ୍କୃତ ଭାଗବତ ଓ ରସକଲ୍ଲୋଳରେ ଅଛି । ସଂସ୍କୃତ ଭାଗବତର 'ପ୍ରାକୃତଃ ଶିଶୁ' ଓଡ଼ିଆ ଭାଗବତରେ 'ନର ବାଳୁତ ରୂପ' ହୋଇ ରସକଲ୍ଲୋଳରେ 'ବାଳ ମୁକୁନ୍ଦ ମୂରତି'ରେ ପରିଣତ ହୋଇଛନ୍ତି । ଶ୍ରୀକୃଷ୍ଣଙ୍କ ଜନ୍ମକାଳରେ କଂସର ପ୍ରହରୀ ସବୁ ଯୋଗମାୟାଙ୍କ ଦ୍ୱାରା ବଶୀଭୂତ ହୋଇ ନିଦ୍ରାରେ ମୋହିତ ହୋଇଥିବା ସଂସ୍କୃତ ଭାଗବତରେ ଅଛି । ରସକଲ୍ଲୋଳକାର ଏହାକୁ କାଳନିଦ୍ରା କୁହନ୍ତି । ବସୁଦେବ ଶ୍ରୀକୃଷ୍ଣଙ୍କୁ ଘେନି ବ୍ରଜପୁର ଗମନ କଲାବେଳେ ଉଗ୍ରସେନ ସହ ସାକ୍ଷାତ ହୁଏ । ଉଗ୍ରସେନ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ ବୋଲି ଚିହ୍ନିପାରି ବାଟ ଛାଡ଼ି ଦିଏ । ସଂସ୍କୃତ ଭାଗବତରେ ଅନୁରୂପ ପ୍ରସଙ୍ଗ ନ ଥିବାରୁ ରସକଲ୍ଲୋଳକାର ଏହାକୁ ଭାଗବତ ବା ହରିବଂଶରୁ ଗ୍ରହଣ କରିଥିବା ବିଶେଷଭାବେ ସମ୍ଭବ । ଦେବକୀର ସନ୍ତାନ ପ୍ରସବ ବାର୍ତ୍ତା ଶ୍ରବଣ କରି ସଂସ୍କୃତ ଭାଗବତର କଂସ ଭାବିଛି 'କାଳଂୟମିତି' ଅର୍ଥାତ ଏଥର ମୋ କାଳ ଜନ୍ମଗ୍ରହଣ କରିଛି । ଓଡ଼ିଆ ଭାଗବତରେ କଂସର ଏହି ଉକ୍ତି 'ବୋଇଲା ପୂରିଲା ମୋ କାଳ'ରେ ପରିବର୍ତ୍ତିତ ହୋଇଛି । ରସକଲ୍ଲୋଳରେ କଂସ ସଂସ୍କୃତ ଭାଗବତ ପରି କହିଛି, 'କାଳ ମୋର ଜନମିଛି ତୋର କୋଳରେ ।'

ବସୁଦେବର କରୁଣ ନିବେଦନ 'କୁମର ନୁହଇ ସେ ହୋଇଛି କୁମାରୀ' ଶୁଣି କଂସ ମନେ ମନେ ଭାବିଛି, 'ବିଷ୍ଣୁମାୟା ଅଗୋଚର' । ସେ କେତେବେଳେ

କେଉଁ ରୂପ୍ ଧାରଣ କରି ଶତ୍ରୁ ସଂହାର କରେ କହିବା କଷ୍ଟ । ସେ ମାଳତୀ କନ୍ୟାରୂପରେ ବଇଲୋଚନକୁ ମାରିଥିଲେ । ମୋହିନୀ କନ୍ୟାହୋଇ ଶିବଙ୍କୁ ହଇରାଣ କରିଥିଲେ ଓ କାତ୍ୟାୟନୀ ବା ଦୁର୍ଗାରୂପରେ ମହିଷାସୁର ଇତ୍ୟାଦି ଅସୁରଙ୍କୁ ବଧ କରିଥିଲେ । ସଂସ୍କୃତ ଭାଗବତରେ ଏ ପ୍ରକାର ଉକ୍ତି ନାହିଁ । ଜଗନ୍ନାଥ ଦାସ ଲେଖିଛନ୍ତି :

ତୁ କି ନ ଜାଣୁ ହରିମାୟା ।/ଅସୁର ଠାରେ ସେ ନିର୍ଦ୍ଦୟା ॥
ନାନା ରୂପରେ ହୋଇ ଜାତ ।/ଦୈତ୍ୟଙ୍କୁ କରଇ ନିପାତ ॥
ବଇଲୋଚନ ବୀର ଥିଲା ।/ଭାର୍ଯ୍ୟାରୂପେ ତାକୁ ମାଇଲା ॥
ମହିଷା ମାରେ ଦୁର୍ଗା ହୋଇ ।/ତା ମାୟା ନ ଜାଣୁ ଲୋ ତୁହି ॥

ଭଗବାନ ସ୍ତ୍ରୀ ରୂପରେ ମହିଷାସୁର, ଶୁମ୍ଭ, ନିଶୁମ୍ଭ, ଚିକ୍ଷୁର, ରକ୍ତବୀର୍ଯ୍ୟ, ବଇଲୋଚନ, ଲୋହାସୁର, ବିକଟ ଓ ତ୍ରିଶିଣା ପ୍ରଭୃତି ଅସୁରଙ୍କୁ ବିନାଶ କରିଥିବା ଅଚ୍ୟୁତାନନ୍ଦ (ହରିବଂଶ, ୨ୟ ଖଣ୍ଡ, ପୃ ୨୫୫) ମଧ୍ୟ ଉଲ୍ଲେଖ କରିଛନ୍ତି ।

ଦେବୀଙ୍କ ଠାରୁ ନିଜ ମୃତ୍ୟୁର ମର୍ମବାଣୀ ଶୁଣି କଂସ ଚିନ୍ତାତୁର ଚିତ୍ତରେ କେଶୀ, ଅଘା, ବକାସୁର, ଶକଟା, ତୃଣାବର୍ତ୍ତଙ୍କ ଓ ପୂତନା ସହ କୁବିଚାର କରିଥିବା ରସକଲ୍ଲୋଳରେ ଅଛି । ସଂସ୍କୃତ ଭାଗବତରେ କାହାରି ନାଁ ନାହିଁ । କଂସ ମନ୍ତ୍ରୀମାନଙ୍କ ସହ ପରାମର୍ଶ କରିଥିବା କୁହାଯାଇଛି । ଓଡ଼ିଆ ଭାଗବତରେ ମନ୍ତ୍ରୀଙ୍କ ସ୍ଥାନରେ ଅସୁରଗଣଙ୍କୁ 'ବସାଇ କହଇ ବିଶ୍ୱାସ କରାଇ' ଉକ୍ତି ମିଳେ । ଅଚ୍ୟୁତାନନ୍ଦଙ୍କ ହରିବଂଶରୁ ଜଣାଯାଏ ଯେ କଂସ ସାତବଂଶ ଯାଦବଙ୍କୁ ଡାକି ସଭା କରେ । ସେ ସଭାରେ ସାତ୍ୟକି, ଅନାଧୃଷ୍ଟ, ଉଦ୍ଧବ, ଅକ୍ରୁର, ଶତ୍ରାଜିତ, ଶତଧନୁ, କୃତବର୍ମା, ଅମ୍ଭା, କଦମ୍ଭା, ଚାଣୂର, ମୁଷ୍ଟିକ, କେଶୀ, ତୃଣା, ବକ, ପୂତନା ଓ ବସୁଦେବ ପ୍ରଭୃତି ଉପସ୍ଥିତ ଥିଲେ । ସଂସ୍କୃତ ଓ ଓଡ଼ିଆ ଭାଗବତରେ ମନ୍ତ୍ରୀ ବା ଅସୁରମାନେ କଂସକୁ ଶିଶୁନାଶର ପରାମର୍ଶ ଦିଅନ୍ତି । କିନ୍ତୁ ହରିବଂଶ ଓ ରସକଲ୍ଲୋଳରେ କଂସର ଆଜ୍ଞା ପାଇବା ପରେ ଅସୁରମାନେ ବାଳକ ନାଶନର ବିଭିନ୍ନ ଉପାୟ ଅବଲମ୍ବନ କରନ୍ତି ।

ଯଶୋଦାଙ୍କର ପୁଅ ହେବା ଶୁଣି ଗୋପୀମାନେ ଅତି ଆନନ୍ଦରେ ନନ୍ଦ ପୁରକୁ ଗମନ କରିଥିଲେ । ସେମାନଙ୍କ ଗମନକାଳୀନ ଦୃଶ୍ୟର ବର୍ଣ୍ଣନା ସଂସ୍କୃତ ଓ ଓଡ଼ିଆ ଭାଗବତ ତଥା ରସକଲ୍ଲୋଳରେ ଅତ୍ୟନ୍ତ ରମଣୀୟ । ସଂସ୍କୃତ ଭାଗବତ ଅନୁଯାୟୀ ପୃଥୁଳ ନିତମ୍ବା ଗୋପୀମାନେ ବିଭିନ୍ନ ପ୍ରକାର ଉପହାର

ସାମଗ୍ରୀ ଘେନି ନନ୍ଦପୁର ଅଭିମୁଖରେ ଯାତ୍ରା କଲେ । ଗଲାବେଳେ ସେମାନେ ସୁନ୍ଦର ସୁନ୍ଦର ରଙ୍ଗବିରଙ୍ଗର ବସ୍ତ୍ର ପରିଧାନ କରିଥିଲେ । ବିଭିନ୍ନ ପ୍ରକାର ଆଭୂଷଣ ଓ ଅଞ୍ଜନ ଦ୍ୱାରା ସେମାନଙ୍କର ଅଙ୍ଗ ସଜ୍ଜିତ ହୋଇଥିଲା । ସେମାନଙ୍କର ମୁଖ କମଳ ସଦୃଶ ପ୍ରତୀୟମାନ ହେଉଥିଲା । ମୁଖର କୁଙ୍କୁମ କମଳ ପୁଷ୍ପର କେଶର ପରି ଶୋଭା ପାଉଥିଲା । ଶୀଘ୍ର ଗତିରେ ଗମନ କରୁଥିବାବେଳେ ସେମାନଙ୍କର ପୟୋଧର, ମଣିଖଚିତ କର୍ଣ୍ଣକୁଣ୍ଡଳ ଓ କଣ୍ଠର ହାର କମ୍ପମାନ ହେଉଥିଲା । ସେମାନଙ୍କ କବରୀରୁ ପୁଷ୍ପସବୁ ଖସି ଅପୂର୍ବ ଶୋଭା ସୃଷ୍ଟି କରୁଥିଲା । ଦୀନକୃଷ୍ଣ ମଧ୍ୟ ଲେଖିଛନ୍ତି -

କାହା କବରୀରୁ ଫୁଲ ଖସଇ । କବି ମନେ ଏମନ୍ତ ଆଭାସଇ । ୩-୧୨

\+ + +

କେହୁ କରନ୍ତେ ସତ୍ୱରେ ଗମନ । କୁଚକୁମ୍ଭ ହଅଇ କମ୍ପମାନ । ୩-୧୮

\+ + +

କାବ୍ୟତାର ମୁକୁତା ହାର ଛଳେ । କ୍ରତଭୁଜ ସରିତ ସେ ଉଛୁଳେ । ୩-୨୦

ପୂତନା ବଧ

ଶ୍ରୀକୃଷ୍ଣଙ୍କ ଜନ୍ମର କିଛିଦିନ ପରେ ପୂତନା କୁଚରେ କାଳକୂଟ ବିଷ ଦେଇ ଶ୍ରୀକୃଷ୍ଣଙ୍କୁ ବିନାଶ କରିବା ପାଇଁ ନନ୍ଦପୁରକୁ ଆସିଛି । ସଂସ୍କୃତ ଭାଗବତରେ ପୂତନାକୁ 'କଂସେନ ପ୍ରହିତା ଘୋରା ପୂତନା ବାଳଘାତିନୀ', କୁହାଯାଇଛି । ବ୍ରହ୍ମବୈବର୍ତ୍ତ ପୁରାଣରେ ସେ ହେଉଛି କଂସର ଭଗିନୀ ତଥା ସଂସ୍କୃତ ହରିବଂଶରେ ସେ ହେଉଛି ଧାତ୍ରୀ । ରସକଲ୍ଲୋଳକାର ତାହାକୁ କ୍ରୁରକର୍ମିଣୀ ଓ ଧାଈ ରୂପରେ ଗ୍ରହଣ କରିଛନ୍ତି । ପୂତନା ରୂପସୀ ଯୁବତୀ ରୂପ ଧାରଣ କରି, ନାନା ଅଳଙ୍କାର ବିଭୂଷିତା ହୋଇ ନନ୍ଦପୁରରେ ପ୍ରବେଶ କରିଥିବା ସବୁ ଗ୍ରନ୍ଥରୁ ମିଳେ । ସଂସ୍କୃତ ଓ ଓଡ଼ିଆ ଭାଗବତରେ ପୂତନା ହାତରେ ପଦ୍ମଫୁଲ ଧାରଣ କରିଛି । ଓଡ଼ିଆ ହରିବଂଶରେ 'ବିଷ ଲଡୁ ଥାଳି ଏକ ଘେନିଛି ହାତେ'ର ଉଲ୍ଲେଖ ଅଛି । ଦୀନକୃଷ୍ଣ ମଧ 'କାଖରେ ବିଷ ଲଡୁଥାଳି' ଥିବା କୁହନ୍ତି । ସଂସ୍କୃତ ଭାଗବତରେ ପୂତନା ଶଯ୍ୟାଶାୟୀ ଶ୍ରୀକୃଷ୍ଣଙ୍କୁ ଟେକି ଦୁଗ୍ଧପାନ କରାଇଛି, ଯଶୋଦା ଓ ରୋହିଣୀ ତାର ଅପୂର୍ବ ରୂପରେ ମୋହିତ ହୋଇ କୌତୂହଳରେ ଏହି ଦୃଶ୍ୟ ଦେଖୁଛନ୍ତି । ଓଡ଼ିଆ ଭାଗବତ, ହରିବଂଶ ଓ ରସକଲ୍ଲୋଳରେ ଯଶୋଦା ନିଜେ ଶ୍ରୀକୃଷ୍ଣଙ୍କୁ ପୂତନା କୋଳକୁ ବଢ଼ାଇ ଦେଇଛନ୍ତି । ପୂତନା ବଧ, ଶକ-

ସଂସ୍କାର ଓ ପୂତନାର ମୁକ୍ତିପ୍ରାପ୍ତି ବର୍ଣ୍ଣନା କଲାବେଳେ ଦୀନକୃଷ୍ଣ ଭାଗବତକାରଙ୍କୁ ଅନୁସରଣ କରିଥିବା ପରି ମନେହୁଏ ।

**ନାମକରଣ**

ଶ୍ରୀକୃଷ୍ଣଙ୍କ ଲୌକିକ ଲୀଳା ମଧ୍ୟରୁ ନାମକରଣ ଅନ୍ୟତମ । ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ନାମକରଣ ପ୍ରସଙ୍ଗ ଅତି ସଂକ୍ଷିପ୍ତ । ଭାଗବତ ପରି ଏଥିରେ ମଧ୍ୟ ଗର୍ଗମୁନି ରାମ ଓ କୃଷ୍ଣଙ୍କର ନାମକରଣ କରାନ୍ତି । ନାମକରଣ ପରେ ରାମକୃଷ୍ଣ ନାମ ଜଗତରେ ବିଖ୍ୟାତ ହୁଏ । କବି ଦୀନକୃଷ୍ଣ କୁହନ୍ତି : "କବି କୃତାର୍ଥ ହୋଇଲା ଏତେବେଳେ । କୃଷ୍ଣ ଶବଦ ରହିଲା କର୍ଣ୍ଣବିଳେ ।" ଶ୍ରୀକୃଷ୍ଣ ନାମକରଣ ଉତ୍ସବ ଗୋପପୁରରେ ଅତି ଆଡ଼ମ୍ବରରେ ପାଳିତ ହୁଏ । ଦ୍ୱିଜ, ନୃତ୍ୟକାର ଓ ବନ୍ଦିଗଣ ନନ୍ଦଙ୍କଠାରୁ ଆଭରଣ ଓ ଦାନ ପାଇ ଆନନ୍ଦିତ ହୁଅନ୍ତି । ଦୀନକୃଷ୍ଣ ଏହି ପ୍ରସଙ୍ଗରେ କାତ୍ୟାୟନୀର ବର୍ଣ୍ଣନା କରିଛନ୍ତି । କାତ୍ୟାୟନୀର ବର୍ଣ୍ଣନାରୁ ଜଣାପଡ଼େ ଯେ ସେ ପ୍ରୌଢ଼ା । ବାଳ ଅଧେ କଳା ଓ ଅଧେ ଧଳା । 'କେଶ ଗଙ୍ଗା ଯମୁନା ଚାମର ପ୍ରାୟେ ।' ଶରୀରର ରଙ୍ଗ ହେଉଛି କଳା । 'କୁହୁ ତିଥି ନିଶି ସମ ରୂପ କାନ୍ତି ।' ଦାନ୍ତ ସବୁ ବାହାରି ପଡ଼ିଛି । 'କଙ୍କତିକା ପ୍ରାୟେ ଦିଶେ ଦନ୍ତ ପନ୍ତି ।' ଭାଗବତର ପୂତନା ପରି ସେ ହାତରେ ଫୁଲ ଲଙ୍କା (ଭାଗବତରେ ପଦ୍ମଫୁଲ) ଧରିଛି । ମନରେ ଶଙ୍କା ନାହିଁ । ଶ୍ରୀକୃଷ୍ଣଙ୍କ ନାମକରଣ ଉତ୍ସବରେ ଆନନ୍ଦିତ ହୋଇ ସେ ବିଭିନ୍ନ ଭାବରେ ଅଙ୍ଗଭଙ୍ଗୀ କରିଛି । ରସକଲ୍ଲୋଳରେ କାତ୍ୟାୟନୀର ବର୍ଣ୍ଣନା ଅତି ଜୀବନ୍ତ ଓ ବାସ୍ତବ । ସେ ଯୁଗରେ କବିମାନେ ସାଧାରଣତଃ ରୂପସୀ ଯୁବତୀର ରୂପ ବର୍ଣ୍ଣନା କରୁଥିବାବେଳେ ରସକଲ୍ଲୋଳରେ କାତ୍ୟାୟନୀର ବର୍ଣ୍ଣନା ଏକ ବ୍ୟତିକ୍ରମ ।

**ବାଳଲୀଳା**

ଶ୍ରୀକୃଷ୍ଣ ବାଳକ ଲୀଳା ବର୍ଣ୍ଣନା କବିମାନଙ୍କର ଅତି ପ୍ରିୟ । ଭାଗବତରୁ ଏହାର ଆରମ୍ଭ । ପୁରାଣରେ ଶ୍ରୀକୃଷ୍ଣ ବାଲ୍ୟଲୀଳା ଅଛି, କିନ୍ତୁ ଭାଗବତ ହିଁ ଏହାକୁ ମହତ୍ତ୍ୱ ଦିଏ ଓ ଲୋକପ୍ରିୟ କରେ । ଭାଗବତର ପ୍ରଭାବ କେବଳ କୃଷ୍ଣକାବ୍ୟ ନୁହେଁ, ପରବର୍ତ୍ତୀ ବହୁ ରାମକାବ୍ୟକୁ ମଧ୍ୟ ପ୍ରଭାବିତ କରିଛି । ପରବର୍ତ୍ତୀକାଳୀନ କବିମାନେ ଭାଗବତକୁ ମୁଖ୍ୟ ଆଧାରଗ୍ରନ୍ଥ ରୂପେ ଗ୍ରହଣ କରିଥିଲେ ହେଁ, ନିଜ କଳ୍ପନା ଓ ଅନୁଭୂତିରୁ ବହୁ ନୂତନ କଥା ଓ ପରିବେଶର ସମାବେଶ କରିଛନ୍ତି ।

ଭାଗବତରେ ରାମକୃଷ୍ଣ ଉଭୟଙ୍କ ବାଳଲୀଳା ବର୍ଣ୍ଣିତ । ରସକଲ୍ଲୋଳର "କ୍ରମେ ବଢ଼ିଲେ ଯଶୋଦାଙ୍କ ପୋଏ" ଓ "କଞ୍ଜନୟନ, ଅଞ୍ଜନବରନ କେଶବ କାମପାଳ ସଙ୍ଗେ, ଘେନି ନାନା ରଙ୍ଗେ କରନ୍ତି ବାଳଲୀଳା ଭାବ ।" ପଂକ୍ତି ଦ୍ୱୟରୁ ରାମ ଓ କୃଷ୍ଣ ଉଭୟ ସୂଚିତ ହେଉଥିଲେ ହେଁ ବର୍ଣ୍ଣନାରୁ କେବଳ ବାଳକ କୃଷ୍ଣଙ୍କ ଦେଖିହୁଏ । କବି ମଧ୍ୟ ଛାନ୍ଦ ଆରମ୍ଭ କଲାବେଳେ ଶ୍ରୀକୃଷ୍ଣଙ୍କ ବାଳକଲୀଳା ବର୍ଣ୍ଣନା କରୁଥିବା ସ୍ପଷ୍ଟ ଭାବରେ କହିଛନ୍ତି ।

କୃଷ୍ଣ ବାଳକ ଲୀଳା ଏକମନେ । କର୍ଣ୍ଣ ନିବେଶି ଶୁଣ ସାଧୁଜନେ ।

ଶ୍ରୀକୃଷ୍ଣଙ୍କ ବାଳକଲୀଳା ସମୁଦ୍ର ତରଙ୍ଗ ପରି ଅକଳିତ । ସେ ସବୁର ବର୍ଣ୍ଣନା ପାଇଁ ଅସାଧାରଣ ପ୍ରତିଭା ଆବଶ୍ୟକ । ଦୀନକୃଷ୍ଣ ତ ସାଧାରଣ ମନୁଷ୍ୟ । "କୋଟିଏ, କୋଟି କୀଟେ ମୁଁ ଏକ । କେତେ ମୋର ବୁଦ୍ଧି କେତେ ବିବେକ ।" ଯଦି ଶିବ କଳପେ ବସି କଳ୍ପନା କରନ୍ତି, ତେବେ ବି ଶ୍ରୀକୃଷ୍ଣଙ୍କ ବାଳ ଲୀଳାର ବର୍ଣ୍ଣନା ଶେଷ କରି ପାରିବେ ନାହିଁ । ଗଗନ ତାରାପରି ଏହାର ସଂଖ୍ୟା ଲେଖି ହେବ ନାହିଁ । ବରଷା ଧାରା ବା ସିନ୍ଧୁ ଲହରୀ ପରି ଏହାକୁ ଗଣିହେବ ନାହିଁ । ପୟୋନିଧି ପହଁରିବା ପରି ଏହା ଏକ ଅସମ୍ଭବ କାର୍ଯ୍ୟ । ଏ ସବୁ ହୁଏତ ସମ୍ଭବ ହୋଇପାରେ କିନ୍ତୁ ଶ୍ରୀକୃଷ୍ଣଙ୍କ ମହିମା ବର୍ଣ୍ଣନା କରିବା ଏକାବେଳକେ ଅସମ୍ଭବ । ଶ୍ରୀକୃଷ୍ଣଙ୍କ ଅକଥନୀୟ ମହିମା, ମନ୍ମଥ-ମଥନ-ଅନନ୍ତ ରୂପରାଶି, କବିଙ୍କୁ ଅବର୍ଣ୍ଣନୀୟ ତୃପ୍ତି ଦାନ କରିଛି । ବାଳକ କୃଷ୍ଣଙ୍କର ଲୀଳାଖେଳା ବର୍ଣ୍ଣନା କଲାବେଳେ ପ୍ରତ୍ୟେକ ଚିତ୍ରରେ କବିଙ୍କ ବିଭୋର ମନର ପରିଚୟ ମିଳିଥାଏ । ବିଭିନ୍ନ ଅଳଙ୍କାର ବିମଣ୍ଡିତ ଶ୍ରୀକୃଷ୍ଣଙ୍କର ରୂପ ସୌନ୍ଦର୍ଯ୍ୟ କବିଙ୍କୁ ବିଶେଷ ଭାବରେ ମୁଗ୍ଧ କରିଛି ।

**ହାମୁଡ଼େଇବା ଓ ଚାଲିବା**

ଶ୍ରୀକୃଷ୍ଣଙ୍କ ହାମୁଡ଼େଇବାର ବର୍ଣ୍ଣନା କରି ଦୀନକୃଷ୍ଣ ଲେଖିଛନ୍ତି,

କର ଜାନୁରେ କରନ୍ତେ ଗମନ । କଟିତଟେ କରେ କିଙ୍କିଣୀ ସ୍ୱନ ।
କୁଟିଳ, ନୀଳ କୁନ୍ତଳ ଲୁଳେ । କମଳେ ଯେମନ୍ତ ଭ୍ରମର ମାଳେ ।
କମ୍ବୁକଣ୍ଠେ କଣ୍ଠ ଭୂଷଣ ଶୋହେ । କରେ କଙ୍କଣ ଜଗଜନ ମୋହେ ।
କଜ୍ଜଳେ ପୂରିତ ପଦ୍ମଲୋଚନ । କୋକିଳକୁ ବଳି କଳବଚନ ।
କୁଙ୍କୁମ, ଶୋଭା କଲା ଶ୍ରୀଅଙ୍ଗ । କରେ ଉପହାସ କୋଟି ଅନଙ୍ଗ ।

(୫, ୨-୩)

ଭାଗବତରେ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ ।

କାଳେନ ବ୍ରଜତାଲ୍ପେନ ଗୋକୂଳେ ରାମକେଶବୌ ।
ଜାନୁଭ୍ୟାଂ ସହ ପାଣିଭ୍ୟାଂ ରିଙ୍ଗମାଣୌ ବିଜହ ତୁଃ ।
ତାବଂଘ୍ରି ଯୁଗ୍ମମନୁକୃଷ୍ୟ ସରୀସୃପନ୍ତୌ
ଘୋଷପ୍ରଘୋଷରୁଚିରଂ ବ୍ରଜକର୍ଦ୍ଦମେଷୁ ।
ତନ୍ନାଦହୃଷ୍ଟମନସାବନୁସୃତ୍ୟ ଲୋକଂ
ମୁଗ୍ଧ ପଭୀତବଦୁପେୟତୁରନ୍ତି ମାତ୍ରୋଃ । (୧୦,୮,୨୧-୨୨)

ଏହାର ଅନୁବାଦ ହେଉଛି, କାଳକ୍ରମେ ରାମ ଓ ଶ୍ୟାମ ଜାନୁ ଓ କରତଳ ଭରାଦେଇ ଚାଲି, ଗୋକୁଳରେ ଖେଳିବାକୁ ଆରମ୍ଭ କଲେ । ଦୁଇ ଭାଇଙ୍କର କୋମଳ ପାଦ ଗୋକୁଳ କାଦୁଅରେ କାଦୁଆ ହୋଇ ଯାଉଥିଲା, ସେତେବେଳେ ସେମାନଙ୍କର ଓ କଟିର ଘୁଘୁଡ଼ି ରୁଣୁଝୁଣୁ ଶବ୍ଦ କରି ବାଜି ଉଠୁଥିଲା । ସେ ଶବ୍ଦ ଅତି ସୁନ୍ଦର ଜଣା ପଡୁଥିଲା । ସେମାନେ ସେ ଶବ୍ଦ ଶୁଣି ଆନନ୍ଦିତ ହୋଇ ଯାଉଥିଲେ । ବେଳେବେଳେ ରାସ୍ତାରେ ଯାଉଥିବାବେଳେ କୌଣସି ଅଜ୍ଞାତ ବ୍ୟକ୍ତିର ପଛେ ପଛେ ଯାଉଥିଲେ, ପୁଣି ଯେତେବେଳେ ଜାଣିପାରୁଥିଲେ ଯେ ସେ ଅନ୍ୟ କେହି ବ୍ୟକ୍ତି, ସେତେବେଳେ ସେ ହଠାତ୍ ରହିଯାଉଥିଲେ ଓ ଭୟରେ ନିଜର ମାତା - ଯଶୋଦା ଓ ରୋହିଣୀଙ୍କ ପାଖକୁ ଫେରି ଆସୁଥିଲେ । ଜଗନ୍ନାଥ ଦାସ ଏହାର ଅନୁବାଦ କରି ଲେଖିଛନ୍ତି,

ଦିନେକ ରାମ ଶିରୀଧର । ମନ୍ଦିରୁ ହୋଇଲେ ବାହାର ।
ଚାଲନ୍ତି ଆଗେ ଗୁଲୁଘୁଞ୍ଚା । କ୍ଷଣକ୍ଷଣକେ ପଛ ଘୁଞ୍ଚା ।
ଚରଣେ ନୂପୁର ବାଜେଣୀ । କରେ କଙ୍କଣ କଣ୍ଠେ ମଣି ।
ମିଳନ୍ତି ଗୋପୀଙ୍କ ଅଗଣା । କର୍ଦ୍ଦମେ ପଡ଼ି ହୋନ୍ତି ବଣା ।
ଚରଣ ରୁଣୁଝୁଣୁ ନାଦେ । ଗୋବିନ୍ଦ ଖେଳନ୍ତି ଆନନ୍ଦେ ।
ଦେଖି ଧାମନ୍ତି ବେନି ମାଏ । ରାମକୃଷ୍ଣର ପଙ୍କକାୟେ ।

'ଗୋପଲୀଳା', ୯ମ ଅଧ୍ୟାୟ, (ପୃ-୪)

ହାମୁଡ଼େଇ ଚାଲିବା ପରି ନନ୍ଦଙ୍କ ପ୍ରାଙ୍ଗଣରେ କରି କଲଭ ପରି ଝୁଲି ଝୁଲି ଚାଲୁଥିବା, ଧୂଳି ବୋଳି ହେଉଥିବା, ମାଙ୍କ ଗାଳି ଶୁଣି କାନ୍ଦୁଥିବା ଓ ପଙ୍କରେ ଗଡୁଥିବା ଶ୍ରୀକୃଷ୍ଣଙ୍କୁ ଦେଖି କେବଳ ଯେ କବି ଦୀନକୃଷ୍ଣ ମୁଗ୍ଧ ହୋଇଛନ୍ତି ତାହା ନୁହେଁ, ଗୋପପୁରର ଗୋପୀମାନେ ହସି ହସି ଗଡ଼ି ଯାଉଛନ୍ତି ।

ବାଳକୃଷ୍ଣଙ୍କର ଲୀଳାଖେଳାରେ ମୁଗ୍ଧ ହେଉଥିବା ଗୋପୀମାନେ କିଶୋରୀ ଗୋପୀ ନୁହନ୍ତି । ସେମାନେ ବୋଧହୁଏ ପ୍ରୌଢ଼ା । ଶ୍ରୀକୃଷ୍ଣଙ୍କୁ ଗେଲ କରି ସେମାନେ ନାନା ସୁଖ ଲାଭ କରନ୍ତି । କେହି ବାପ ବୋଲି ଗେଲ କରେ ତ କେହି ଭାଇ କହି । ଶ୍ରୀକୃଷ୍ଣଙ୍କ ପ୍ରତ୍ୟେକ ଅଙ୍ଗର ଶୋଭା ଗ୍ରହଣ କରିବାରେ ସେମାନେ ଅସମର୍ଥ । ସମଗ୍ର ରୂପର ସଙ୍କଳିତ ପ୍ରଭାବ ଦ୍ୱାରା ସେମାନେ ବିଭୋର । ବିଶେଷକରି ଶ୍ରୀକୃଷ୍ଣଙ୍କ ନବଘନ ସଦୃଶ ବର୍ଣ୍ଣ, କଞ୍ଜଲୋଚନ, କଳାମୁଖ ଓ କୁଟିଳ ନୀଳ ଚୂର୍ଣ୍ଣକୁନ୍ତଳ ସେମାନଙ୍କୁ ମୁଗ୍ଧ କରିଛି । ସେମାନେ ସ୍ନେହରେ ଶ୍ରୀକୃଷ୍ଣଙ୍କୁ କପଟୀ, ଧାଈ-ପରାଣଖିଆ, କୂଟମନ୍ଦିର ମୋ ବାଘ ନଖିଆ, କୁସୁମ ଗଭା, କପାଳର ଚାରୁ କସ୍ତୁରୀଚିତା ଓ କଜ୍ଜଳରେଖା ପ୍ରଭୃତି ନାମରେ ସମ୍ବୋଧନ କରିଛନ୍ତି । ପ୍ରତ୍ୟେକ ନାମରେ ସ୍ନେହର ଅସରନ୍ତି ଧାରା ପ୍ରବାହିତ । ସେମାନଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣଙ୍କ ରୂପ ଅମିତ ସୌଭାଗ୍ୟର ପ୍ରତୀକ । ନନ୍ଦ ଅଶେଷ ଭାଗ୍ୟ ବଳରୁ, ତପସ୍ୟାର ପ୍ରଭାବରୁ ଶ୍ରୀକୃଷ୍ଣଙ୍କ ପରି ପୁଅ ପାଇଲେ । ଏହି ପୁଅ ଯୋଗୁଁ ଯଶୋଦା ମାତାଙ୍କର କୁଳ ଉଦ୍ଧାର ହୋଇଗଲା । ଗୋପୀମାନଙ୍କର ପ୍ରତ୍ୟେକ ଉକ୍ତିରେ ଭକ୍ତିଭାବଭରା ଭକ୍ତ ହୃଦୟ ହିଁ ପ୍ରକାଶ ପାଇଥାଏ । ବାଳକୃଷ୍ଣଙ୍କର ଆଉ ଗୋଟିଏ ରୂପ ବର୍ଣ୍ଣନା କରି ଦୀନକୃଷ୍ଣ ଲେଖିଛନ୍ତି,

କର ଅରବିନ୍ଦେ ଧରି ପାଦକଞ୍ଜ । କଞ୍ଜନେତ୍ର ମଣ୍ଡିଛନ୍ତି ମୁଖକଞ୍ଜ ।
କଞ୍ଜ ଶିବ ଆଦି ଭଜେ ଯେଉଁ କୃଷ୍ଣ । କୃଷ୍ଣ ଚିନ୍ତି ସେ କୃଷ୍ଣକୁ ମହାତୃଷ୍ଣ ।

ଭାଗବତର ଦ୍ୱାଦଶ ସ୍କନ୍ଧରେ ବାଳକୃଷ୍ଣଙ୍କର ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ ।

ଚାବ ଗୁଳିଭ୍ୟାଂ ପାଣିଭ୍ୟାମୁନ୍ନୀୟ ଚରଣାମ୍ବୁଜମ୍
ମୁଖେ ନିଧାୟ ବିପ୍ରେନ୍ଦୋ ଧୟଂତଂ ବିକ୍ଷ ? ବିସ୍ମିତଃ । (୧୨,୯,୨୫)

**ଲବଣୀ ହରଣ**

ବାଳକୃଷ୍ଣଙ୍କର ଲୌକିକ ଲୀଳାମାନଙ୍କ ମଧ୍ୟରୁ ଲବଣୀ ହରଣ ଅନ୍ୟତମ । ଚାଲି ଶିଖିବା ସଙ୍ଗେ ସଙ୍ଗେ ଗୋପପୁରରେ ଶ୍ରୀକୃଷ୍ଣଙ୍କ ଉପଦ୍ରବ ବୃଦ୍ଧି ପାଇଛି । "କାଳଯାକ ହେଲା ଗୋପରେ ଡକା । କଅଁଳା ପୁଅର ଚୋରି ଜୀବିକା !" ଘରେ ଘରେ ପଶି ସର ଲବଣୀ ଚୋରି କରି ଖାଇବା, ଦହି ଦୁଧ ଏକାଠି କରି ଗୋପୀମାନଙ୍କୁ ହଇରାଣ କରିବା ତାଙ୍କର ପ୍ରଧାନ କାର୍ଯ୍ୟ ହୋଇଛି । ବେଳେ ବେଳେ ଗୋପସୁତ ମେଳରେ ଲବଣୀ ଚୋରି କରି ପଳାଉଥିବାବେଳେ (୬-୨) ଧରା ପଡ଼ିଛନ୍ତି । ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ଲବଣୀ ଲୋଭ ଦେଖାଇ

ନୃତ୍ୟ କରାଇବା, ହାତରେ ଲବଣୀ ଦେଇ ଯଶୋଦାଙ୍କ ପାଖକୁ ନେବା ଇତ୍ୟାଦି ଦୃଶ୍ୟ, ରସକଲ୍ଲୋଳରେ ଅତ୍ୟନ୍ତ ଜୀବନ୍ତ ଓ ଉପଭୋଗ୍ୟ । ଦୀନକୃଷ୍ଣ ଗୋପୀମାନଙ୍କର ଦୁର୍ଦ୍ଦଶା ବର୍ଣ୍ଣନା କରି ଲେଖିଛନ୍ତି,

କେ ଯାଇଁ, ଯଶୋଦାଙ୍କୁ କହନ୍ତି । କେ ଅବା ସ୍ନେହଭାବରୁ ସହନ୍ତି ।
କଉଁ ଗୋପୀ ଶୋକେ ବୋଲଇ କୋପେ । କେମନ୍ତେ ଆଉ ରହିବା ଏ ଗୋପେ ।
କୃଷ୍ଣ ପ୍ରତାପ ତ ନୋହିଲା ସହି । କେ ଅବା ଶୁଣିବ କହିବା କାହିଁ ।
କଂସକୁ, ଯେବେ ନୋହିଲା ଭୟ । କଉଁ ଲୋକ ତହିଁ ପାଇବ ଥୟ ।

\+ \+ \+

କଉଁ ଛଟକେ ମନ୍ଦିରେ ପଶଇ । କି କରି ସର ଲବଣୀ ଭକ୍ଷଇ ।
କାହିଁ ମୁଁ, ଦେଖିନାହିଁ ଏ ପୁଅ । କ୍ରୋଧରେ ହସାଇ ଆରମ୍ଭି ଲୁଅ ।
କନ୍ଦାଇ ହସାଇ ବିନା କାରଣେ । କି କି କରି ଚାହେଁ ନୟନ କୋଣେ ।
(୫,୧୨-୧୫)

ଲବଣୀ ହରଣ ପ୍ରସଙ୍ଗ ମହାଭାରତ ଓ ବିଷ୍ଣୁପୁରାଣରେ ନାହିଁ । ହରିବଂଶରେ ଏହାର ଉଲ୍ଲେଖ ପ୍ରସଙ୍ଗକ୍ରମେ ଆସିଛି । ଭାଗବତରେ ଯାମଳାର୍ଜ୍ଜୁନ ମୋକ୍ଷର ଭୂମିକା ରୂପରେ ଓ ପୂର୍ବରୁ ଏହାର ବିସ୍ତୃତ ବର୍ଣ୍ଣନ ଦେଖିବାକୁ ମିଳେ । ଶ୍ରୀକୃଷ୍ଣ ଲହୁଣୀ ଚୋରି କରି କେବଳ ନିଜେ ଖାଇନାହାନ୍ତି, ମର୍କଟମାନଙ୍କ ମଧ୍ୟରେ ବିତରଣ କରିଛନ୍ତି । ଦଧି, ଦୁଗ୍ଧ ଓ ଲବଣୀ ପାତ୍ର ଭାଙ୍ଗିବା, ହାଣ୍ଡି କଣାକରି ଦହି, ଦୁଧ ନଷ୍ଟକରିଦେବା ଓ ଅନ୍ଧାରଘରେ ପଶି ଚୋରିକରିବା ପ୍ରଭୃତିର ବର୍ଣ୍ଣନା ଭାଗବତରେ ଅଛି । ଭାଗବତ ବ୍ୟତୀତ ବ୍ରହ୍ମବୈବର୍ତ୍ତପୁରାଣ ଓ ଭାସଙ୍କ ବାଳଚରିତରେ ଲବଣୀ ହରଣର ବିସ୍ତୃତ ବର୍ଣ୍ଣନା ମିଳେ । ଦୀନକୃଷ୍ଣ ମଧ୍ୟ ଯାମଳାର୍ଜ୍ଜୁନ ମୋକ୍ଷର ପରେ ଲବଣୀ ହରଣର ଉଲ୍ଲେଖ କରିଛନ୍ତି ।

ନୃତ୍ୟ

ଗୋପୀମାନଙ୍କ ଅନୁରୋଧରେ ଓ ଲବଣୀ ଲୋଭରେ ନୃତ୍ୟ କରୁଥିବା ଶ୍ରୀକୃଷ୍ଣଙ୍କର ବର୍ଣ୍ଣନା କରି ଦୀନକୃଷ୍ଣ ଲେଖିଛନ୍ତି,

କରେ ଗୋପୀମାନେ ଧଇଲେ ତାଳି । କମଳନୟନ ନାଚନ୍ତି ଢଳି ।
କନକ ନୂପୁର ଚରଣେ ରାଜେ । କଟି କିଙ୍କିଣୀ କିରି କିଣି ବାଜେ ।
କହିବି, କେତେ ସେ ନାଚ ଛବି । କବି ଜଡ଼ ହୋଇ ରହେ ଯା ଭାବି ।

ଏହି ଲୀଳାର ବର୍ଣ୍ଣନା ଭାଗବତରେ ନ ଥିଲେ ହେଁ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ରଚିତ ବିଭିନ୍ନ ଭାରତୀୟ ସାହିତ୍ୟରେ ଏହାର ବର୍ଣ୍ଣନା ପ୍ରାୟ ମିଳିଥାଏ ।

**ଚାନ୍ଦ ମାଗିବା**

ଶ୍ରୀକୃଷ୍ଣଙ୍କ ବାଲଲୀଳା ମଧ୍ୟରୁ ଚାନ୍ଦ ମଗିବା ଅନ୍ୟତମ । ରସକଲ୍ଲୋଳରେ ଏହାର ଉଲ୍ଲେଖ କରି କବି ଦୀନକୃଷ୍ଣ ଲେଖିଛନ୍ତି,

କେତେବେଳେ ନନ୍ଦକାନ୍ଧେ ବସି ଚାନ୍ଦ ମାଗନ୍ତି ରଜନୀ ସମୟେ ।
କରି ମନ ତୋଷ ଜହ୍ନ ମାମୁଁ ଆସଆସ ବୋଲନ୍ତି ନନ୍ଦ ରାୟେ । ୬-୩

ଭାଗବତରେ ଏପରି ପ୍ରସଙ୍ଗର କୌଣସି ଉଲ୍ଲେଖ ନ ଥିଲେ ହେଁ, ଏହାର ପରଂପରା ଅତି ପ୍ରାଚୀନ । କୌଣସି ଅପୌରାଣିକ ଲୋକପ୍ରଚଳିତ ପରଂପରାରୁ ଗୃହୀତ ହୋଇ ନବମ ଶତାବ୍ଦୀ ଠାରୁ କାବ୍ୟ ଜଗତରେ ପ୍ରବେଶ ଲାଭ କରିଛି । ଏହାର ପ୍ରାଚୀନତମ ଉଲ୍ଲେଖ ତିରୁମୋଲି (ଦାକ୍ଷିଣାତ୍ୟର କବିମାନଙ୍କ ଦ୍ୱାରା ରଚିତ କୃଷ୍ଣଲୀଳା ବିଷୟକ ଗୀତର ସଙ୍କଳନ)ରେ ପେରିୟଲବାରଙ୍କ କବିତାରେ ଦେଖିବାକୁ ମିଳେ । ହିନ୍ଦୀ ସାହିତ୍ୟର ଅନ୍ୟତମ କବି ସୁରଦାସ, ଓ ଗୁଜରାତର କବି ନରସୀ ମେହେତାଙ୍କ କବିତାରେ ଏହା ଅତି ବିସ୍ତୃତ ଭାବେ ବର୍ଣ୍ଣିତ ।

ଚାନ୍ଦ ମାଗିବା ପରି ଗୃହକର୍ମରେ ଜନନୀଙ୍କୁବାଧା ଦେବା, ଗୋଳକରି କୋଳି ମାଗିବା ଓ କାନ୍ଦି କାନ୍ଦି କଣ୍ଠରେ କଣ୍ଠ ଛନ୍ଦି କାଖରେ ବସିବା ପ୍ରଭୃତି ଲୀଳାର ଉଲ୍ଲେଖ ରସକଲ୍ଲୋଳରୁ ମିଳେ । ଏହିପରି ଆଉଗୋଟିଏ ଲୀଳା ହେଉଛି, ଗୋଦୋହନ ଶିକ୍ଷା । ଏହାର ବର୍ଣ୍ଣନା କରି କବି ଦୀନକୃଷ୍ଣ ଲେଖିଛନ୍ତି,

କେତେବେଳେ ସେ, କଉତୁକେ ହୋଇ ଉସାହା
କାମିକାମ ଦୁହା ଗୋଧନ ସୋରେହା ହୋଇ ଶିଖନ୍ତି ଗାଈଦୁହା ।

ଭାଗବତରେ ଏହାର ଉଲ୍ଲେଖ ନାହିଁ । ପରବର୍ତ୍ତୀ ଯୁଗର ବୈଷ୍ଣବ କବିମାନେ ଏହି ପ୍ରସଙ୍ଗକୁ ବିଶେଷ ଗୁରୁତ୍ୱ ଦେଇଛନ୍ତି ।

**ଖେଳ**

ଶ୍ରୀକୃଷ୍ଣ ସଖାମାନଙ୍କ ସହ ବିଭିନ୍ନ ପ୍ରକାର କ୍ରୀଡ଼ା କରୁଥିବା ଭାଗବତରେ ଅଛି । ଦୀନକୃଷ୍ଣ ବାହୁଯୁଦ୍ଧ, ଧରାଧରି, ଫଳ ସମର, ଆଖିବୁଜାଳି ଓ ରାଜାପ୍ରଜା ଖେଳର ଉଲ୍ଲେଖ କରିଛନ୍ତି । ଓଡ଼ିଆ ଭାଗବତରେ ଅନୁରୂପ ବର୍ଣ୍ଣନା ନ ଥିଲେ ହେଁ, ସଂସ୍କୃତ ଭାଗବତରୁ ଏହାର ସୂଚନା ମିଳିଥାଏ ।

କ୍ୱଚିଦ ବିଲ୍ୱୈଃ କ୍ୱଚିତ୍‌କୁମ୍ଭୈଃ କ୍ୱଚାମଳକମୁଷ୍ଟିଭିଃ ।
ଅସ୍ପୃଶ୍ୟ ନେତ୍ର ବନ୍ଧାଦ୍ୟୈଃ କ୍ୱଚିନ୍ମୃଗଖଗେହୟା । ଭା ୧୦-୧୮
ଏହା ବ୍ୟତୀତ କେକୀ ପ୍ରାୟେ ନାଚିବା, ବକ ପ୍ରାୟେ ବସିବା, ଭୃଙ୍ଗ ଝଙ୍କାର ପରି ହୁଙ୍କାର କରିବା, ମାଙ୍କଡ଼ ଛୁଆମାନଙ୍କୁ ଗୋଡ଼ାଇ ଧରିବା, ଓ କରରେ କର ମାରି ପ୍ରତିଜ୍ଞା କରିବା ପ୍ରଭୃତି ବହୁ ପ୍ରକାର କଉତୁକ ଶ୍ରୀକୃଷ୍ଣଙ୍କର ଅତ୍ୟନ୍ତ ପ୍ରିୟ ଥିଲା ।

## ବୃନ୍ଦାବନ ଲୀଳା

### ବୃନ୍ଦାବନ ଗମନ

ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ବୃନ୍ଦାବନ ଲୀଳା କ୍ରମେ 'ପାରିଲେ ବତ୍ସା ରଖି'ରୁ ଆରମ୍ଭ ହୋଇଛି । ଶ୍ରୀକୃଷ୍ଣଙ୍କୁ ବୃନ୍ଦାବନ ଗମନ କରିବା ଦେଖି ଗୋପୀମାନଙ୍କ ମନରେ ମହାସୁଖ ଜାତ ହୋଇଛି । କେହି କେହି ଶ୍ରୀକୃଷ୍ଣଙ୍କ ଦୁଃଖରେ ଦୁଖିତ ହୋଇ ଯଶୋଦାଙ୍କ ଆଗରେ ନନ୍ଦଙ୍କ ଅବିଚାରର ପ୍ରତିବାଦ ଜଣାଉଛନ୍ତି । ନନ୍ଦଙ୍କ ଘରେ ସବୁ ସୁଖ ଥିବା ସତ୍ତ୍ୱେ ଧନଲୋଭରେ ନିର୍ଦ୍ଦୟ ହୋଇ କୃଷ୍ଣଙ୍କ ପରି ପୁଅକୁ ବୃନ୍ଦାବନ ପଠାଉଥିବା ଦେଖି ସେମାନେ ସହ୍ୟ କରି ପାରିନାହାନ୍ତି । ଶ୍ରୀକୃଷ୍ଣଙ୍କ ଚରିତ୍ର ବିଷମତାରେ ପରିପୂର୍ଣ୍ଣ । ଯାହାଙ୍କ ଶ୍ରୀମୁଖ ଦର୍ଶନରେ ସଂସାରର ସମସ୍ତ ସୁଖ ମିଳେ, ଯାହାଙ୍କ ପାଦସେବା କରିବା ପାଇଁ କୋଟି ଲକ୍ଷ୍ମୀ ଉତ୍କଣ୍ଠିତା, ଶିବ, ବ୍ରହ୍ମା ପ୍ରଭୃତି ଦେବତାଙ୍କର ସ୍ତୁତି ଯାହାଙ୍କ ନିକଟରେ ଅତି ତୁଚ୍ଛ, ସେ ପୁଣି ଗଉଡ଼ ଘରେ ଜନ୍ମ ହୋଇ କଠାଉ, ଦଉଡ଼ି, ଶିକା, ଭାର ଓ ବାଡ଼ିକୁ ନିଜର ସମ୍ବଳ କରିଛନ୍ତି । କାନ୍ଧରେ ପଘା ପକାଇ, କମଳୀ, ଧବଳୀ, ନୀଳୀ ଓ କୁଓଗଳୀ ପ୍ରଭୃତି ଗାଈମାନଙ୍କୁ ଡାକିବାରେ ତାଙ୍କର ଅଶେଷ ଆନନ୍ଦ । କବି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କ ଚରିତ୍ରର ଏହି ବିଷମତାରେ ଆଶ୍ଚର୍ଯ୍ୟ ହୋଇ ନାହାନ୍ତି । କାରଣ ସେ ଜାଣନ୍ତି, ଯେତେ ବଡ଼ ହେଲେବି ମଣିଷକୁ ନିଜ ଜାତିର କାର୍ଯ୍ୟ କରିବାକୁ ହୁଏ । ମଣିଷ ଜନ୍ମରେ ଯେ ଯାହା ଜୀବିକା ନ କଲେ ଖାଇବାକୁ ମିଳେ ନାହିଁ । ଶ୍ରୀକୃଷ୍ଣ ନିଜେ ଭଗବାନ ହେଲେବି ଗଉଡ଼ ଘରେ ଜନ୍ମହେବା ଦିନୁ ଗଉଡ଼ର ଜୀବିକା କରିବା ତାଙ୍କର କର୍ତ୍ତବ୍ୟ ।

ଦୀନକୃଷ୍ଣ କହିଛନ୍ତି, 'କାହୁଁ ଖାଇବେ । ନ ରଖିବେ ଯେବେ ଗୋଧନ ।' ରସକଲ୍ଲୋଳର ଏହି ପଂକ୍ତିଗୁଡ଼ିକରେ ଗୀତାର ନିମ୍ନ ଶ୍ଳୋକର ଭାବ ପ୍ରତିଧ୍ୱନିତ ହୋଇଛି :

ନ ମେ ପାର୍ଥାସ୍ତି କର୍ତ୍ତବ୍ୟଂ
ତ୍ରିଷୁ ଲୋକେଷୁ କିଞ୍ଚନ
ନା ନ ବାପ୍ତମବାପ୍ତବ୍ୟଂ ବର୍ତ୍ତ ଏବ ଚ କର୍ମଣି । ୩-୨୨ ।

ଅର୍ଥାତ୍, ହେ ପାର୍ଥ ! ଏ ତ୍ରିଭୁବନରେ ମୋର ଅପ୍ରାପ୍ତ କିଛି ନାହିଁ । କୌଣସି କର୍ମାନୁଷ୍ଠାନ କରିବା ମୋର ପ୍ରୟୋଜନ ନାହିଁ ଏବଂ ମୁଁ ମଧ୍ୟ କିଛି ଦରକାର କରେନାହିଁ, ତଥାପି ମୁଁ ସର୍ବଦା କର୍ମାନୁଷ୍ଠାନ କରୁଅଛି ।

ଶ୍ରୀକୃଷ୍ଣଙ୍କ ବୃନ୍ଦାବନ ଗମନକାଳୀନ ବର୍ଣ୍ଣନା ଅତ୍ୟନ୍ତ ଚମତ୍କାର । କଳାକଳେବର ଶ୍ରୀକୃଷ୍ଣଙ୍କର ନଖରୁ ମୁଖ ସରିକି ପ୍ରତ୍ୟେକ ଅଙ୍ଗର ସୌନ୍ଦର୍ଯ୍ୟ ଗୋପୀମାନଙ୍କୁ ମୁଗ୍ଧ କରିଛି । କୃଷ୍ଣଙ୍କ ପରି ପୁଅ ପାଇଥିଲେ ତାକୁ ଇଷ୍ଟଦେବତା ଠାରୁ ଶ୍ରେଷ୍ଠ କରି ପଲଙ୍କ ଉପରେ ବସାଇ ପୂଜା କରିବାର କଳ୍ପନା ସେମାନେ କରିଛନ୍ତି ।

**ଗୋବାହୁଡ଼ା**

ସନ୍ଧ୍ୟା ସମୟରେ ଗୋରୁପଲ ଅଡ଼ାଇ ବୃନ୍ଦାବନରୁ ଫେରି ଆସୁଥିବାର ଦୃଶ୍ୟ ମଧ୍ୟ ଅତି ସୁନ୍ଦର । ଆଗରେ ଗୋରୁପଲ ପଛରେ ବ୍ରଜବାଳକ ମେଳରେ ଯଦୁକୁଳ ଚନ୍ଦ୍ରମା ଶ୍ରୀକୃଷ୍ଣ । ମସ୍ତକରେ କେକୀକଳାପ ରଞ୍ଜିତ ମୁକୁଟ, କପାଳରେ ଊର୍ଦ୍ଧ୍ୱ କସ୍ତୁରୀ ତିଳକ, କର୍ଣ୍ଣରେ ମହାମଣିମୟ ମକରକୁଣ୍ଡଳ, ନାସାରେ ଉଜ୍ଜ୍ୱଳ ମୋତି, କଣ୍ଠରେ ହାର, କଟିତଟରେ ପୀତବସନ ଓ କନକ ନିର୍ମିତ କିଙ୍କିଣୀ ପରିଧାନ କରି ସେ ଅତ୍ୟନ୍ତ ରମଣୀୟ ଦେଖାଯାଉଛନ୍ତି । ତାଙ୍କର ସମସ୍ତ ଅଙ୍ଗ ଗୋରୁଧୂଳିରେ ଧୂସରିତ । କନ୍ଧ ଦେଶରେ ଉତ୍ତରୀ ସଦୃଶ ବନମାଳ ଲମ୍ବିତ ହୋଇଛି । ଗୋପାଳ ବାଳକମାନଙ୍କ ମନରେ ଅସୀମ ଆନନ୍ଦ । ଗଉଡ଼ ଗୀତ ସହ ଗଉଡ଼ ନାଟ ନାଚି, ବେଣୁ, ଶୃଙ୍ଗ, ପତର କାହାଳୀ ଓ କରତାଳି ବଜାଇ ସେମାନେ ଦିଗନ୍ତ ପ୍ରକମ୍ପିତ କରୁଛନ୍ତି । ଏ ସବୁ ସହ ଧବଳୀ, କମଳୀ, ଚଞ୍ଚଳୀ, ନୀଳୀ, ପରମଳୀ, ହଂସୀ, ବଂଶୀ, ବଉଳୀ ଓ କୁଓଗଳୀ ଡ଼ାକ ମିଶି ଗୋପପୁରର ଦାଣ୍ଡ ସମୁଦ୍ର ନିର୍ଘୋଷ ପରି ଗର୍ଜନ କରୁଛି ।

ଏ ସବୁ ଭିତରେ ଶ୍ରୀକୃଷ୍ଣଙ୍କ ରୂପ ମାଧୁର୍ଯ୍ୟ କବି ଦୀନକୃଷ୍ଣଙ୍କୁ ବିଶେଷ ଭାବରେ ମୁଗ୍ଧ କରିଛି । ତାଙ୍କର ଅରୁଣ କଟାକ୍ଷରେ ସେ ଜଗତ ଜୟ କରିବା କ୍ଷମତାର ସନ୍ଧାନ କରିଛନ୍ତି । ମଧୁର ମୃଦୁମନ୍ଦ ହାସରେ କାମ ଦାସରେ ପରିଣତ ହୁଏ । କିଶୋରୀ ଗୋପୀମାନେ ଶ୍ରୀକୃଷ୍ଣଙ୍କର ମନୋମୋହକ ରୂପ

ଦେଖିବାକ୍ଷଣି ଅଧୈର୍ଯ୍ୟ ହୋଇ ପଡ଼ିଛନ୍ତି । ସେମାନଙ୍କ ମନ ପର ବଶ ହୋଇ ଯାଇଛି । ସେମାନେ ମଧୁର ଅଙ୍ଗଭଙ୍ଗ ପ୍ରଦର୍ଶନ କରି, କର୍ଣ୍ଣକଣ୍ଡୁ ଛଳେ କର ଟେକି, କୁଚରୁ ଅଞ୍ଚଳ ଖସାଇ ଶ୍ରୀକୃଷ୍ଣଙ୍କର ମନ ଚଞ୍ଚଳ କରିବାକୁ ଚେଷ୍ଟା କରିଛନ୍ତି । କେବଳ ସେତିକି ନୁହେଁ ସେମାନେ ସମସ୍ତେ ଜାନୁରୂପୀ କଦଳୀ ବୃକ୍ଷ ରୋପଣ କରି, କୁଚକୁ ମଙ୍ଗଳ କୁମ୍ଭ ରୂପରେ ସ୍ଥାପନା କରି, ମନ୍ଦହାସରେ ପୁଷ୍ପବୃଷ୍ଟି କରି ଓ ବାହୁ ଯୁଗଳକୁ ଫୁଲମାଳ କରି ମନେ ମନେ ଶ୍ରୀକୃଷ୍ଣଙ୍କୁ ପ୍ରାଣନାଥରୂପେ ବରଣ କରିଛନ୍ତି । ସ୍ୱୟମ୍ବର ସମାପ୍ତ ହୋଇଛି ଓ ସମସ୍ତେ ଶ୍ରୀକୃଷ୍ଣଙ୍କର ସ୍ୱକୀୟା କାନ୍ତାରେ ପରିଣତ ହୋଇଛନ୍ତି ।

**ବସ୍ତ୍ରହରଣ**

ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କ ଲୌକିକ ଲୀଳା ମଧ୍ୟରୁ ବସ୍ତ୍ରହରଣ ଅନ୍ୟତମ । ବସ୍ତ୍ରହରଣ ପ୍ରସଙ୍ଗ ଭାଗବତରୁ ଗୃହୀତ ହୋଇ ଥିଲେ ହେଁ ଦୀନକୃଷ୍ଣଙ୍କ ବର୍ଣ୍ଣନାରେବହୁ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ଭାଗବତ ଅନୁଯାୟୀ ଏହା ହେଉଛି, ହେମନ୍ତ କାଳର କଥା । ସଂସ୍କୃତ ଭାଗବତର ଗୋପୀମାନେ ଏହି ଅବସରରେ କାତ୍ୟାୟିନୀ ବ୍ରତ ପାଳନ କରିଛନ୍ତି । ଓଡ଼ିଆ ଭାଗବତରେ ଦୁର୍ଗାଙ୍କ ସହ ବାଲୁକା ଶିବଙ୍କର ପୂଜା ପାଳିତ ହୋଇଛି । ରସକଲ୍ଲୋଳ ଗୋପୀମାନେ ଗ୍ରୀଷ୍ମତାପରେ ବିକଳ ହୋଇ ଜଳକ୍ରୀଡ଼ା କରିବା ପାଇଁ ଯମୁନାକୁ ଯାଇଛନ୍ତି । ବାଲୁକା ଶଙ୍କର ପରିବର୍ତ୍ତେ କୁଚଶମ୍ଭୁକୁ ଜଳଶାୟୀ କରି ସମସ୍ତେ ଏକ ମନରେ ଶ୍ରୀକୃଷ୍ଣଙ୍କୁ କାମନା କରିଛନ୍ତି । ଭାଗବତ ପରି ଶ୍ରୀକୃଷ୍ଣଙ୍କୁ ସ୍ୱାମୀରୂପେ କାମନା କରିବାର କଳ୍ପନା ଏଥିରେ ନାହିଁ । ଭାଗବତରେ ଶ୍ରୀକୃଷ୍ଣ ଗୋପାଳବାଳକମାନଙ୍କ ମେଳରେ ଯମୁନା କୂଳକୁ ଆସିଛନ୍ତି ଓ ବସ୍ତ୍ରହରଣ କାଳରେ ସେମାନଙ୍କର ସାହାଯ୍ୟ ଗ୍ରହଣ କରିଛନ୍ତି । ଅଥଚ ରସକଲ୍ଲୋଳର ଶ୍ରୀକୃଷ୍ଣ ଏକାକୀ । ଉଭୟ ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କ ଆଦେଶ ପାଳନ କରି ପବନ ବସ୍ତ୍ରସବୁକୁ ଆଣି କଦମ୍ବ ବୃକ୍ଷରେ ରଖିଛି ।

ଭାଗବତରେ ଶ୍ରୀକୃଷ୍ଣ କଦମ୍ବବୃକ୍ଷ ଉପରେ ବସି ବେଣୁନାଦ ଦ୍ୱାରା ଗୋପୀମାନଙ୍କ ଧ୍ୟାନ ନିଜ ଆଡ଼କୁ ଆକୃଷ୍ଟ କରିଛନ୍ତି । ଅଥଚ ରସକଲ୍ଲୋଳରେ ଶ୍ରୀକୃଷ୍ଣ କଦମ୍ବ ବୃକ୍ଷ ଉପରୁ ସ୍ନାନରତା କିଶୋରୀ ଗୋପୀମାନଙ୍କର ଅଙ୍ଗ ସୌନ୍ଦର୍ଯ୍ୟ ଏକାଗ୍ର ଦୃଷ୍ଟିରେ ଅବଲୋକନ କରିଛନ୍ତି । ଗୋପୀମାନେ ଜଳକ୍ରୀଡ଼ା ସମାପ୍ତ କରି କୂଳକୁ ଯାଇ ନିଜର ପିନ୍ଧାବାସ ନ ପାଇ ବିସ୍ମିତ ହୋଇଛନ୍ତି ଓ

ବିଭିନ୍ନ ପ୍ରକାର କଳ୍ପନା ସେମାନଙ୍କ ମନରେ ସ୍ଥାନ ପାଇଛି । ପରିଶେଷରେ ସେମାନେ କଦମ୍ବ ବୃକ୍ଷରେ ଦୋଳି କରି ବସିଥିବା ଶ୍ରୀକୃଷ୍ଣଙ୍କୁ ଦେଖିପାରି କଳହଂସୀକୁଳ ସଦୃଶ ଜଳରେ ଚଞ୍ଚଳ ଚଞ୍ଚଳ ପ୍ରବେଶ କରିଛନ୍ତି । ଅନ୍ୟାନ୍ୟ ବର୍ଣ୍ଣନାରେ କୌଣସି ପାର୍ଥକ୍ୟ ନାହିଁ । ତେବେ ଭାଗବତ ପରି ଶ୍ରୀକୃଷ୍ଣ ଗୋପୀମାନଙ୍କ ବସ୍ତ୍ରକୁ କାନ୍ଧରେ ପକାଇ ଗଛରୁ ଓହ୍ଲାଇ ଆସି ନାହାନ୍ତି ବା ବୃନ୍ଦାବନରେ ଗୋପୀମାନଙ୍କୁ ରମଣ କରିବାର ସତ୍ୟ କରାଇ ନାହାନ୍ତି ।

**ଅଲୌକିକ ବୃନ୍ଦାବନ ଲୀଳା**

ଶ୍ରୀକୃଷ୍ଣଙ୍କ ବୃନ୍ଦାବନ ଲୀଳାମାନଙ୍କ ମଧ୍ୟରୁ କାଳୀୟ ଦଳନ, ବତ୍ସାସୁର, ବକାସୁର, ଅଘାସୁର, ତାଳବନ ପାଳ, ପ୍ରଳମ୍ବା ପ୍ରଭୃତି ଅସୁରଙ୍କର ବଧ, ଦାବାନଳ ପାନ, ବନ ଭୋଜନ, ବତ୍ସ ହରଣ ଓ ଗୋମତ ଗିରିଧାରଣ ପ୍ରଭୃତି ଲୀଳା ଅଲୌକିକ । ରସକଲ୍ଲୋଳରେ କାଳୀୟ ଦଳନ ବ୍ୟତୀତ ଅନ୍ୟାନ୍ୟ ଲୀଳାର ବର୍ଣ୍ଣନା ଅତି ସଂକ୍ଷିପ୍ତ । ଏପରିକି ଗୋଟିଏ ଗୋଟିଏ ପଦରେ କବି ଏକାଧିକ ଅସୁରଙ୍କ ବଧର ବର୍ଣ୍ଣନା କରିଛନ୍ତି । ବତ୍ସାସୁର ବଧର ବର୍ଣ୍ଣନା କରି କବି ଲେଖିଛନ୍ତି -

କଉତୁକେ ବତ୍ସ ରଖୁଁ ରଖୁଁ ବତ୍ସାସୁରକୁ ମାଇଲେ ବୃକ୍ଷରେ । ୬ -୧୨

ବକାସୁର ଓ ଅଘାସୁର ବଧର ବର୍ଣ୍ଣନା ପାଇଁ କେବଳ ଗୋଟିଏ ମାତ୍ର ପଦ ଯଥେଷ୍ଟ ।

କେତେଦିନେ ହରି ବକ ଥଣ୍ଟ ଚିରି କାଳସଦନ ଦେଖାଇଲେ ।
କରି ଗୋପସୁତମାନଙ୍କୁ ଚକିତ ବିଚିତ୍ର ମନେ ରଖାଇଲେ ।
କ୍ରମେ ବିନାଶ, କଲେ ସେ ଅଘା ଅସୁରକୁ
କଳୁଷ ପକାଇ ସୁରପୁରେ ଯାଇ ସମାନ ହୋଇଲା ସୁରକୁ । ୬-୧୩

ତାଳବନ ପାଳ ଓ ପ୍ରଳମ୍ବାସୁର ବଧ, ମହା ଦାବାନଳ ପାନ, ଗୋମତ - ଗିରି ଧାରଣ, ବନ ଭୋଜନ, ବତ୍ସାହରଣ ପ୍ରଭୃତି ଘଟଣା ସେହିପରି କେବଳ ସଂକେତରେ କୁହାଯାଇଛି । ଅସୁର କୁଳକୁ ନିର୍ମୂଳ କରିବାରେ ବଳରାମ ଶ୍ରୀକୃଷ୍ଣଙ୍କର ପ୍ରଧାନ ସହାୟ । ଅସୁର ସବୁ ବିନାଶ ହେବାପରେ କେହି କେହି ସୁରପୁରରେ ସୁରମାନଙ୍କର ସମାନ ହୋଇଛନ୍ତି ଓ କେହି କେହି ଶ୍ରୀକୃଷ୍ଣଙ୍କ ଅଙ୍ଗରେ ଲୀନ ହୋଇଛନ୍ତି । ଏସବୁ ପ୍ରସଙ୍ଗର ବର୍ଣ୍ଣନା କଲାବେଳେ କବି ଭାଗବତଙ୍କୁ ଅନୁସରଣ କରିଥିବା ପରି ମନେ ହୁଏ ।

**କାଳୀୟ ଦଳନ**

ଲୌକିକ ଲୀଳାର ବସ୍ତ୍ରହରଣ ପରି ଅଲୌକିକ ଲୀଳାରେ କାଳୀୟ ଦଳନ ମୁଖ୍ୟସ୍ଥାନ ପାଇଛି । କାଳୀମର୍ଦ୍ଦନ କଥା ଭାଗବତ ବ୍ୟତୀତ ବ୍ରହ୍ମପୁରାଣ, ବିଷ୍ଣୁପୁରାଣ, ପଦ୍ମପୁରାଣ, ହରିବଂଶ ଓ ବ୍ରହ୍ମବୈବର୍ତ୍ତପୁରାଣରେ ଅଛି । ଭାଗବତରେ ବର୍ଣ୍ଣିତ କାଳୀୟ ଦଳନ ଲୀଳାର ସାରକଥା ହେଉଛି ଯେ କାଳୀୟ ସର୍ପର ବିଷଜ୍ୱାଳାରେ ଯମୁନାର ପବିତ୍ର ଜଳ ବିଷାକ୍ତ ହୋଇ ଚରାଚର ଜୀବମାନଙ୍କୁ କଷ୍ଟଦାନ କରୁଥିଲା । ସେମାନଙ୍କର ମଙ୍ଗଳ ସାଧନ ପାଇଁ ଭଗବାନ ଶ୍ରୀକୃଷ୍ଣ କାଳୀୟ ଦଳନ ଲୀଳା ଇଚ୍ଛା କରିଥିଲେ । ଏହି ଉଦ୍ଦେଶ୍ୟରେ ସେ ଯମୁନା ନଦୀ ତଟସ୍ଥିତ ଏକ କଦମ୍ବ ବୃକ୍ଷ ଉପରୁ କାଳୀୟ ହ୍ରଦରେ ପ୍ରବେଶ କରି କ୍ରୀଡ଼ା କରିବାକୁ ଲାଗିଲେ । ଶ୍ରୀକୃଷ୍ଣଙ୍କର ଏପରି କାର୍ଯ୍ୟରେ କାଳୀୟ ସର୍ପ କ୍ରୋଧାନ୍ୱିତ ହୋଇ ଶ୍ରୀକୃଷ୍ଣଙ୍କୁ ମର୍ମ ସ୍ଥାନରେ ଦଂଶନ କରି ଅଙ୍ଗ ପାଶରେ ବନ୍ଧନ କରିଛି । ଭଗବାନ ଶ୍ରୀକୃଷ୍ଣ ନାଗପାଶରେ ଆବଦ୍ଧ ହୋଇ ଅଚେତ ହୋଇଯାଇଛନ୍ତି । ତାଙ୍କର ଦୁର୍ଦ୍ଦଶାରେ ଗୋସମେତ ଗୋପାଳବାଳକମାନଙ୍କର ଦୁଃଖର ସୀମା ନାହିଁ । ଗୋପପୁରରେ ମଧ୍ୟ ବିଭିନ୍ନ ପ୍ରକାର ଅପଶକୁନ ଦେଖାଦେଇଛି । ନନ୍ଦ, ଯଶୋଦା ପ୍ରଭୃତି ଚିନ୍ତିତ ହୋଇ ପଡ଼ିଛନ୍ତି । ଶ୍ରୀକୃଷ୍ଣଙ୍କ ଅମଙ୍ଗଳର ଆଶଙ୍କା କରି ସେମାନେ ତାଙ୍କର ଅନ୍ୱେଷଣ କରିଛନ୍ତି । କିଛିକ୍ଷଣ ପରେ କାଳୀୟ ସର୍ପର ବନ୍ଧନରେ ଚେଷ୍ଟାହୀନ ହୋଇପଡ଼ିଥିବା ଶ୍ରୀକୃଷ୍ଣଙ୍କୁ ଦେଖି ସେମାନେ ବ୍ୟଥିତ ହୋଇଛନ୍ତି । ଶ୍ରୀକୃଷ୍ଣ ସେମାନଙ୍କର ଦୁଃଖ ବୁଝିଛନ୍ତି । ସର୍ପ ବନ୍ଧନରୁ ନିଜକୁ ଅକ୍ଳେଶରେ ମୁକ୍ତକରି ସେ ତାର ମସ୍ତକ ଉପରେ କଳାପୂର୍ଣ୍ଣ ନୃତ୍ୟ ଆରମ୍ଭ କରିଛନ୍ତି । ତାଙ୍କ ଶରୀରର ଭାରାରେ କାଳୀୟ ସର୍ପର ଅଙ୍ଗ-ପ୍ରତ୍ୟଙ୍ଗ ଅବଶ ହୋଇଯାଇଛି । ତାର ଦୂରବସ୍ଥା ଦେଖି ତାର ସାଧ୍ୱୀ ପତ୍ନୀସବୁ ଭଗବାନ ଶ୍ରୀକୃଷ୍ଣଙ୍କର ଶରଣାଗତ ହୋଇଛନ୍ତି । ସେମାନଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଭଗବାନ ଶ୍ରୀକୃଷ୍ଣ କାଳୀୟ ସର୍ପକୁ ନିଜ କୁଟୁମ୍ବ ସହ ସମୁଦ୍ରରେ ବାସ କରିବାର ଅନୁମତି ଦିଅନ୍ତି ।

ରସକଲ୍ଲୋଳର କାଳୀୟ ଦଳନ କଥା ବିଶେଷ କରି ଭାଗବତରୁ ସଂଗୃହୀତ । ଏପରିକି 'କୃଷ୍ଣ ଆନନ୍ଦରେ ପ୍ରବେଶ ହୋଇଲେ ନଟ ଯେହ୍ନେ ନାଟ ମନ୍ଦିରେ' (୯-୨) ଓ 'କଲେ ନଟବର ପରାୟେ ତାଣ୍ଡବ ଶ୍ରୀରଙ୍ଗ ଶ୍ରୀଅଙ୍ଗ ଭଙ୍ଗିରେ' (୯-୪) ପ୍ରଭୃତି ସଂସ୍କୃତ ଭାଗବତର 'ତନ୍ମୂର୍ଧରତ୍ନନିକରସ୍ପର୍ଶାତିତାମ୍ର

ପାଦାମୁକ୍ତୋଽଖିଳକଳାଦି ଗୁରୁର୍ନନର୍ତ୍ତ' (୧୦,୧୬-୨୬) ବା 'ଚଚ୍ଛିତ୍ରତାଣ୍ଡବ ବିରୁଗ୍‌ଣ ଫଣାତପତ୍ରୋ' ପ୍ରଭୃତି ପଂକ୍ତି ଉପରେ ଆଧାରିତ । ଭାଗବତ ପରି ଏଥିରେ ମଧ୍ୟ କାଳୀୟକୁ ରମଣୀମାନଙ୍କ ସହ ସମୁଦ୍ରରେ ବାସ କରିବାର ଆଦେଶ ପ୍ରଦତ୍ତ ହୋଇଛି । ଅଥଚ ଉଭୟ ଗ୍ରନ୍ଥରେ କାଳୀୟ ଦଳନର କାରଣ ଭିନ୍ନଭାବରେ ନିର୍ଦ୍ଦେଶିତ । ଭାଗବତ ଅନୁଯାୟୀ କାଳୀୟ ଦଳନର କାରଣ ହେଉଛି, ଯମୁନାର ଜଳକୁ ବିଷମୁକ୍ତ କରିବା । ରସକଲ୍ଲୋଳକାର କାଳୀୟ ଦଳନ କଥାକୁ କଂସ ସହ ସଂପୃକ୍ତ କରିଛନ୍ତି । କାଳିନ୍ଦୀରୁ ଶତ ଭାର ପଦ୍ମ ତୋଳି ପଠାଇବା ପାଇଁ କଂସ ଆଦେଶ ଦେଇଛି । କାଳୀୟ ସର୍ପର ବାସସ୍ଥାନ କାଳିନ୍ଦୀ ହ୍ରଦରୁ କମଳ ତୋଳିବା ସହଜ କଥା ନୁହେଁ । ନନ୍ଦଙ୍କ ମନରେ ମହାଭୟ ଜାତ ହୋଇଛି । ସେ ନିରୁପାୟ ହୋଇ ଯାଇଛନ୍ତି । ପଦ୍ମ ଫୁଲ କିଏ ତୋଳିବ ସେ ସ୍ଥିର କରି ପାରିନାହାନ୍ତି । ଶ୍ରୀକୃଷ୍ଣ ଏସବୁ ଜାଣିପାରି ପଦ୍ମ ତୋଳିବା ପାଇଁ ଆଗଭର ହୋଇଛନ୍ତି । କାଳିନ୍ଦୀରେ ପଶି ଫୁଲ ତୋଳିବା ବେଳକୁ କାଳୀ ଆସି ତାଙ୍କ ପାଦରେ ଦଂଶନ କରିଛି । ଦୀନକୃଷ୍ଣ କାଳୀୟ ମର୍ଦ୍ଦନ ପ୍ରସଙ୍ଗରେ ଗୋପୀମାନଙ୍କୁ ବିଶେଷ ମହତ୍ତ୍ୱ ଦେଇଛନ୍ତି । କାଳୀ ମର୍ଦ୍ଦନ କଥା ଶୁଣିବାକ୍ଷଣି ସେମାନଙ୍କ ମନରେ ଯୁଗପଦ୍ ଭୟ ଓ ଆନନ୍ଦ ଭାବର ସୃଷ୍ଟି ହୋଇଛି । ସେମାନେ ଶ୍ରୀକୃଷ୍ଣଙ୍କ ମଙ୍ଗଳ କାମନା କରି ଶିବ, କାଳୀ ଓ ଧର୍ମଦେବତାର ପୂଜା କରିଛନ୍ତି ଓ ବିଜୟୀ ଶ୍ରୀକୃଷ୍ଣଙ୍କର ବନ୍ଦାପନା କରିବା ପାଇଁ ଚନ୍ଦ୍ରାବଳୀଙ୍କୁ ସୁବର୍ଣ୍ଣ ଥାଳି ସଜାଡ଼ିବା ପାଇଁ ଅନୁରୋଧ କରିଛନ୍ତି । ଯମୁନାର ଜଳ ବିଷଜ୍ୱାଳାରୁ ମୁକ୍ତ ହେବାରୁ ଗୋପୀମାନେ ସ୍ନାନ କରିବାକୁ ମନ କରି କୁଙ୍କୁମ ଅଯେଁଲା ଧରି ରାଧାଙ୍କ ପାଖରେ ପହଞ୍ଚିଛନ୍ତି ।

ପଦ୍ମତୋଳା ପ୍ରସଙ୍ଗର ବିସ୍ତୃତ ବିବରଣ ଦୀନକୃଷ୍ଣଙ୍କ ଅନ୍ୟ ଗ୍ରନ୍ଥ ଫୁଲତୋଳାରୁ ମିଳେ । ଏହି ଗ୍ରନ୍ଥରେ ଛଟି ଅଧ୍ୟାୟ । ପ୍ରଥମ ଅଧ୍ୟାୟରେ କଂସର ଆଦେଶ ଅକ୍ରୁର ଦ୍ୱାରା ଗୋପପୁରରେ ପ୍ରଚାରିତ ହୋଇଛି । ନନ୍ଦ ଦୁଃଖରେ ବ୍ୟଥିତ ହୋଇଛନ୍ତି । ନନ୍ଦ, ଯଶୋଦା ଓ ଗୋପୀମାନଙ୍କର ମନା ନ ମାନି ଶ୍ରୀକୃଷ୍ଣ ଫୁଲ ତୋଳିବା ପାଇଁ ପ୍ରସ୍ତୁତ ହୋଇଛନ୍ତି । ଏହି ଅଧ୍ୟାୟର ନାମ ପଦ୍ମତୋଳା ଚରିତ୍ର । ଦ୍ୱିତୀୟ ଅଧ୍ୟାୟରେ ଶ୍ରୀକୃଷ୍ଣ ଲକ୍ଷ ଲକ୍ଷ ନାଗେଣି ବଳ ନାଶ କରି କୁଢ଼ କୁଢ଼ ପଦ୍ମ ତୋଳି କୂଳରେ ଗଦା କରିଛନ୍ତି ଓ କ୍ଳାନ୍ତ ହୋଇଥିବା ଯୋଗୁଁ କାଳିନ୍ଦୀ ତଟରେ କୋମଳ ପଦ୍ମପତ୍ର ପାରି ବିଶ୍ରାମ କରିଛନ୍ତି । ଏହି ଅଧ୍ୟାୟର ନାମ ଅଳସ ନିଦ୍ରା । ତୃତୀୟ ଅଧ୍ୟାୟରେ କାଳୀ ନିଦ୍ରାଭିଭୂତ ଶ୍ରୀକୃଷ୍ଣଙ୍କୁ

ଦଂଶନ କରିଛି । ପରେ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁ ବୋଲି ଚିହ୍ନିପାରି ତାଙ୍କ କଠାଉ ତଳେ ଶରଣ ପଶିଛି । ବଳରାମ ଶ୍ରୀକୃଷ୍ଣଙ୍କର ଏ ଅବସ୍ଥା ଦେଖି ବିକଳ ହୋଇଛନ୍ତି ଓ ଦେବତାମାନଙ୍କ ଉପଦେଶକ୍ରମେ ଗରୁଡ଼କୁ ସ୍ମରଣ କରିଛନ୍ତି । ରମ୍ୟକ ଦ୍ୱୀପରେ ଗରୁଡ଼ର ବାସ । ସେ ନିଜର ସ୍ତ୍ରୀ ମଉନାବତୀ ସହ ଥାଏ । ବଳଦେବଙ୍କ ସ୍ତୁତି ଶୁଣି ସେ କାଳିନ୍ଦୀ କୂଳରେ ପହଞ୍ଚିଛି । ଏ ଅଧ୍ୟାୟର ପରିଚୟ ଦେଇ କବି ଲେଖିଛନ୍ତି, ଶ୍ରୀକୃଷ୍ଣ କାଳୀଦଂଶନେ ବଳଦେବ ଶୋକ କରଣେ ଗରୁଡ଼ ପ୍ରବେଶେ କାଳୀ ଶରଣ କଥନେ ନାମ ତୃତୀୟ ଅଧ୍ୟାୟ । ଚତୁର୍ଥ ଅଧ୍ୟାୟରେ ଗରୁଡ଼ ମୃତ୍ୟୁସଞ୍ଜିବନୀପୁରରେ ପ୍ରବେଶ କରି ନେତ୍ରରେ ଅମୃତ ଆଣି ଶ୍ରୀକୃଷ୍ଣଙ୍କୁ ଜୀବଦାନ ଦେଇଛି । ଶ୍ରୀକୃଷ୍ଣଙ୍କ ଆଦେଶରେ ଗରୁଡ଼ କାଳୀକୁ ଇନ୍ଦ୍ରପୁର, ବାସୁକିପୁର, ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ସବୁଆଡ଼େ ଖୋଜି ନିରାଶ ହୋଇ ଫେରିଛି । ଶେଷରେ ଶ୍ରୀକୃଷ୍ଣ କଠାଉ ତଳେ କାଳୀକୁ ଦେଖି ତାର ଫେଣା ଉପରେ ଉଭା ହୋଇଛନ୍ତି । ଏ ଅଧ୍ୟାୟର ନାମ ହେଲା କାଳୀ ଦଳନ । ପଞ୍ଚମ ଅଧ୍ୟାୟରେ କାଳୀର ସ୍ତୁତିରେ ପ୍ରସନ୍ନ ହୋଇ ଶ୍ରୀକୃଷ୍ଣ ତା ମସ୍ତକରେ କଠାଉ ଚିହ୍ନ ରଖିଛନ୍ତି । ନାଗବଳ ପଦ୍ମଫୁଲ ନେଇ କଂସ ପୁରକୁ ଯାଇଛନ୍ତି । ଗୋପପୁରରେ ରାଧା, ଯଶୋବନ୍ତିଙ୍କ ସହ ଅର୍ଘ୍ୟଥାଳି ଧରି ଶ୍ରୀକୃଷ୍ଣଙ୍କୁ ବନ୍ଦାପନା କରିଛନ୍ତି । ବନ୍ଦାପନା ପରେ ଶ୍ରୀକୃଷ୍ଣ ରତ୍ନପଲଙ୍କରେ ଶୟନ କରନ୍ତି । ଏ ଅଧ୍ୟାୟର ନାମକରଣ ହୋଇଛି, ଶ୍ରୀକୃଷ୍ଣ ରତ୍ନପଲଙ୍କେ ଶୟନ । ଷଷ୍ଠ ଅଧ୍ୟାୟରେ ନାଗବଳ ପଦ୍ମଭାର ନେଇ କଂସ ଛାମୁରେ ସମର୍ପଣ କରିଛନ୍ତି । ଏ ଅଧ୍ୟାୟର ନାମ ପଦ୍ମଫୁଲ ସମର୍ପଣ । ପଦ୍ମତୋଳା ପ୍ରସଙ୍ଗର ଅନ୍ୟ ନାମ ହେଉଛି କାଳୀୟ ଦଳନ । ଏହାର କବି ଭାବରେ ବଳରାମ ଦାସ ଓ ଜଗନ୍ନାଥ ଦାସ ମଧ୍ୟ ପ୍ରସିଦ୍ଧି ଲାଭ କରିଛନ୍ତି ଏବଂ ଦୀନକୃଷ୍ଣଦାସଙ୍କ ପଦ୍ମତୋଳାର କଥାବସ୍ତୁ ସହ ଏହାର ସମାନତା ଅଛି ।

ରସକଲ୍ଲୋଳ ବା ଫୁଲତୋଳାର ପଦ୍ମତୋଳା ପ୍ରସଙ୍ଗ ଭାଗବତ ବା ଅନ୍ୟ ପୁରାଣରେ ନାହିଁ । ଭାସକୃତ ବାଳଚରିତର ଚତୁର୍ଥ ଅଙ୍କରେ ଶ୍ରୀକୃଷ୍ଣ ଯମୁନାର ଫୁଲ ତୋଳି ଗୋପୀମାନଙ୍କୁ ଦେବାକଥା ଅଛି, କିନ୍ତୁ କଂସ ସହ ଏହାର କୌଣସି ସଂପର୍କ ନାହିଁ । ଦୀନକୃଷ୍ଣଙ୍କ ରସକଲ୍ଲୋଳ ଓ ଫୁଲତୋଳାର କଥାବସ୍ତୁ ସହ ହିନ୍ଦୀ କବି ସୁରଦାସ ଓ ଗୁଜରାଟର କବି ପ୍ରେମାନନ୍ଦଙ୍କର ବହୁ ସାଦୃଶ୍ୟ ଅଛି । ଦୀନକୃଷ୍ଣଙ୍କ ପରି ସୁରଦାସ କାଳୀୟ ଦଳନ ପ୍ରସଙ୍ଗକୁ କଂସ

ସହ ସଂପୃକ୍ତ କରିଛନ୍ତି ଓ ନାଗଦ୍ୱାରା ଫୁଲ ଭାର କଂସପୁରକୁ ପ୍ରେରଣ କରାଇଛନ୍ତି । ଏଥିରୁ ଅନୁମିତ ହୁଏ ଶାସ୍ତ୍ରୀୟ ପରଂପରା ପରି ଲୋକକଥା ଦେଶର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଗତିକରି କବିମାନଙ୍କୁ ପ୍ରଭାବିତ କରୁଥିଲା । ଓଡ଼ିଆ ଲୋକଗୀତ ମଧ୍ୟ କାଳୀୟ ଦଳନ କଥାକୁ କଂସ ଓ ପଦ୍ମଫୁଲ ତୋଳା ସହ ସଂପୃକ୍ତ କରିଛି । ଏହି କବିତାର ପ୍ରଥମ ପଦ ହେଉଛି-

କଂସର ଘରଣୀ ପଦ୍ମାବତୀ ରାଣୀ କରିଛି ଧନିତ୍ରୀ ଓଷା

ଲକ୍ଷେ ପଦ୍ମଭାର ଦେବୁଟିରେ ନନ୍ଦ + + + ।

**ରାସଲୀଳା**

ରାସଲୀଳା କୃଷ୍ଣ କଥାର ଅତି ମହତ୍ତ୍ୱପୂର୍ଣ୍ଣ ଅଙ୍ଗ । ପ୍ରାୟ ପ୍ରତ୍ୟେକ ପ୍ରାଚୀନ ପୁରାଣରେ ଶ୍ରୀକୃଷ୍ଣର ଏହି ଲୀଳା, ରାସ ନାମରେ ପ୍ରସିଦ୍ଧ । ହରିବଂଶ ଓ ଭାସଙ୍କ ବାଳଚରିତରେ ଏହାକୁ ହଲ୍ଲୀଷକ କୁହାଯାଇଛି । ଏହାର ତାମିଲ ନାମ ହେଉଛି କୁରବଇ କୁଟ୍ଟୁ । ରାସଲୀଳା ବର୍ଣ୍ଣନା କରୁଥିବା ପ୍ରାଚୀନ ଗ୍ରନ୍ଥମାନଙ୍କ ମଧ୍ୟରେ ଭାସଙ୍କ ବାଳଚରିତ, ତାମିଲ ଶିଳାପ୍ପଦିକରମ୍ ଏବଂ ଆଣ୍ଡାଳଙ୍କ ତିରୁପାଡ୍ଢେ, ବ୍ରହ୍ମପୁରାଣ, ବିଷ୍ଣୁପୁରାଣ, ହରିବଂଶ, ପଦ୍ମପୁରାଣ, ଶ୍ରୀମଦ୍ ଭାଗବତ, ବ୍ରହ୍ମବୈବର୍ତ୍ତପୁରାଣ ଓ ଜୟଦେବଙ୍କ ଗୀତଗୋବିନ୍ଦ ପ୍ରଧାନ ।

ପୁରାଣମାନଙ୍କରେ ଶ୍ରୀକୃଷ୍ଣଙ୍କ ରାସଲୀଳାର ତିନୋଟି ପରଂପରା ଦେଖିବାକୁ ମିଳେ - (୧) ଗୋପୀ- କୃଷ୍ଣରାସ, (୨) ଗୋପୀ-ରାଧା-କୃଷ୍ଣ ଓ (୩) ରାଧା-କୃଷ୍ଣ ରାସ । ଋତୁ ଦୃଷ୍ଟିରୁ ଏହାକୁ ବାସନ୍ତୀ ବା ଶାରଦୀ ରାସ ମଧ କୁହାଯାଏ । ରାସଲୀଳାର ପୂର୍ବୋକ୍ତ ରୂପମାନଙ୍କ ମଧ୍ୟରୁ ଗୋପୀ-କୃଷ୍ଣ ରାସ ସବୁଠାରୁ ପ୍ରାଚୀନ । ବାଳଚରିତ, ହରିବଂଶ, ବ୍ରହ୍ମପୁରାଣ, ବିଷ୍ଣୁପୁରାଣ ତଥା ଭାଗବତରେ ଏହାର ବର୍ଣ୍ଣନା ମିଳେ । ରାଧା-ଗୋପୀ-କୃଷ୍ଣ ରାସର ବର୍ଣ୍ଣନା ପାଇଁ ବ୍ରହ୍ମବୈବର୍ତ୍ତପୁରାଣ ଓ ଜୟଦେବଙ୍କ ଗୀତଗୋବିନ୍ଦ ପ୍ରସିଦ୍ଧ । ବ୍ରହ୍ମବୈବର୍ତ୍ତପୁରାଣର କୃଷ୍ଣଜନ୍ମ ଖଣ୍ଡ (୫ମ ଅ.)ରେ ରାଧାକୃଷ୍ଣଙ୍କ ଏକାନ୍ତ ରାସର ବର୍ଣ୍ଣନା ଅଛି ଓ ଏହାର ନାମ ହେଉଛି - 'ରାଧା ମାଧବ ରାସ' ।

ଭାଗବତରେ ରାସ ପଞ୍ଚାଧ୍ୟାୟୀ (ଦଶମ, ୨୯ରୁ ୩୩ ଅଧ୍ୟାୟ)କୁ କବିମାନେ ସାଧାରଣତଃ ଆଦର୍ଶରୂପେ ଗ୍ରହଣ କରିଥାନ୍ତି । ଭାଗବତର ମୂଳ କଥାବସ୍ତୁକୁ ନିମ୍ନଭାବରେ ବିଭାଜିତ କରାଯାଇ ପାରେ - ୧-ବେଣୁ ଗୀତ ।

୨-ଗୋପୀ କୃଷ୍ଣ ସମ୍ବାଦ । ୩- ଗୋପୀ ଗର୍ବ, କୃଷ୍ଣଙ୍କ ଅନ୍ତର୍ଦ୍ଧାନ ହେବା, ଗୋପୀଙ୍କର ଶ୍ରୀକୃଷ୍ଣଙ୍କ ଲୀଳାନୁକରଣ ତଥା କୃଷ୍ଣାନ୍ୱେଷଣ । ୪-ଯମୁନା କୂଳରେ ଶ୍ରୀକୃଷ୍ଣଙ୍କର ପ୍ରକଟ ହେବା, ସମ୍ଭାଷଣ, ମହାରାସ, ବାଦ୍ୟ ଏବଂ ସଙ୍ଗୀତ ତଥା କୃଷ୍ଣଙ୍କର ଅନେକ ବେଶ ଧାରଣ । ୫-ଜଳକ୍ରୀଡ଼ା ।

ଦୀନକୃଷ୍ଣଙ୍କ ରାସଲୀଳା ବର୍ଣ୍ଣନାରେ ଭାଗବତର କ୍ରମ ରକ୍ଷିତ ହୋଇନାହିଁ । ଭାଗବତରେ ରାସବର୍ଣ୍ଣନା ବେଣୁସ୍ୱନରୁ ଆରମ୍ଭ ହୋଇ ଜଳକ୍ରୀଡ଼ାରେ ସମାପ୍ତ ହୋଇଛି, କିନ୍ତୁ ଦୀନକୃଷ୍ଣଙ୍କ ରାସବର୍ଣ୍ଣନା ବେଣୁସ୍ୱନରୁ ଆରମ୍ଭ ହୋଇଥିଲେ ହେଁ ସମ୍ଭୋଗ ବର୍ଣ୍ଣନାରେ ଶେଷ ହୋଇଛି । ଦୀନକୃଷ୍ଣ ଭାଗବତରୁ ଗୋପୀମାନଙ୍କର ଗର୍ବ, ଗୋପୀଙ୍କର ଶ୍ରୀକୃଷ୍ଣ ଲୀଳାନୁକରଣ ଓ ଜଳକ୍ରୀଡ଼ା ପ୍ରଭୃତି ପ୍ରସଙ୍ଗକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିଛନ୍ତି । ନୂତନ ସଂଯୋଜନା ମଧ୍ୟରେ ରାଧାକୃଷ୍ଣକେଳି ପ୍ରଧାନ । ରାସଲୀଳା ଓ ସମ୍ଭୋଗ କ୍ରୀଡ଼ାକୁ ସ୍ୱତନ୍ତ୍ରରୂପେ ବର୍ଣ୍ଣନା କରି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କ ଅଲୌକିକ ଓ ଲୌକିକ ଲୀଳାକୁ ସ୍ପଷ୍ଟ କରିପାରିଛନ୍ତି ।

ବ୍ରହ୍ମ ବୈବର୍ତ୍ତପୁରାଣରୁ ଉଭୟ ଗୋପୀ-ରାଧା-କୃଷ୍ଣ ରାସ ଓ ରାଧା-କୃଷ୍ଣ ରାସ ପରଂପରାର ଆରମ୍ଭ ହୁଏ । ଜୟଦେବଙ୍କ ଗୀତଗୋବିନ୍ଦରେ ଗୋପୀ-ରାଧା-କୃଷ୍ଣ ରାସ ପରଂପରା ପାଳିତ ହୋଇଥିଲେ ହେଁ ରାଧା ରାସଲୀଳାରେ ସମ୍ପୂର୍ଣ୍ଣ ଅଂଶ ଗ୍ରହଣ କରିପାରିନାହାନ୍ତି । 'ଲଳିତ ଲବଙ୍ଗ ଲତା' ଗୀତରେ ରାଧା ସଖୀ ମୁଖରୁ ଗୋପୀ କୃଷ୍ଣ ରାସ କଥା ଶ୍ରବଣ କରୁଥିବା ସ୍ପଷ୍ଟ । ସାରଳାଦାସଙ୍କ ମହାଭାରତ ଓ ଅଚ୍ୟୁତାନନ୍ଦଙ୍କ ହରିବଂଶରେ ରାଧାକୃଷ୍ଣ କେଳି ସ୍ୱତନ୍ତ୍ର ଭାବରେ ବର୍ଣ୍ଣିତ । ରାସଲୀଳା ବର୍ଣ୍ଣନା ପ୍ରସଙ୍ଗରେ ରାଧା ଗୋପୀମାନଙ୍କର ଅଗ୍ରଣୀ । ଓଡ଼ିଆ ଭାଗବତରେ ରାଧାଙ୍କର ସ୍ଥାନ ବୃନ୍ଦାବତୀ ଗ୍ରହଣ କରିଛନ୍ତି । ଦୀନକୃଷ୍ଣ ରାଧାକୃଷ୍ଣ କେଳିକୁ ଗୋପୀରାସ ଓ ଗୋପୀସମ୍ଭୋଗର ମଧ୍ୟବର୍ତ୍ତୀ ସ୍ଥାନରେ ବର୍ଣ୍ଣନା କରିଛନ୍ତି । ରସକଲ୍ଲୋଳର ରାସଲୀଳା ବର୍ଣ୍ଣନାକୁ ନିମ୍ନ ଭାବରେ ବିଭକ୍ତ କରାଯାଇପାରେ - ୧-ବେଣୁଗୀତ, ୨-ଗୋପୀ-କୃଷ୍ଣ ସମ୍ବାଦ, ୩-ଗୋପୀ-କୃଷ୍ଣ ରାସ, ୪-ରାଧା-କୃଷ୍ଣ କେଳି, ୫-ଗୋପୀ-ଗର୍ବ ଓ କୃଷ୍ଣଙ୍କ ଅନ୍ତର୍ଦ୍ଧାନ ହେବା-ଗୋପୀମାନଙ୍କର କୃଷ୍ଣାନ୍ୱେଷଣ, ୬-ଯମୁନା ତଟରେ ଶ୍ରୀକୃଷ୍ଣଙ୍କର ପ୍ରକଟ ହେବା, ୭-ସୁରତି ଲୀଳା ।

ଆଲୋଚନାର ସୁବିଧା ପାଇଁ ଦୀନକୃଷ୍ଣଙ୍କ ବିଭାଜନ କ୍ରମକୁ ଅନୁସରଣ କରାଯାଇଛି ।

## ୧-ବେଣୁସ୍ୱନ

ଭାଗବତ ପରି ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ବେଣୁନାଦ ହେଉଛି ରାସଲୀଳାର ପ୍ରଥମ ସୋପାନ । ରସକଲ୍ଲୋଳକାର ହରିବଂଶ, ବିଷ୍ଣୁପୁରାଣ, ବ୍ରହ୍ମପୁରାଣ ଓ ଭାଗବତକୁ ଅନୁସରଣ କରି ଶରତକାଳର ଶୁକ୍ଳପକ୍ଷକୁ ରାସଲୀଳାର ସମୟରୂପେ ଗ୍ରହଣ କରିଛନ୍ତି । ଭାଗବତର 'ଦୃଷ୍ଟ୍ୱା କୁମୁଦ୍ୱନ୍ତ ମୁଖଣ୍ଡମଣ୍ଡଳଂ' ପଂକ୍ତିରୁ ଏହା ପୂର୍ଣ୍ଣିମା ରାତ୍ରି ହୋଇଥିବା ସ୍ପଷ୍ଟ । ରସକଲ୍ଲୋଳର 'କମଳନେତ୍ର ଦେଖିଲେ ଦିନେ କୁମୁଦବନ୍ଧୁ ଉଦୟ ଗଗନେ ।' ୧୭-୭ । ପାଦରୁ କୌଣସି ନିର୍ଦ୍ଦିଷ୍ଟ ତିଥିର ସୂଚନା ମିଳେନାହିଁ । ତେବେ ଶରତକାଳୀନ ଚନ୍ଦ୍ରକିରଣ ସବୁ ଦିଗକୁ ଧବଳ କରି ପୃଥିବୀକୁ କମନୀୟ କରିଛି । "କର୍ପୂର ମୋତି ବିଞ୍ଚିଲା ପରାୟେ । କି ଅବା କ୍ଷିତି ହେଲା କ୍ଷୀରମୟେ ।" ଜ୍ୟୋସ୍ନାର ଶୁଭ୍ରତା ମଧ୍ୟରେ ସୁଧାଲେପିତ ପୁର, କାଦମ୍ବକୁଳ, ମୁକ୍ତାମାଳ ପ୍ରଭୃତି ଶୁକ୍ଳବର୍ଣ୍ଣର ପଦାର୍ଥ ସବୁ ଦୂରରୁ ଜଣା ପଡୁନାହାନ୍ତି । ଚନ୍ଦ୍ର ରଜନୀର ଶୋଭା ଲୋକମାନଙ୍କ ମନରେ ଅପୂର୍ବ ଆନନ୍ଦ ସୃଷ୍ଟି କରି ମନ୍ମଥ ପ୍ରଭା ବୃଦ୍ଧି କରିଛି । "କରେ ଯେ ଉଗ୍ର ମନମଥ ପ୍ରଭା ।" ଶ୍ରୀକୃଷ୍ଣ ମଧ୍ୟ ଏହାର ବଶ ହୋଇଛନ୍ତି । ରାସଲୀଳା କରିବାକୁ ମନସ୍ଥ କରି, ସୁବେଶ ହୋଇ, କଦମ୍ବ ତଳେ ବିଜେ କରି ବେଣୁ ବାଦନ କରିଛନ୍ତି ।

ଶ୍ରୀକୃଷ୍ଣଙ୍କ ବେଣୁଧ୍ୱନି ଗୋପୀମାନଙ୍କୁ ଉନ୍ମତ୍ତ କରିଛି । ଭାଗବତକାର ଗୋପୀମାନଙ୍କ ମନର ଅବସ୍ଥା ଚିତ୍ରଣ କରି ଲେଖିଛନ୍ତି -

ଦୁହନ୍ତ୍ୟୋଽଭିଯଯୁ କାଶ୍ଚିଦ୍ ଦୋହଂ ହିତ୍ୱା ସମୁତ୍ସୁକାଃ ।
ପୟୋଽଧିଶ୍ରିତ୍ୟ ସଂୟାବମନୁଦ୍ୱାସ୍ୟାପରା ଯଯୁଃ ।୫।
ପରିବେଷୟନ୍ତ୍ୟସ୍ତଦ୍ଧିତ୍ୱା ପାୟୟନ୍ତ୍ୟଃ ଶିଶୁନ୍ପୟଃ ।
ଶୁଶ୍ରୁଷନ୍ତ୍ୟଃପତୀନ୍ କଶ୍ଚିଦଶ୍ନନ୍ତ୍ୟୋଽପାସ୍ୟଭୋଜନମ୍ ।୬।
ଲିମ୍ପନ୍ତ୍ୟଃ ପ୍ରମୃଜନ୍ତ୍ୟୋଽନ୍ୟା ଅଞ୍ଜନ୍ତ୍ୟଃ କାଶ୍ଚଲୋଚନେ ।
ବ୍ୟତ୍ୟସ୍ତବସ୍ତ୍ରାଭରଣାଃକାଶ୍ଚିଦ୍ କୃଷ୍ଣାନ୍ତିକଂଯଯୁଃ ।୭।
ତା ବାର୍ଯମାଣାଃ ପତିଭିଃ ପିତୃଭିର୍ଭ୍ରାତୃବନ୍ଧୁଭିଃ ।
ଗୋବିନ୍ଦାପହୃତାତ୍ମାନୋ ନ ବ୍ୟବର୍ତନ୍ତ ମୋହିତାଃ ।୮।
ଅନ୍ତର୍ଗୃହଗତାଃ କାଶ୍ଚିଦ୍ ଗୋପ୍ୟୋଽଲବ୍ଧ ବିନିର୍ଗମାଃ ।
କୃଷ୍ଣ ତଦ୍ଭାବନାଯୁକ୍ତା ଦଧ୍ୟୁର୍ମୀଳି ତ ଲୋଚନାଃ ।୯।

ଦୁଃସହ-ପ୍ରେଷ୍ଠବିରହତୀବ୍ରତାପଧୁତାଶୁଭାଃ ।
ଧ୍ୟାନପ୍ରାତାଚ୍ୟୁତାଶ୍ଲେଷ ନିର୍ବୃତ୍ୟା କ୍ଷୀଣମଙ୍ଗଳାଃ ।୧୦।
ତମେବ ପରମାତ୍ମାନଂଜାରବୁଦ୍ଧ୍ୟାପି ସଂଗତାଃ ।
ଜହୁର୍ଗୁଣମୟଂ ଦେହ ସଦ୍ୟଃ ପ୍ରକ୍ଷୀଣବନ୍ଧନାଃ ।୧୧।

ଅର୍ଥାତ୍ ଗୋପୀମାନେ ଗୃହର ବିଭିନ୍ନ ପ୍ରକାର କାର୍ଯ୍ୟ ପରିତ୍ୟାଗ କରି ଭାଇ, ବନ୍ଧୁ ପତି ଓ କୁଟୁମ୍ବମାନଙ୍କର ମାୟା ଛିନ୍ନ କରି, ସମାଜର ବାଧା ଅତିକ୍ରମ କରି, ଶ୍ରୀକୃଷ୍ଣଙ୍କ ସହ ମିଳିତ ହୋଇଛନ୍ତି । ଦୀନକୃଷ୍ଣ ଭାଗବତର 'ଲିମ୍ପନ୍ତ୍ୟ ପ୍ରମୃଜନ୍ତ୍ୟୋଽନ୍ୟା ଅଞ୍ଜନ୍ତ୍ୟଃ କାଶ୍ଚଲୋଚନେ। ବ୍ୟତ୍ୟସ୍ତବସ୍ତ୍ରାଭରଣାଃ କାଶ୍ଚିତ୍ କୃଷ୍ଣାନ୍ତିକଂ ଯଯୁ ।' ପଂକ୍ତିକୁ ଅଧିକ ବିସ୍ତାର ପ୍ରଦାନ କରି ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ପ୍ରେମଜନ୍ୟ ଉତ୍ସୁକତ, ଆତୁରତା ଓ ବ୍ୟାକୁଳତାକୁ ସ୍ପଷ୍ଟଭାବରେ ଚିତ୍ରଣ କରିଛନ୍ତି -

କେ କେତେ ରୂପରେ ହୋଇଲେ ଭ୍ରମ । କହିବାକୁ ତାହା କେ ଅବା କ୍ଷମ ।

ଶ୍ରୀକୃଷ୍ଣଙ୍କ ବାଲ୍ୟକାଳରୁ ଗୋପୀମାନେ ତାଙ୍କ ପ୍ରତି ଅନୁରକ୍ତା । ସେମାନେ ସମସ୍ତେ .ଶ୍ରୀକୃଷ୍ଣ 'ମାନସିକେ' ପ୍ରାଣନାଥରୂପେ ବରଣ କରିଛନ୍ତି । ବସ୍ତ୍ରହରଣ ସମୟରେ ସମସ୍ତେ ଏକସ୍ୱରରେ ଶ୍ରୀକୃଷ୍ଣଙ୍କୁ ଏକମାତ୍ର ଦେବତାର ଆସନ ପ୍ରଦାନ କରିଛନ୍ତି -

କେ ବୋଲେ, ଆମ୍ଭେ କି ଜାଣୁ ଦେବତାଙ୍କୁ ।
କେବଳ ମନ ବଚନ କର୍ମବ୍ୟରେ ଜାଣୁ ଏକା ଜଗଜ୍ଜିତାଙ୍କୁ । ୧୪-୩୬।

ଶ୍ରୀକୃଷ୍ଣଙ୍କ ବକ୍ରବଚନ ଓ ଅପୂର୍ବ ରୂପଦର୍ଶନରେ ଗୋପୀମାନେ ମନମଧ୍ୟରେ ବାରମ୍ବାର ଅନ୍ଧ ଓ ଅଧୈର୍ଯ୍ୟ ହୋଇଛନ୍ତି । ଏପରି ଅବସ୍ଥାରେ ଶ୍ରୀକୃଷ୍ଣଙ୍କ ବେଣୁ ସ୍ୱନର ଅହ୍ୱାନ ସେମାନଙ୍କୁ ବିବ୍ରତ କରିଥିବା ବିଚିତ୍ର ନୁହେଁ ।

ରସକଲ୍ଲୋଳକାର ଗୋପୀମାନଙ୍କ ବିଭ୍ରମର ବିସ୍ତୃତ ବର୍ଣ୍ଣନା କରିଥିଲେ ହେଁ ଭାଇ, ବନ୍ଧୁ, ପତି ଓ କୁଟୁମ୍ବଙ୍କ ସମ୍ବନ୍ଧରେ କୌଣସି ସୂଚନା ଦେଇ ନାହାନ୍ତି । ସାମାଜିକ ବାଧା ଓ। ସ୍ୱଜନାର୍ଯ୍ୟପଥ ତ୍ୟାଗର ମଧ ଉଲ୍ଲେଖ ନାହିଁ । ସ୍ୱଜନାର୍ଯ୍ୟପଥ ତ୍ୟାଗ ଭାଗବତର ଏକ ପ୍ରମୁଖ ଘଟଣା । ଶ୍ରୀକୃଷ୍ଣଙ୍କ ଆକର୍ଷଣ ନିକଟରେ ସାଂସାରିକ ମମତାର ତୁଚ୍ଛତା ପ୍ରତିପାଦନ କରିବାପାଇଁ ଭାଗବତକାର ଏହି ପ୍ରସଙ୍ଗର ଅବତାରଣା କରିଛନ୍ତି । ବୈଷ୍ଣବ ସମାଲୋଚକମାନେ ମହିଷୀମାନଙ୍କ

ପ୍ରେମ ଅପେକ୍ଷା ଗୋପୀମାନଙ୍କ ପ୍ରେମର ଶ୍ରେଷ୍ଠତା ଦର୍ଶାଇବା ପାଇଁ ଏହି ପ୍ରସଙ୍ଗକୁ ଉଦାହରଣ ରୂପେ ଗ୍ରହଣ କରନ୍ତି । ସେମାନଙ୍କ ମତରେ ସ୍ୱଜନାର୍ଯ୍ୟପଥ ତ୍ୟାଗ ପ୍ରେମୋତ୍କର୍ଷର ଉତ୍ପାଦକ ନୁହେଁ, ପରିଚାୟକ ମାତ୍ର । ଯେଉଁମାନଙ୍କର ପ୍ରେମୋତ୍କର୍ଷ ସର୍ବାତିଶାୟୀ, କେବଳ ସେହିମାନେହିଁ ପ୍ରେମୋତ୍କର୍ଷର ପରାକ୍ରମଦ୍ୱାରା ଅନାୟାସରେ ସ୍ୱଜନାର୍ଯ୍ୟପଥାଦି ପରିତ୍ୟାଗ କରି ପାରନ୍ତି । ତାହାର ପ୍ରମାଣ ଶ୍ରୀରୁକ୍ମିଣୀ ଦେବୀ । ଶ୍ରୀ ରୁକ୍ମିଣୀ ଦେବୀଙ୍କର ବିବାହ ସମୟରେ ତାଙ୍କ ଭ୍ରାତା ଉତ୍କଟ ବାଧାର ସୃଷ୍ଟି କରିଥିଲେ । ସେହି ବାଧା ଅତିକ୍ରମ କରିବାର ସାମର୍ଥ୍ୟ ରୁକ୍ମିଣୀ ଦେବୀଙ୍କଠାରେ ନ ଥିଲା । ଯଦି ଥାନ୍ତା, ତାହାହେଲେ ସେ ପିତ୍ରାଦିଙ୍କୁ ପରିତ୍ୟାଗ କରି ଦ୍ୱାରକାରେ ଉପନୀତ ହୋଇଥାନ୍ତେ । ସେ ତାହା କରି ନାହାନ୍ତି । ଯେଉଁ ପ୍ରେମୋତ୍କର୍ଷର ପ୍ରଭାବରେ ଗୋପୀଗଣ ସ୍ୱଜନାର୍ଯ୍ୟପଥ ପରିତ୍ୟାଗ କରିବାକୁ ସମର୍ଥ ହୋଇଥିଲେ, ସେହି ପ୍ରେମୋତ୍କର୍ଷ ହେଉଛି, ଶ୍ରୀକୃଷ୍ଣ ବଶୀକାରୀତ୍ୱର ହେତୁ ଏବଂ ମହିଷୀଗଣ ଅପେକ୍ଷା ସେମାନଙ୍କ ଉତ୍କର୍ଷର କାରଣ । ଗୋପୀମାନଙ୍କଠାରେ ସେହି ପ୍ରେମର ପ୍ରଭାବ ଦେଖି ଉଦ୍ଧବ ମଧ୍ୟ ବିସ୍ମିତ ହୋଇଥିଲେ । ଗୋପୀମାନଙ୍କ ହୃଦୟରେ ସେହି ପ୍ରେମୋତ୍କର୍ଷ ଅନାଦି କାଳରୁ ନିତ୍ୟ ବିରାଜିତ । ସ୍ୱଜନାର୍ଯ୍ୟପଥ ତ୍ୟାଗ ଦ୍ୱାରା ଗୋପୀମାନଙ୍କର ସେହି ପ୍ରେମ ବ୍ୟଞ୍ଜିତ ହୋଇଅଛି ମାତ୍ର । ଶ୍ରୀକୃଷ୍ଣ ପ୍ରେମର ବଶୀଭୂତ । ଭକ୍ତବଶଃ ପୁରୁଷଃ । ସେ ଅନ୍ୟ କାହାରି ବଶୀଭୂତ ନୁହନ୍ତି । ବେଣୁ ବାଦନ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ଦୀନକୃଷ୍ଣ ସ୍ୱଜନାର୍ଯ୍ୟପଥ ତ୍ୟାଗ ଘଟଣାର ଉଲ୍ଲେଖ କରି ନ ଥିଲେ ହେଁ ଏହା ରସକଲ୍ଲୋଳରୁ ସମ୍ପୂର୍ଣ୍ଣରୂପେ ପରିତ୍ୟକ୍ତ ନୁହେଁ । ଦୀନକୃଷ୍ଣ ବାରମ୍ବାର ଏହାର ସୂଚନା ଦେଇଛନ୍ତି । ସଦ୍ୟଜାତ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବାକୁ ଯାଉଥିବା ଗୋପୀମାନଙ୍କର ବିଭ୍ରମ ବର୍ଣ୍ଣନା କରି ଦୀନକୃଷ୍ଣ ଲେଖିଛନ୍ତି -

କାନ୍ତକୋଳ ବିଷ ହେଲା କାହାକୁ । କରିବାକୁ ଆଶ୍ରୟ ଉତ୍ସାହକୁ
କରୁଥିଲା କେ କାନ୍ତ ସଙ୍ଗେ ଲୀଳା । କଲା ମାତ୍ରକେ ତାହା କଲା ହେଲା ।
(୩୨-୭୮)

ଶ୍ରୀକୃଷ୍ଣଙ୍କ ବାଳରୂପ ଦର୍ଶନ କରିବାକ୍ଷଣି ଗୋପୀକୁଳ ଯୁବତୀଙ୍କ 'କୂଳ ବୁଡ଼ିବା' କଥା କହିଛି -

କେ ବୋଇଲ ଏ କିଶୋର ହୋଇଲେ । କଉଁ ସ୍ତିରୀ କି ନୋହିବ, ଚାହିଁଲେ

କୁଳ ଯୁବତୀଙ୍କ କୂଳ ବୁଡ଼ିବ । କ୍ରମେ ପତିବ୍ରତା ବ୍ରତ ଛାଡ଼ିବ । (୩,୩୯-୪୦)

କୌଣସି ଗୋପୀ ବାଳକୃଷ୍ଣଙ୍କର ମହିମା ସଖୀ ସମ୍ମୁଖରେ ନିମ୍ନଭାବରେ ବର୍ଣ୍ଣନା କରିଛି :

କରୁଥାଇଁ ସେହିଦିନୁ ବିଚାର । କରିବେ ଏ ଯୁବା ହେଲେ ଅସାର ।
କୁଳବତୀ କୁଳବତୀ ନୋହିବେ । କୁଳଟା ହୋଇ ବନେ ବିହରିବେ ।

\+ \+ \+

କପଟେ ହୋଇଛି ମାନବ ରୂପ । କରିବ ପତିବ୍ରତା ବ୍ରତ ଲୋପ । (୫-୨୦,୨୧)

ଗୋପୀ-କୃଷ୍ଣ ସମ୍ବାଦରେ ଶ୍ରୀକୃଷ୍ଣ ଗୋପୀମାନଙ୍କୁ ଲକ୍ଷ୍ୟ କରି କହିଛନ୍ତି -

କାହିଁପାଇଁ ଏତେ ରାତ୍ରେ ଅଇଲ । କୁଳଶୀଳ ଲାଜ କାହିଁ ଥୋଇଲ । (୧୬-୨୪)

ଗୋପୀମାନଙ୍କ ଉତ୍ତରରେ ମଧ ଅବାଟକୁ ବାଟରେ ପରିଣତ କରିବା କଥା ସୂଚିତ -

କରନ୍ତା ନାହିଁ ସେ ଯେବେ ଉଚ୍ଚାଟ । କିମ୍ବା କରନ୍ତୁ ଅବାଟକୁ ବାଟ ।
କାହିଁକି ଗୃହ ପତି ଛାଡ଼ନ୍ତୁ । କାମ କୃତାନ୍ତ ମୁଖରେ ପଡ଼ନ୍ତୁ ।

ଶ୍ରୀକୃଷ୍ଣଙ୍କ ବିରହ ବ୍ୟଥିତା ଗୋପୀର କୁଳଶୀଳ ବେଭାର ତ୍ୟାଗ କରିଥିବା କଥା ବାରମ୍ବାର ମନେ ପଡ଼ିଛି -

କଲୁ ହତ ଆଦର କୁଳଶୀଳ ବେଭାର-
ଠାରେ ତୁମ୍ଭକୁ ମନ ଦେଇ ।
କାଳେ ହୋଇଲୁ ଏବେ ଚରଣ ବେନି ନାବେ
ଦେଲା ଲୋକ ପରାୟେ ହୋଇ । ହେ କୃପା ନିଧି । ୨୬-୪
କୁଳଶୀଳ ଲାଜ ଭୟ ଛାଡ଼ି । କଇତବ ପୀରତିରେ ଜଡ଼ି ।
କୃପଣକୁ ଲୋଭୀ ପ୍ରାୟେ ତାକୁ ଲଭି
ଆଶା ଅନଳେ ମରୁଛୁଁ ପୋଡ଼ି । ହେ ଉଦ୍ଧବ । ୩୨-୨୮
କେଶ ବାସ ଦେଖି ଦରିଦ୍ରାଣୀ ଭେକ ଆନକେ କରିବ ଏହା ।
କୁଳଶୀଳ ଲାଜ ତେଜି ଏହି କାର୍ଯ୍ୟ ପାଇଲୁ କହିଲ ଯାହା ସେ ।
କୃଷ୍ଣ ସଙ୍ଗେ କଲା ପ୍ରୀତିଫଳ । କରୁଅଛି ଏ ଏବେ ବିକଳ ସେ । ୩୩-୬

ଏସବୁ ଉଦାହରଣରୁ ଜଣାପଡୁଛି ଯେ ଦୀନକୃଷ୍ଣ ସ୍ୱଜନାର୍ଯ୍ୟପଥ ତ୍ୟାଗକୁ ପ୍ରେମ ପରାକାଷ୍ଠାର ଅନ୍ୟତମ କାରଣରୂପେ ଗ୍ରହଣ କରିଥିଲେ ।

ଶ୍ରୀକୃଷ୍ଣଙ୍କ ସହ ମିଳିତ ହେବା ପରେ ଗୋପୀମାନଙ୍କ ମନର ଉତ୍ସୁକତା ଲୋପ ପାଇ, ଆନନ୍ଦ ବହୁଗୁଣିତ ହୋଇଛି । କବି ଦୀନକୃଷ୍ଣ ଗୋଟିଏ ପରେ ଗୋଟିଏ ଦୃଷ୍ଟାନ୍ତ ଦେଇ ଆନନ୍ଦବିହ୍ୱଳା ଗୋପୀମାନଙ୍କ ମନସ୍ଥିତିର ସୁନ୍ଦର ବର୍ଣ୍ଣନା କରିଛନ୍ତି :

କୋଟି ମଦନ ମନୋହର ବେଶ । କରି ଦର୍ଶନ ହୋଇଲେ ହରଷ ।

\+ + +

କେ ମହାମତ୍ତ ମୟୂରୀ ପ୍ରାୟେ । କୃଷ୍ଣମେଘ ଦେଖି ଆନନ୍ଦ ହୋଏ ।

\+ + +

କାହା ଆନନ୍ଦ ସିନ୍ଧୁ ଉଛୁଳିଲା । କହୁଁ କହୁଁ ନେତ୍ର ଚଟ କମ୍ପିଲା ।

(୧୭-୨୦, ୨୧, ୨୨)

**୨-ଗୋପୀ-କୃଷ୍ଣ ସମ୍ବାଦ**

ରାସଲୀଳାର ଦ୍ୱିତୀୟ ପର୍ଯ୍ୟାୟ ହେଉଛି, ଗୋପୀ-କୃଷ୍ଣ ସମ୍ବାଦ । ବେଣୁନାଦ ଦ୍ୱାରା ଆକୃଷ୍ଟ ହୋଇ ବୃନ୍ଦାବନକୁ ଆସିଥିବା ଗୋପୀମାନଙ୍କୁ ଶ୍ରୀକୃଷ୍ଣ ନୀତି ଶାସ୍ତ୍ରର ଦୃଷ୍ଟାନ୍ତ ଦର୍ଶାଇ, ଜୀବଜନ୍ତୁଙ୍କର ଭୟ ପ୍ରଦର୍ଶନ କରି, ପତିବ୍ରତା ସ୍ତ୍ରୀର କର୍ତ୍ତବ୍ୟ ସ୍ମରଣ କରାଇ ଫେରିଯିବାକୁ ଅନୁରୋଧ କରିଛନ୍ତି । ଅନ୍ୟପକ୍ଷରେ ଗୋପୀମାନେ ବିଭିନ୍ନ ଯୁକ୍ତିଦ୍ୱାରା ସେମାନଙ୍କ ପ୍ରେମର ଆନ୍ତରିକତା ସମ୍ବନ୍ଧରେ ଶ୍ରୀକୃଷ୍ଣଙ୍କୁ ସଚେତନ କରାଇବାର ଚେଷ୍ଟା କରିଛନ୍ତି । ଭାଗବତରେ ଏହି ପ୍ରସଙ୍ଗ ଗୋପୀ-କୃଷ୍ଣ ସମ୍ବାଦ ନାମରେ ପ୍ରସିଦ୍ଧ ।

ରସକଲ୍ଲୋଳରେ ଏହି ପ୍ରସଙ୍ଗର ଅବତାରଣା କରାଯାଇଥିଲେ ହେଁ ତାହାର ପ୍ରକୃତି ଭିନ୍ନ । ଭାଗବତରେ ଶ୍ରୀକୃଷ୍ଣଙ୍କ ଉକ୍ତି କଠୋରତାପୂର୍ଣ୍ଣ । ଅଥଚ ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ଉକ୍ତି କଉତୁକପୂର୍ଣ୍ଣ ଓ ହାସ୍ୟରସବ୍ୟଞ୍ଜିତ । 'କଉତୁକେ କୃଷ୍ଣ ବୋଲନ୍ତି ହସି ।' ସେହି ପରିଚିତ ସ୍ୱର । ଶ୍ରୀକୃଷ୍ଣଙ୍କର ଅଭିଯୋଗ ହେଉଛି, 'କେ ବୋଲେ ତୁମ୍ଭମାନଙ୍କୁ ଭୀରୁ', 'କି ଗୋପୀ ତୁମ୍ଭେ ଏଡ଼େ ସାହସୀ' । ରସକଲ୍ଲୋଳର ବହୁ ସ୍ନେହ ପ୍ରୀତିବାଣୀ ପରି ଏହା ମଧ ବକ୍ରବାଣୀ । ଶ୍ରୀକୃଷ୍ଣଙ୍କର ଏ ପ୍ରକାର କଉତୁକ ଓ ପରିହାସପୂର୍ଣ୍ଣ (୧୧-୪୧) କଥା ସହ ଗୋପୀମାନେ ବାଲ୍ୟକାଳରୁ ପରିଚିତ । ପୂର୍ବରୁ ମଧ ଶ୍ରୀକୃଷ୍ଣ ଏହି ପ୍ରକାର ଅଭିଯୋଗ କରିଥିଲେ -

କାହାକୁ ବୋଲନ୍ତି ତୋର କଟି ଅତି ସରୁ ।
କୁଚ ତୋ ମେରୁ ପର୍ବତ ଠାରୁ ଅତି ଗରୁ ।
କରିବରଂ ପ୍ରାୟେ ଏଥିବ ଗମନ ତୁ କରୁ ।
କଉଁ ଲୋକ ଏଥିବ ତୋତେ ବୋଲୁ ଥାଇ ଭୀରୁ । ୭-୧୪ ।

ତେଣୁ ଶ୍ରୀକୃଷ୍ଣଙ୍କ ଫେରିଯିବା ଉପଦେଶରେ କୁଳ, ଶୀଳ, ଲାଜ ('କୁଳଶୀଳ ଲାଜ କାହିଁ ଥୋଇଲ') ଓ ରାତ୍ରିର ଭୀଷଣତା ('କାହିଁ ପାଇଁ ଏତେ ରାତ୍ରେ ଅଇଲ')ର ଉଲ୍ଲେଖ ଥିଲେ ହେଁ କଉତୁକ ଓ ହସ ନିକଟରେ ତାର ପୂର୍ବ ଗାମ୍ଭୀର୍ଯ୍ୟ ଲୋପ ପାଇଛି ।

ଗୋପୀମାନଙ୍କ ଉତ୍ତରରେ ମଧ ଭାଗବତର ଦାର୍ଶନିକତା ନାହିଁ । ବେଣୁସ୍ୱନ ଶ୍ରବଣ କରିବାକ୍ଷଣି ସେମାନେ କାମବଶ ଓ ଉଚାଟ ହୋଇ ଅବାଟକୁ ବାଟ କରିଛନ୍ତି । ଗୃହପତି ଅର୍ଚ୍ଚନା ଅନାୟାସରେ ତ୍ୟାଗ କରିଛନ୍ତି । ଭାଗବତର ଗୋପୀମାନଙ୍କପରି ସେମାନଙ୍କ ଉତ୍ତରରେ ଦାର୍ଶନିକର ଭାବଗମ୍ଭୀର ବିଚାର ଓ ପଣ୍ଡିତର ପାଣ୍ଡିତ୍ୟ ନାହିଁ । ଦୀନକୃଷ୍ଣଙ୍କ ଗୋପୀ ସହଜ ବିଶ୍ୱାସୀ । ବେଣୁସ୍ୱନ ଶୁଣି ସେମାନେ କୁରଙ୍ଗ ପରି ମୁଗ୍ଧ ହୋଇଛନ୍ତି । ସେମାନଙ୍କର ବିଚାରଶକ୍ତି ଲୋପ ପାଇଯାଇଛି । ସେମାନେ କୃଷ୍ଣଙ୍କ ପରି ଶ୍ରମକୁ ଜୀବନର ସମ୍ବଳ କରିଛନ୍ତି । କାମର ବଶ ହୋଇ ଅନଳ ଲୋଭରେ ପତଙ୍ଗ ଝାସ ଦେଲାପରି, ସେମାନେ ଶ୍ରୀକୃଷ୍ଣଙ୍କ ରୂପାନଳରେ ସେମାନଙ୍କର ହୃଦୟକୁ ଆହୁତି ଦେଇଛନ୍ତି । ତେଣୁ ସେମାନଙ୍କର ଏକମାତ୍ର ଉତ୍ତର ହେଉଛି,

କିମ୍ପା ଡାକିଲ ଗୋପୀ ଆସ ଆସ । କରୁଛ ଏବେ କାହିଁକି ନିରାଶ ।
କଲ ଆମ୍ଭକୁ ସବୁରୂପେ ନାଶ । କୃପାକୁ ହୋଇ ଦୟା ନାହିଁ ଲେଶ ।
କାହିଁକି ଏବେ ଯିବୁ ତା କହ । କିଣିଛି ଆମ୍ଭକୁ ତୁମ୍ଭ ସେନେହ ।୧୭-୨୭

ଗୋପୀମାନଙ୍କ କାତରୋକ୍ତିରେ ଶ୍ରୀକୃଷ୍ଣଙ୍କର ଅନୁରାଗ ବୃଦ୍ଧିପାଇଛି । ସେ ରାସକେଳି କରିବା ପାଇଁ ଆଦେଶ ଦେଉଛନ୍ତି ।

କୃଷ୍ଣ ହସି ଅନୁରାଗ ବିସ୍ତାରି । କହିଲେ ତୁମ୍ଭେ ମୋ ପ୍ରାଣଈଶ୍ୱରୀ ।
କଣ୍ଠର ଅମୂଲ୍ୟ ନକ୍ଷତ୍ରମାଳୀ । କରିବା ଏବେ ଆସ ରାସକେଳି ।୧୭-୨୮

## ୩-ଗୋପୀ-କୃଷ୍ଣ ରାସ

ଦୀନକୃଷ୍ଣ ଗୋପୀ-କୃଷ୍ଣ ସମ୍ବାଦର ଠିକ ପରେ ରାସକେଳିର ଆୟୋଜନ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଠାରୁ 'କରିବା ଏବେ ଆସ ରାସକେଳି' ଶୁଣି ଗୋପୀମାନେ

ସନ୍ତୋଷ ହୋଇ ରାସରଙ୍ଗ ବେଶ ଆରମ୍ଭ କଲେ । ଭାଗବତ ଅନୁଯାୟୀ ଗୋପୀମାନଙ୍କ ବ୍ୟଥା ଓ ବ୍ୟାକୁଳତାପୂର୍ଣ୍ଣ ବାଣୀ ଶ୍ରବଣ କରି ଶ୍ରୀକୃଷ୍ଣ ଦୟାପ୍ରକାଶପୂର୍ବକ ଗୋପୀମାନଙ୍କ ସହ କ୍ରୀଡ଼ା ଆରମ୍ଭ କରିଛନ୍ତି । କେତେବେଳେ ଗୋପୀମାନେ ଶ୍ରୀକୃଷ୍ଣଙ୍କ ଗୁଣ ଓ ଲୀଳାସବୁର ମାହାତ୍ମ୍ୟ କୀର୍ତ୍ତନ କରିଛନ୍ତି ତ କେତେବେଳେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସୌନ୍ଦର୍ଯ୍ୟ ଓ ପ୍ରେମର ବର୍ଣ୍ଣନା ଗୀତରେ ଗାଇଛନ୍ତି । ଶ୍ରୀକୃଷ୍ଣ ଗୋପୀମାନଙ୍କୁ ଆଲିଙ୍ଗନ କରି, କବରୀ, ଜାନୁ, ନୀବି ଓ ସ୍ତନ ପ୍ରଭୃତିକୁ ସ୍ପର୍ଶକରି, ନଖ କ୍ଷତ କରି, ବିନୋଦପୂର୍ଣ୍ଣ ବାକ୍ୟ କହି ସେମାନଙ୍କ ମନରେ ଆନନ୍ଦ ପ୍ରଦାନ କରିବା ପାଇଁ ଚେଷ୍ଟା କରିଛନ୍ତି । ଶ୍ରୀକୃଷ୍ଣଙ୍କର ଏପରି ବ୍ୟବହାରରେ ଗୋପୀମାନଙ୍କ ମନରେ ଗର୍ବ ଓ ଅଭିମାନ ସୃଷ୍ଟି ହୋଇଛି । ଗୋପୀମାନଙ୍କ ଗର୍ବକୁ ଖର୍ବ କରିବାପାଇଁ ଶ୍ରୀକୃଷ୍ଣ ସେମାନଙ୍କ ମଧ୍ୟରୁ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ଶ୍ରୀକୃଷ୍ଣଙ୍କୁ ନ ଦେଖି ଗୋପୀମାନେ ସେମାନଙ୍କର ଭୁଲ ବୁଝି ପାରିଛନ୍ତି ଓ ସେମାନଙ୍କ ମନରେ ଅନୁତାପ ଆସିଛି । ସେମାନେ ଶ୍ରୀକୃଷ୍ଣଙ୍କର ଅନ୍ୱେଷଣ କରିଛନ୍ତି । ଶ୍ରୀକୃଷ୍ଣଙ୍କ ଲୀଳାର ଅନୁସରଣ କରି ତାଙ୍କୁ ସ୍ମରଣ କରିବାରୁ ସେ ପୁନର୍ବାର ପ୍ରକଟ ହୋଇଛନ୍ତି । ଏହାପରେ ରାସଲୀଳା ସଂଗଠିତ ହୋଇଛି ।

ଦୀନକୃଷ୍ଣ ରାସଲୀଳାକୁ ସମ୍ଭୋଗଲୀଳାରୁ ସ୍ୱତନ୍ତ୍ର କରି ବର୍ଣ୍ଣନା କରିଛନ୍ତି । ରସକଲ୍ଲୋଳର ରାସଲୀଳା ମୁଖ୍ୟତଃ ଏକ ମଣ୍ଡଳାକାର ନୃତ୍ୟ । ଶ୍ରୀକୃଷ୍ଣଙ୍କୁ ମଧ୍ୟ ଭାଗରେ ରଖି ଗୋପୀମାନେ ତାଙ୍କ ଚାରିପଟରେ ନୃତ୍ୟ କରିଛନ୍ତି ।

ଜରମ୍ପିତ ହୋଇ ଗୋପିକା ପନ୍ତି । କୃଷ୍ଣଙ୍କୁ ବେଢ଼ି ସୁନ୍ଦର ଦିଶନ୍ତି ।
କାଳମ୍ବଢେ କି ସ୍ୱର୍ଣ୍ଣ ଆଳବାଳ । କଳାକରେ ଅବା ତାରା ମଣ୍ଡଳ ।
କନକ ଶକ୍ତି ମର୍କତ ଲିଙ୍ଗ । କରିବାକୁ ଲକ୍ଷ ବଚନ ଭଙ୍ଗ । ୧୬-୩୨

ବୀଣା, ମର୍ଦ୍ଦଳ, ରବା, ଉପାଙ୍ଗ ଓ ବଂଶୀ ପ୍ରଭୃତି ବାଦ୍ୟ ସମବେତ ସ୍ୱରରେ ନିନାଦିତ ହେଲେ । ଚାମର, ଆଲଟ ଓ ଖଦି ପ୍ରଭୃତି ଦ୍ୱାରା ସେ କାଳର ଶୋଭା ବୃଦ୍ଧି ପାଇଲା । ବିଭିନ୍ନ ପ୍ରକାର ଅଳଙ୍କାରର ନାଦ, ଶ୍ରୁତି, ସ୍ୱର, ମୂର୍ଚ୍ଛନା, ତାନ, ଜାତି, ଗ୍ରାମ, ରାଗ, ତାଳ, ଗ୍ରହ ଓ ଲୟ ସାହାଯ୍ୟରେ ଛାୟା 'ଛାୟାଲଗ 'ପ୍ରବନ୍ଧ ଓ ଚିତ୍ରପଦ ପ୍ରଭୃତି ଅଭିନୀତ ହେଲେ ।

ରାସ ଶବ୍ଦର ବ୍ୟୁତ୍ପତ୍ତି ସମ୍ବନ୍ଧରେ ବହୁପ୍ରକାର ମତ ପ୍ରଚଳିତ । 'ରସାନାଂ ସମୂହେ ରାସଃ' ଅନୁଯାୟୀ ରସମାନଙ୍କର ସମାବେଶକୁ ରାସ କୁହାଯାଏ । ଭ.

କଙ୍କଦ (Kankad)ଙ୍କ ମତରେ ରାସ ଶବ୍ଦର ଉତ୍ପତ୍ତି ରସ ଶବ୍ଦରୁ ନ ହୋଇ ରାସ୍‌ରୁ ହୋଇଛି । ନୃତ୍ୟ ମଝିରେ ଜୋରରେ ପାଟି କରିବାକୁ 'ରାସ୍' କୁହନ୍ତି । ଆଦିବାସୀ ନୃତ୍ୟରେ ପ୍ରାୟ ଏହିପରି ହୋଇଥାଏ । ହିନ୍ଦୀ ସାହିତ୍ୟର ଆଲୋଚକମାନେ 'ରାସୋ' (ପୃଥ୍ୱୀରାଜ ରାସୋ ପ୍ରଭୃତି ଗ୍ରନ୍ଥ)କୁ ରାସ ସହ ସଂଯୁକ୍ତ କରିଛନ୍ତି । ଭରତଙ୍କ ମତରେ ରାସକ ଏକ ଉପରୂପକ । ସେ ରାସକର ତିନି ପ୍ରକାର ଭେଦ ଦିଅନ୍ତି - (୧) ତାଳ ରସକ, (୨) ଦଣ୍ଡ ରାସକ, (୩) ମଣ୍ଡଳ ରାସକ ।

ତାଳ ରାସକ ନାମ ସ୍ୟାତ୍ ତତ୍‌ତ୍ରିଧା ରାସକଂ ଶ୍ରୁତମ୍ ।
ଦଣ୍ଡ ରାସକମେକନ୍ତୁ ତଥା ମଣ୍ଡଳ ରାସକମ୍ ॥

ସଙ୍ଗୀତରତ୍ନାକର ଅନୁଯାୟୀ ରାସ ହେଉଛି ମଣ୍ଡଳାକାର ନୃତ୍ୟ ବିଶେଷ । ଏଥିରେ ବହୁ ନର୍ତ୍ତକୀ ସହ ଜଣେ ନଟ ନୃତ୍ୟ କରେ । ପଣ୍ଡିତମାନେ ଏହାକୁ ହଲ୍ଲୀଷକ କୁହନ୍ତି । ତାଳବନ୍ଧ ଗତିଭେଦରେ ଏହା ବହୁପ୍ରକାର ହୋଇଥାଏ । ରାସ ସ୍ୱର୍ଗରେ ହୁଏନାହିଁ, ମର୍ତ୍ତ୍ୟରେ ହେବା ଅସମ୍ଭବ ।

ନର୍ତ୍ତକୀଭିରନେକାଭିର୍ମଣ୍ଡଳେ ବିଚରିଷ୍ଣୁଭିଃ ।
ଯତ୍ରୈକୋ ନୃତ୍ୟତି ନଟସ୍ତଦ୍ୱୈ ହଲ୍ଲୀଷକଂ ବିଦୁଃ ।
ତଦେବେଦଂ ତଳବନ୍ଧଗତିଭେଦେନ ଭୂୟସା ।
ରାସଃ ସ୍ୟାନ୍ନ ନାକେଽପି ବର୍ତ୍ତତେ କିଂ ପୁନର୍ଭୁବି ।

ବାଳଚରିତ (୩ୟ ଅଙ୍କ) ଓ ହରିବଂଶରେ (ବିଷ୍ଣୁ ପର୍ବ, ୪୯) ମଧ୍ୟ ରାସକୁ ହଲ୍ଲୀଷକ କୁହାଯାଇଛି । ଶ୍ରୀ ଭାଗବତର ୧୦।୩୩।୨ ଶ୍ଳୋକର ବୃହଦ୍‌ବୈଷ୍ଣବ ତୋଷଣୀ ଟୀକାରେ ଶ୍ରୀ ସନାତନ ଗୋସ୍ୱାମୀ ରାସକ୍ରୀଡ଼ାର ନିମ୍ନଲିଖିତ ଲକ୍ଷଣ ପ୍ରଦାନ କରିଛନ୍ତି । ତାଙ୍କ ମତରେ ଏହି ନୃତ୍ୟରେ ନର୍ତ୍ତକନର୍ତ୍ତକୀ ପରସ୍ପରର ହସ୍ତଧାରଣ କରିବେ ଓ ପ୍ରତ୍ୟେକ ନର୍ତ୍ତକ ପ୍ରତ୍ୟେକ ନର୍ତ୍ତକୀର କଣ୍ଠଧାରଣ କରିଥିବେ । ଏହି ଅବସ୍ଥାରେ ରହି ନର୍ତ୍ତକ ନର୍ତ୍ତକୀ ମଣ୍ଡଳାକାରରେ ନୃତ୍ୟ କଲେ ତାକୁ ରାସ କୁହାଯାଏ ।

ନଟୈର୍ଗୃହୀତକଣ୍ଠୀ ନାମ ନ୍ୟୋହନ୍ୟାର କରଶ୍ରିୟାମ୍ ।
ନର୍ତ୍ତକୀନାଂ ଭବେଦ୍‌ରାସୋ ମଣ୍ଡଳୀଭୂୟ ନର୍ତ୍ତନମିତି ।

ଦୀନକୃଷ୍ଣଙ୍କ ରାସଲୀଳାରେ ଜଣେ ନର୍ତ୍ତକ ଓ ବହୁ ନର୍ତ୍ତକୀ ଥିବା ହେତୁ ଏହା ସଙ୍ଗୀତ ରତ୍ନାକରର ପର୍ଯ୍ୟାୟଭୁକ୍ତ ।

ସଙ୍ଗୀତରତ୍ନାକର ମତରେ ରାସ ସ୍ୱର୍ଗରେ ବା ମର୍ତ୍ତ୍ୟରେ ଅନୁଷ୍ଠିତ ହୋଇ ପାରେ ନାହିଁ । ବୈଷ୍ଣବ ପୂର୍ବାଚାର୍ଯ୍ୟମାନେ ମଧ୍ୟ ବ୍ରଜପୁର ବ୍ୟତୀତ ଶ୍ରୀକୃଷ୍ଣଙ୍କ ଅନ୍ୟ ଧାମ ଅର୍ଥାତ୍ ସ୍ୱର୍ଗ, ବୈକୁଣ୍ଠ ଓ ଦ୍ୱାରକାରେ ରାସଲୀଳା ସମ୍ଭବ ନୁହେଁ ବୋଲି କୁହନ୍ତି । କାରଣ ସେଠି ରାଧା ନାହାନ୍ତି କି ଗୋପୀ ନାହାନ୍ତି । ସେଥିପାଇଁ ରସକଲ୍ଲୋଳର ରାସଲୀଳା ଦେବତାମାନଙ୍କର ଦର୍ଶନୀୟ ବସ୍ତୁ । ସେମାନେ ଅପଲକ ନେତ୍ରରେ କୃଷ୍ଣ ଗୋପଯୁବତୀଙ୍କ ରାସ ଅବଲୋକନ କରିଛନ୍ତି ।

କରିଛନ୍ତି ଦେବେ ଏକ ଦୃଷ୍ଟି । କରି ସୁବାସ କୁସୁମ ବୃଷ୍ଟି ।
କେ କହିବ ତାଙ୍କ ତପବଳ । କାହେ ଅପଲକ ହେଲା ଫଳ ।
କୃଷ୍ଣ ଗୋପଯୁବତୀଙ୍କ ରାସ । କରିଅଛି ସମସ୍ତଙ୍କୁ ବଶ ।
କଥନୀୟ ନୋହଇ ସେ ଶୋଭା । କରିଅଛି ଯେ ଦେବଙ୍କୁ ଲଭା ।୧୮-୨

ରାସର ପ୍ରଧାନ ସାମଗ୍ରୀ ହେଉଛନ୍ତି, ଶ୍ରୀକୃଷ୍ଣ ଓ ବ୍ରଜସୁନ୍ଦରୀଗଣ । ଏମାନଙ୍କର ବିଦ୍ୟମାନତା ବ୍ୟତୀତ ରାସ ଅନୁଷ୍ଠିତ ହୋଇପାରେ ନାହିଁ । ଭାଗବତରେ ଅଛି-

ତତାରଭତ ଗୋବିନ୍ଦୋ ରାସ କ୍ରୀଡ଼ା ମନୁବ୍ରତୈଃ ।
ସ୍ତ୍ରୀ ରତ୍ନୈରନ୍ୱିତଃ ପ୍ରୀତୈରନ୍ୟୋନ୍ୟା ବଦ୍ଧବାହୁଭିଃ । (୧୦।୩୩।୨)

ଏହି ଶ୍ଳୋକର ଟୀକାରେ ବୈଷ୍ଣବ ତୋଷଣୀକାର ଲେଖିଛନ୍ତି- "ଗୋବିନ୍ଦ ଇତି ଶ୍ରୀ ଗୋକୁଳେନ୍ଦ୍ରତାୟାଂ ନିଜାଶେଷୈଶ୍ୱର୍ଯ୍ୟ-ମାଧୁର୍ଯ୍ୟ ବିଶେଷ ପ୍ରକଟନେନ ପରମ-ପୁରୁଷୋତ୍ତମତା ସ୍ତ୍ରୀରତ୍ନୈରିତି ତାସାଞ୍ଚ ସର୍ବ୍ବ ସ୍ତ୍ରୀ ବର୍ଗଶ୍ରେଷ୍ଠତା ପ୍ରୋକ୍ତା ରତ୍ନଂ ସ୍ୱଜାତି ଶ୍ରେଷ୍ଠୋଽପୀତି ନାନାର୍ଥ ବର୍ଗାତ । ଇତି ରାସକ୍ରୀଡ଼ାୟାଃ ପରମସାମଗ୍ରୀ ଦର୍ଶିତା ।" ଅର୍ଥାତ୍ ସ୍ୱୀୟ ଅଶେଷ ଐଶ୍ୱର୍ଯ୍ୟ-ମାଧୁର୍ଯ୍ୟ ପ୍ରକଟନ ଦ୍ୱାରା ଯେ ପୁରୁଷୋତ୍ତମତା ପ୍ରାପ୍ତ ହୋଇଛନ୍ତି, ସେହି ଗୋବିନ୍ଦ ଏବଂ ସର୍ବ ରମଣୀକୁଳ ମୁକୁଟମଣି ସ୍ତ୍ରୀରତ୍ନରୂପା ପ୍ରେମବତୀ ଗୋପ ସୁନ୍ଦରୀଗଣ-ଏମାନେ ହେଲେ ରାସକ୍ରୀଡ଼ାର ପରମ ସାମଗ୍ରୀ ।

ଶ୍ରୀକୃଷ୍ଣ ସାଧାରଣ ନାୟକ ନୁହନ୍ତି । ବୈଷ୍ଣବମାନଙ୍କ ମତରେ ସେ ହେଉଛନ୍ତି, ସର୍ବ୍ବ ଅଂଶୀ, ସର୍ବ୍ବାଶ୍ରୟ, ସର୍ବ୍ବ-କାରଣ-କାରଣ, ସକଳର ଆଦି, ଈଶ୍ୱରମାନଙ୍କର ଈଶ୍ୱର-ପରମ ଈଶ୍ୱର । ସମସ୍ତ ଭଗବତ୍ ସ୍ୱରୂପ ତାଙ୍କଠାରେ ଅବସ୍ଥିତ । ତାଙ୍କଠାରୁ ଅନ୍ୟ ସମସ୍ତ ଭାଗବତ ସ୍ୱରୂପର ଭଗବତ୍ତା ଓ ଐଶ୍ୱର୍ଯ୍ୟ । ସେ ହେଉଛନ୍ତି ପରମ ତତ୍ତ୍ୱ । ସର୍ବଶ୍ରେଷ୍ଠ-ପରମ ପୁରୁଷୋତ୍ତମ । କବି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟ ବର୍ଣ୍ଣନା କରି ଲେଖିଛନ୍ତି,

କହି ନହୋଇ ସେକାଳ ସମଭି । କୋଟି ବ୍ରହ୍ମାଣ୍ଡନାଥ ଯହିଁଛନ୍ତି ।
କଉଁ କଥା ଅପୂର୍ବ ତହିଁ । କଟାକ୍ଷେ କୋଟି କୋଟି ଲକ୍ଷ୍ମୀ ଯହିଁ ।
କୁବେର ଆଜ୍ଞାକାରୀ ଯାହାର । କରନ୍ତି ସେ ପ୍ରଭୁ ବନେ ବିହାର ।(୨୭-୩୦)

ମାଧୁର୍ଯ୍ୟର ବିକାଶରେ ସେ ମଧ ସର୍ବୋତ୍ତମ । ଚୈତନ୍ୟଚରିତାମୃତକାର ଲେଖିଛନ୍ତି,

ଆପନ ମାଧୁର୍ଯ୍ୟେ ହରେ ଆପନାର ମନ

.......

ପୁରୁଷ ଯୋଷିତ କିମ୍ବା ସ୍ଥାବର ଜଙ୍ଗମ ।
ସର୍ବଚିତ୍ତ ଆକର୍ଷକ ସାକ୍ଷାତ ମନ୍ମଥମଦନ ।

କବି ଦୀନକୃଷ୍ଣ 'ଅପାର ମାଧୁର୍ଯ୍ୟ' ସହ ସର୍ବୋତଭାବେ ପରିଚିତ ଥିଲେ । ସେ ଲେଖିଛନ୍ତି,

କାମ ଶାଣବାଣ ପରାୟେ ଅରୁଣ କଟାକ୍ଷ ପଡ଼େ ବେନିପାଶେ,
କି ସବ୍ୟସାଚିତ୍ୱ ସାଧୁଅଛି ଚିତ୍ତଜାତ ଜଗତଜୟ ଆଶେ ?
କହି ନୋହଇ, ମଧୁର ମୃଦୁ ମନ୍ଦ ହାସ ।
କାମିନୀ ମୋହିବା କେତେ କଥା ଅବା କାମ ଦେଖିଲେ ହେବଦାସ ।
(୬-୨୭)

ଅନ୍ୟ ସ୍ଥଳରେ କବି ଏହାର ପରିଚୟ ଦେଇ ଲେଖିଛନ୍ତି,

କୁନ୍ଦ କୁମୁଦ ବନଭାରତୀ । କରେ ଯଉଁ ପ୍ରଭୁସେବା ନିତି ।
କହି ହୋୟେ କି ସେ ପ୍ରଭୁଲୀଳା । କୃପା ନ କଲେ ସେ ପଦ୍ମତୋଳା-
(୧୮-୩୧,୩୨)

ଗୋପୀମାନେ ମଧ ସାଧାରଣ ନାୟିକା ନୁହନ୍ତି । ବୈଷ୍ଣବ ରସକୋବିଦମାନେ ସେମାନଙ୍କୁ ପରମ ରମଣୀରତ୍ନ ଆଖ୍ୟା ପ୍ରଦାନ କରିଛନ୍ତି । ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ, କଳାବିଳାସ, ବୈଦଗ୍ଧ୍ୟ ଓ ସର୍ବୋପରି ଶ୍ରୀକୃଷ୍ଣବଶୀକରଣ ସେବାରେ ସେମାନଙ୍କର ସମାନ କେହି ନୁହନ୍ତି ବା ସେମାନଙ୍କଠାରୁ ଅଧିକ କେହି ନୁହନ୍ତି । କବି ଦୀନକୃଷ୍ଣ ରସବତୀ, ଗୁଣମଣି ଗୋପୀମାନଙ୍କର ପରିଚୟ ବର୍ଣ୍ଣନା କରି ଲେଖିଛନ୍ତି :

କେହି ନୋହେ ଭୟମାନେ ଭଣା । କଉଁ ଗୁଣେ କେ ନୋହେ ପ୍ରବୀଣା ?
କେହି ନୋହେ ଭଚନୀଚକ୍ଷଣ । କେହି ନୋହେ ପୃଥୁଳ ବିଶେଷ ।

କେହି ନୋହେ ବୟସରେ ଭାରି । କେ ନୋହନ୍ତି କୃଷ୍ଣ ମନୋହାରୀ ?
କାନ୍ତି କାନ୍ତେ ସମସ୍ତେ ମଣ୍ଡିତା । କାମଶାସ୍ତ୍ରେ କୁଶଳ ପଣ୍ଡିତା ।
କୃଷ୍ଣେ ସମସ୍ତେହେଁ ଅନୁରାଗୀ । କୃଷ୍ଣ ଅଭାବେ ବିଷୟତ୍ୟାଗୀ ।(୧୮,୫-୭)
ଶ୍ରୀକୃଷ୍ଣ ଗୋପୀମାନଙ୍କୁ ପ୍ରଶଂସା କରି କହିଛନ୍ତି,
କହିଲେ ହେ ପ୍ରିୟତମା । କେ ଅଛି ତୋତେ ଉପମା ।
କରିବୁ ତୁ ବେଦପତିକି ନିର୍ବେଦ ଗୁଣମଣି ସୁଖସୀମା । ସେ କାମିନୀ ।
(୧୯-୧୯)

କବି ଦୀନକୃଷ୍ଣ ଗୋପୀମାନଙ୍କର ମହିମା ରସକଲ୍ଲୋଳର ବହୁସ୍ଥାନରେ ବହୁଭାବରେ ବର୍ଣ୍ଣନା କରିଛନ୍ତି । ସବୁଠାରୁ ବଡ଼ ଗୁଣ ହେଉଛି ସେମାନଙ୍କର କୃଷ୍ଣଭକ୍ତି । "କେ କହିବ ଗୋପ ଯୁବତୀଙ୍କ ତପ ମାନବ ଶରୀର ବହି । କୃଷ୍ଣ ଭକତିରେ ଭୋଳ ନିରନ୍ତରେ କୃଷ୍ଣକଥାମାନ କହି ।" (୧୦-୨୯) । ସେମାନେ କୃଷ୍ଣଙ୍କଠାରେ ମନ ବଚନ କର୍ତ୍ତବ୍ୟ ସବୁ ସମର୍ପିତ କରିଛନ୍ତି । ସେମାନଙ୍କର ଆଦର୍ଶ ହେଉଛି,

କେ ବୋଲେ କିଛି ନ ବୋଲିବା ଆଉ ।
କୃଷ୍ଣଭୋଗରେ ସବୁ ପଛେ ଯାଉ ।
କରିଥାଇ ଯେ ଅନେକ ସୁକୃତ । କେଶବ କାର୍ଯ୍ୟେ ଲାଗଇ ତା ଚିତ୍ତ ।
କୃତାର୍ଥ ବାଟ ନନ୍ଦ ନନ୍ଦନ । କରିବା ତାକୁ ସମସ୍ତେ ବନ୍ଦନ । ୫-୨୨

ଗୋପୀମାନଙ୍କ ମଧ୍ୟରେ ଶ୍ରୀରାଧା ଶ୍ରେଷ୍ଠା । ସେ ତ୍ରିଭୁବନେ ନିରୁପମା । ଶ୍ରୀକୃଷ୍ଣଙ୍କର ପ୍ରିୟତମା ସୁଖ ସୀମା । ତାଙ୍କରି ରୂପରେ ଶ୍ରୀକୃଷ୍ଣଙ୍କ ମନ ଆବଦ୍ଧ ହୋଇ ରହିଛି । କୋଟି ବ୍ରହ୍ମାଣ୍ଡରେ ତାଙ୍କ ସମାନ କେହି ନାହାନ୍ତି । 'କୋଟି ବ୍ରହ୍ମାଣ୍ଡ ସମ ନାହାନ୍ତି ତୋତେ ଯେ ।' ବୈଷ୍ଣବ ରସ-ଶାସ୍ତ୍ରରେ ରାଧାଙ୍କୁ ଲୀଳାରସର ମୂଳ ଉତ୍ସ କୁହାଯାଇଛି । ସେ ରାମେଶ୍ୱରୀ । ରାସଲୀଳାର ପ୍ରାଣବସ୍ତୁ । ବସନ୍ତ ମହାରାସ ସମୟରେ ଶ୍ରୀରାଧା ଅନ୍ତର୍ହିତ ହୋଇଯିବାରୁ ଶ୍ରୀକୃଷ୍ଣଙ୍କ ରାସଲୀଳା ବାସନା ଲୋପ ପାଇଯାଇଛି । ଗୋପୀମାନଙ୍କ ବିଦ୍ୟମାନତା ରାଧାଙ୍କ ଅଭାବ ପୂରଣ କରିପାରିନାହିଁ । ସେଥିପାଇଁ ଦୀନକୃଷ୍ଣ ରାଧା-କୃଷ୍ଣ ରାସ ସ୍ୱତନ୍ତ୍ରଭାବେ ବର୍ଣ୍ଣନା କରିଛନ୍ତି । ଗୋପୀମାନଙ୍କଠାରୁ ଅଲଗା ନ ହୋଇ ମଧ୍ୟ ସେ ଅଲଗା । ଗୋପୀ-ରାଧା କୃଷ୍ଣ ମିଳନର ପରମ ଯୋଗସୂତ୍ର ହେଉଛି ରାଧା ପ୍ରମୁଖ ଗୋପୀମାନଙ୍କର ପ୍ରେମ । ଗୋପୀମାନଙ୍କର ଅଙ୍ଗ ସୌନ୍ଦର୍ଯ୍ୟ ଅଳଙ୍କାର, ଆଭୂଷଣ

ସବୁ ଶ୍ରୀକୃଷ୍ଣଙ୍କ ପାଇଁ । ଶ୍ରୀକୃଷ୍ଣଙ୍କୁ ବଶ କରି ନ ପାରିଲେ ସେ ସବୁର ମୂଲ୍ୟ ନାହିଁ । ଗୋପୀମାନଙ୍କ ପ୍ରେମରେ ସ୍ୱ-ସୁଖ-ବାସନା ନାହିଁ । ସେମାନଙ୍କର ମନ, ବଚନ, କର୍ତ୍ତବ୍ୟ, ଶରୀର ସୌନ୍ଦର୍ଯ୍ୟ ସବୁ ଶ୍ରୀକୃଷ୍ଣଙ୍କ ପାଇଁ ଅଭିପ୍ରେତ । ସେଥିପାଇଁ ସେମାନଙ୍କର କୃଷ୍ଣପ୍ରେମ ଏ ଯୁଗର ନୁହେଁ ବା ସେ ଯୁଗର ନୁହେଁ ।

କୋଟି କୋଟି କଳ୍ପ କ୍ଷୟ ଗଲେ । କ୍ରୀଡ଼ା ରଙ୍ଗ ରଙ୍ଗ ନୋହେ ଭଲେ ।

ରସକଲ୍ଲୋଳର ରାସଲୀଳା ପ୍ରସଙ୍ଗରେ ଆଉ କେତୋଟି ମହତ୍ତ୍ୱପୂର୍ଣ୍ଣ ପ୍ରସଙ୍ଗର ଆଲୋଚନା କରାଯାଇପାରେ । ରାସଲୀଳା କାଳରେ ଦୀନକୃଷ୍ଣ ବହୁପ୍ରକାର ବାଦ୍ୟ ଓ ସଙ୍ଗୀତର ଉଲ୍ଲେଖ କରିଛନ୍ତି । ଏଥିରୁ କବି ଦୀନକୃଷ୍ଣଙ୍କର ସଙ୍ଗୀତ ବିଦ୍ୟାରେ ପ୍ରବେଶ ଥିବା ଅନୁମିତ ହୁଏ । ଶ୍ରୀଭାଗବତରେ ଏ ସବୁର ଚର୍ଚ୍ଚା ନଥିଲେ ହେଁ ପରବର୍ତ୍ତୀ ଯୁଗର ବହୁ ଭାରତୀୟ କବି (ବ୍ରଜଭାଷା ସାହିତ୍ୟର କବି ସୁରଦାସ ସୁରସାଗର ପୃ ୪୪୬), ହରିଦାସ (ନି.ମା. ପୃ ୨୧୫,୨୧୬) ଓ ହରିବ୍ୟାସ ଦେବ (ନି. ମା. ପୃ ୪୪, ୫୧ ଓ ୫୨) ଓ ଗୁଜରାଟର କବି ନରସୀଙ୍କ (ନ.କୃ.କା. ପୃ ୧୯୫) ରାସ ନୃତ୍ୟ ସହ ସଙ୍ଗୀତ ଓ ବାଦ୍ୟର ସମାବେଶ କରିଛନ୍ତି ।

ଭାଗବତର ଗୋପୀ-କୃଷ୍ଣ ରାସ ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ହୋଇ ପ୍ରକଟ ହେବା ପରେ ଅନୁଷ୍ଠିତ ହୋଇଛି । ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ପୂର୍ବରୁ ଭାଗବତରେ ଗୋପୀ ରମଣ ବୃତ୍ତାନ୍ତ ବର୍ଣ୍ଣିତ । କବି ଦୀନକୃଷ୍ଣ ଭାଗବତର 'ବାହୁ ପ୍ରସାର ପରିରମ୍ଭ.... ରମୟାଂ ଚକାର' ଅଂଶକୁ ରାସରେ ପରିଣତ କରିଛନ୍ତି । ବ୍ରଜଭାଷାର କବି ସୁରଦାସ ଓ ଗୁଜରାଟର କବି ନରସୀ ମଧ ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ହେବା ପୂର୍ବରୁ ରାସ ବର୍ଣ୍ଣନା କରିଛନ୍ତି । ରାସଲୀଳା ବର୍ଣ୍ଣନା ପ୍ରସଙ୍ଗରେ ଆଲିଙ୍ଗନ ଓ ଚୁମ୍ବନର ଉଲ୍ଲେଖ ଅନେକ ସମୟରେ ପାଠକମାନଙ୍କୁ ବିବ୍ରତ କରିଥାଏ । ଏସବୁ ବର୍ଣ୍ଣନା ଦ୍ୱାରା ରାସଲୀଳାର ମହତ୍ତ୍ୱ କ୍ଷୁଣ୍ଣ ହେଉଥିବା ଅନେକେ କୁହନ୍ତି । କବି ଦୀନକୃଷ୍ଣ ରାସଲୀଳାର ଦିବ୍ୟତ୍ୱ ଅକ୍ଷୁଣ୍ଣ ରଖିବାପାଇଁ ରାସଲୀଳା କାଳରେ ଏ ସବୁର ଉଲ୍ଲେଖ କରିନାହାନ୍ତି ଓ ସୁରତି ଲୀଳାଠାରୁ ରାସଲୀଳାକୁ ସ୍ୱତନ୍ତ୍ର ଭାବରେ ବର୍ଣ୍ଣନା କରିଛନ୍ତି । ରାସକ୍ରୀଡ଼ା ଶେଷରେ ଗୋପୀମାନଙ୍କ ଅଙ୍ଗ ପରିଶ୍ରମ ଦୂର କରିବା ପାଇଁ ଶ୍ରୀକୃଷ୍ଣ ସେମାନଙ୍କ ସହ ବନ ବିହାର କରିଛନ୍ତି । ସେତିକିବେଳେ ସେମାନଙ୍କ ମନରେ ଆନନ୍ଦ ଦାନ କରିବାପାଇଁ ରସିକ ଶିରୋମଣି ଶ୍ରୀକୃଷ୍ଣ

କାହାରିକୁ ଆଲିଙ୍ଗନ କରିଛନ୍ତି ତ କାହାରିକୁ ଚୁମ୍ବନ ଦାନ କରିଛନ୍ତି । କେବଳ ସେତିକି ନୁହେଁ, ଗୋପୀମାନଙ୍କ କବରୀରେ ଫୁଲ ଖୋସି, କୁସୁମରେ ସୁବେଶ କରି, ଗୋଳା କର୍ପୂର ଓ ଚନ୍ଦନ ଦ୍ୱାରା କୁଚରେ ପତ୍ରାବଳୀ ଲେଖି, କୁରଙ୍ଗ ମଦ ଦ୍ୱାରା ଗଣ୍ଡ ଦେଶରେ ମକରୀ ଅଙ୍କନ କରି, ନୟନରେ କଜ୍ଜଳ ଦେଇ ଓ ଚାଟୁବଚନ କହି ଶ୍ରୀକୃଷ୍ଣ ସେମାନଙ୍କର ପ୍ରୀତିଭାଜନ ହୋଇଛନ୍ତି । ଆଲିଙ୍ଗନ ଓ ଚୁମ୍ବନ ପ୍ରଭୃତି କାମକ୍ରୀଡ଼ାର କେତୋଟି ବାହ୍ୟିକ ଲକ୍ଷଣ ଭାଗବତର ରାସଲୀଳା ବର୍ଣ୍ଣନାରେ ମିଳେ । ବୈଷ୍ଣବ ପୂର୍ବାଚାର୍ଯ୍ୟମାନେ ଏ ସବୁକୁ ପ୍ରୀତି ପ୍ରକାଶର ସହାୟକରୂପେ ଗ୍ରହଣ କରିଛନ୍ତି । ସେମାନଙ୍କ ମତରେ ନୃତ୍ୟ, ଗୀତ, ଚୁମ୍ବନ ଓ ଆଲିଙ୍ଗନାଦି ରାସର ଅପରିହାର୍ଯ୍ୟ ଅଙ୍ଗ । ଶ୍ରୀ ବିଶ୍ୱନାଥ ଚକ୍ରବର୍ତ୍ତୀ ରାସର ନିମ୍ନଲିଖିତ ବ୍ୟାଖ୍ୟା ପ୍ରଦାନ କରିଛନ୍ତି-

ନୃତ୍ୟଗୀତ-ଚୁମ୍ବନାଲିଙ୍ଗନାଦୀନାଂ ରସାନାଂ ସମୂହୋ ରାସଃ

ବଳଦେବ ବିଦ୍ୟାଭୂଷଣ ମଧ୍ୟ ନୃତ୍ୟଗୀତ-ଚୁମ୍ବନାଲିଙ୍ଗନାଦି ରସର ସମାବେଶକୁ ରାସ କହିଛନ୍ତି, "ଯୋଗାର୍ଥସ୍ତୁ ନୃତ୍ୟଗୀତଶ୍ଳେଷାଦୀନାଂ ରସାନା ସମୂହୋ ରାସଃ ।" ସେମାନଙ୍କ ମତରେ ପ୍ରାକୃତ ଭସ୍ମୋଦ୍‌ଗାରୀ ନୃତ୍ୟ ରାସନୃତ୍ୟ ନୁହେଁ ବା ରାସଲୀଳା କାମ-କ୍ରୀଡ଼ା ନୁହେଁ । ରାସଲୀଳାର ନାୟିକା ସ୍ୱସୁଖ-ବାସନାଦ୍ୱାରା ପ୍ରଣୋଦିତ ନୁହନ୍ତି । ସେଥିପାଇଁ ରାସଲୀଳାରୁ ଉତ୍ପନ୍ନ ହେଉଥିବା ରସକୁ ଜୀବଗୋସ୍ୱାମୀ 'ପରମ ରସ କଦମ୍ବମୟ' କହିଛନ୍ତି । କବି ଦୀନକୃଷ୍ଣ ମଧ୍ୟ ଶ୍ରୀକୃଷ୍ଣ ଓ ଗୋପୀଙ୍କର ତାଳମୟ କ୍ରୀଡ଼ାରୁ ରାସଭକ୍ତି ଉଦୟ ହେଉଥିବା କୁହନ୍ତି ।

କମଳଦଳ ନେତ୍ର ତାଳମୟ । କ୍ରୀଡ଼ା ହେତୁ ରାସଭକ୍ତି ଉଦୟ ।୧୭-୩୪

୪-ରାଧା-କୃଷ୍ଣ କେଳି

ଗୋପୀମାନଙ୍କ ସହ ରାସ ରଚନା ପରେ କବି ଦୀନକୃଷ୍ଣ ସ୍ୱତନ୍ତ୍ର ଛାନ୍ଦରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର କେଳି ଓ ସ୍ନେହ ପ୍ରୀତି ବାଣୀ ବର୍ଣ୍ଣନା କରିଛନ୍ତି । ସଂସ୍କୃତ ତଥା ଓଡ଼ିଆ ଶ୍ରୀମଦ୍‌ଭାଗବତରେ ଗୋପୀ-କୃଷ୍ଣ ରାସ ବର୍ଣ୍ଣିତ । ରାଧା ସେଠି ନାହାନ୍ତି । ଭାଗବତର 'ଅନୟା ରାଧିତୋନୂନଂ' ପଂକ୍ତିରେ ବ୍ୟଞ୍ଜିତ ଗୋପୀବିଶେଷକୁ ବ୍ରହ୍ମବୈବର୍ତ୍ତ ପୁରାଣ ରାଧାରେ ପରିଣତ କରନ୍ତି ଓ ବୋଧହୁଏ ତାପରେ ଗୋପୀ ରାଧାକୃଷ୍ଣ ରାସର ପରଂପରା ପ୍ରଚଳିତ ହୁଏ । ସେହି ବ୍ରହ୍ମବୈବର୍ତ୍ତପୁରାଣର କୃଷ୍ଣଜନ୍ମ ଖଣ୍ଡ ପଞ୍ଚମ ଅଧ୍ୟାୟରେ ରାଧାକୃଷ୍ଣଙ୍କ ଏକାନ୍ତ

ରାସର ମଧ୍ୟ ବର୍ଣ୍ଣନା ହୋଇଛି । ଜୟଦେବଙ୍କ ଗୀତଗୋବିନ୍ଦରେ ମଧ୍ୟ ଗୋପୀ-କୃଷ୍ଣଙ୍କ ରାସକଳାରେ ରାଧା ନାହାନ୍ତି । ଶ୍ରୀରାଧା ସଖୀଙ୍କଠାରୁ ଗୋପୀ-କୃଷ୍ଣ ରାସକଥା ଶୁଣିଛନ୍ତି । ମନେହୁଏ ଦୀନକୃଷ୍ଣ ଏସବୁ ଗ୍ରନ୍ଥଦ୍ୱାରା ପ୍ରଭାବିତ ହୋଇ ରାଧାକୃଷ୍ଣ କେଳି ସ୍ୱତନ୍ତ୍ର ଭାବରେ ବର୍ଣ୍ଣନା କରିଛନ୍ତି ।

ରସକଲ୍ଲୋଳରେ ଗୋପୀ ଓ ରାଧାଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ଅତି ଅସ୍ପଷ୍ଟ । ଉଭୟେ ଶ୍ରୀକୃଷ୍ଣଙ୍କର କାନ୍ତା । ଗୋପୀମାନଙ୍କ ମଧ୍ୟରୁ ରାଧା ବେଳେବେଳେ ବୁଦ୍‌ବୁଦ୍ ପରି ଆତ୍ମପ୍ରକାଶ କରି ପୁଣି ଗୋପୀସାଗର ମଧ୍ୟରେ ଲୀନ ହୋଇଯାଆନ୍ତି । ରସକଲ୍ଲୋଳରେ ରାଧାଚରିତ୍ରର ଏହା ଏକ ବୈଶିଷ୍ଟ୍ୟ । ରାସକ୍ରୀଡ଼ା ଶେଷରେ ଅଙ୍ଗ ପରିଶ୍ରମ ଦୂର କରିବାପାଇଁ ଶ୍ରୀକୃଷ୍ଣ ବହୁଭାବରେ ଚେଷ୍ଟା କରିଛନ୍ତି । ସମସ୍ତ ଊନବିଂଶ ଛାନ୍ଦ ଶ୍ରୀକୃଷ୍ଣଙ୍କ ରସଗର୍ଭ ବାଣୀ ଓ ମଧୁର ବ୍ୟବହାରରେ ପରିପୂର୍ଣ୍ଣ । ବର୍ଣ୍ଣନର ଶେଷ ପଦ ହେଉଛି, "କେଉଁଠାରେ ଫୁଲଶେଯ । କରି ନିଜ କରେ ଉଚ୍ଚ । କାମିନୀକି କୋଳେ ଧରି କାମଭୋଳେ ପହୁଡନ୍ତି ଦେବରାଜ । ସେ କାମିନୀ ।" ଏଠି 'କାମିନୀ' ଶବ୍ଦ କୌଣସି ଜଣେ ଗୋପୀଙ୍କ ପାଇଁ ପ୍ରଯୁକ୍ତ । ବିଂଶ ଛାନ୍ଦର ପ୍ରଥମ ପଂକ୍ତି ହେଉଛି, "କୁଞ୍ଜ କୁଟୀରେ ଫୁଲ ଶେଯ ଉପରେ । କେଳି କରନ୍ତି କାନ୍ତ କାନ୍ତା ସଙ୍ଗରେ ଯେ ।" ଫୁଲଶେଯ ଉପରେ କାମିନୀକି କୋଳେ ଧରି କାମଭୋଳେ ପହୁଡ଼ନ୍ତି, ଓ କୁଞ୍ଜ କୁଟୀରେ ଫୁଲଶେଯ ଉପରେ କାନ୍ତ କାନ୍ତା ସହ କେଳି କରନ୍ତି ରେ ଅର୍ଥ ଦୃଷ୍ଟିରୁ କୌଣସି ପାର୍ଥକ୍ୟ ନାହିଁ । ମନେହୁଏ ଯେପରି ଗୋଟିଏ ପ୍ରକାର ବର୍ଣ୍ଣନା ଊନବିଂଶ ଛାନ୍ଦରୁ ବିଂଶ ଛାନ୍ଦକୁ ଗତି କରିଛି । ବିଂଶ ଛାନ୍ଦର ସତର ପଦ ପର୍ଯ୍ୟନ୍ତ ରାଧାଙ୍କର କୌଣସି ସୂଚନା ନାହିଁ । ଅଷ୍ଟାଦଶ ପଦର କହନ୍ତି "ରାଧା ଶୁଣି ଶ୍ରୀକୃଷ୍ଣ ବାଣୀ" ପଂକ୍ତିରୁ ପୂର୍ବ ପଦସବୁ ରାଧା ପାଇଁ ପ୍ରଯୁକ୍ତ ହୋଇଥିବା ଅନୁମାନଦ୍ୱାରା କୁହାଯାଇପାରେ । ପୁଣି ଶ୍ରୀକୃଷ୍ଣଙ୍କ ଉକ୍ତିରେ (୨୨ ପଦ) ରାଧାଙ୍କ ନାମ ପରିବର୍ତ୍ତେ ଚନ୍ଦ୍ରମାମୁଖୀ ବ୍ୟବହୃତ । କେବଳ ସେତିକି ନୁହେଁ, ରାଧା ଓ ଗୋପୀଙ୍କ ପାଇଁ ପ୍ରଯୁକ୍ତ ଉକ୍ତି ମଧ୍ୟରେ କୌଣସି ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ । ଉଦାହରଣ ସ୍ୱରୂପ ଗୋଟିଏ ପଂକ୍ତି ଗ୍ରହଣ କରାଯାଇପାରେ । ରାଧାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଉକ୍ତି -

କରି ତୋ ନାମ ଆଗେ ମୋ ନାମ ପଛେ
କହୁଅଛନ୍ତି ଯେଉଁ ଲୋକେ ପ୍ରତକ୍ଷେ ଗୋ । ୧୯-୨୩

ଗୋପୀଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଉକ୍ତି- ୧୯-୪୦

କରି ତୋ ନାମ ଅଗ୍ରଣୀ । କହୁଥାନ୍ତି ଯାହା ପ୍ରାଣୀ

କର୍ଣ୍ଣେ ତାହା ଶୁଣି ହୃଦେ ଗୁଣି ଗୁଣି ପୁଲକଇ ପ୍ରାଣମଣି ସେ କାମିନୀ । ସେହିପରି "କହି ଅନେକ ଅନୁରାଗ ବଚନ । କୋଳ କରି ସଧୀରେ ଦେଇ ଚୁମ୍ବନ ଯେ । କଉତୁକେ ସେ ଠାରୁ କଲେ ଗମନ । କନ୍ଦର୍ପରେ ପ୍ରସନ୍ନ ହୋଇଛି ମନ ଯେ ।" ୨୦-୨୪ ପଦରେ ରାଧାଙ୍କଠାରୁ ଶ୍ରୀକୃଷ୍ଣଙ୍କ ବିଦାୟ ସୂଚିତ ହେଉଥିଲେହେଁ ପରବର୍ତ୍ତୀ ପଦରେ ଏହି ଭାବ ରକ୍ଷିତ ହୋଇନାହିଁ । 'କନକଲତା ନବ ତମାଳ ସଙ୍ଗେ', 'କଳାମେଘ ଆଗରେ ଉଦେ ବିଜୁଳି', କିବା 'ଅନଙ୍ଗ ନଟ ଅଙ୍ଗକୁ ପାଇ । କେଳିତିକି ଆଗରେ ପରି ଚଳଇ ଯେ ।' ପ୍ରଭୃତି ପଂକ୍ତିରେ ପ୍ରସଙ୍ଗ ଦୃଷ୍ଟିରୁ ଶ୍ରୀକୃଷ୍ଣଙ୍କ ସହ ରାଧାଙ୍କର କଳ୍ପନା କରିବା ସ୍ୱାଭାବିକ । ଅବଶ୍ୟ ରାଧାଙ୍କ ସ୍ଥାନରେ କୌଣସି ଗୋପୀ ଅର୍ଥରେ ଗ୍ରହଣ କଲେ ଅସୁବିଧା କିଛି ନାହିଁ । ଏହିପରି ବର୍ଣ୍ଣନା ଭିତରେ କେତେବେଳେ ରାଧା ରାସଭୂମିରୁ ଅଦୃଶ୍ୟ ହୋଇ ତାଙ୍କ ସ୍ଥାନରେ ଜଣେ ଗୋପୀ ଆସି ପହଞ୍ଚି ଶ୍ରୀକୃଷ୍ଣଙ୍କ ସହଯାତ୍ରିଣୀ ହୋଇଛି କହିବା କଷ୍ଟ । ତେବେ ପରବର୍ତ୍ତୀ ପଦମାନଙ୍କରେ (୨୮ ପଦ ପରେ) ରାଧା ଆଉ ନାହାନ୍ତି ।

ରାସକ୍ରୀଡ଼ା ସମୟରେ ରାଧାକୃଷ୍ଣଙ୍କର ସମ୍ଭୋଗ ବର୍ଣ୍ଣନା ଅତି ସଂକ୍ଷିପ୍ତ ଓ ସଂଯତ । କେବଳ କେତୋଟି ପଂକ୍ତିରେ କବି ରାଧା-କୃଷ୍ଣ କେଳିର ସୂଚନା ମାତ୍ର ଦେଇଛନ୍ତି । ଅଥଚ ଗୋପୀ-କୃଷ୍ଣ ସମ୍ଭୋଗ ବର୍ଣ୍ଣନା କଲାବେଳେ କବି ଦୀନକୃଷ୍ଣ ଭାବନାର ଆବେଶରେ ଶ୍ଳୀଳତା ଓ ଅଶ୍ଳୀଳତାର ବିଚାର କରିପାରି ନାହାନ୍ତି । କାମଶାସ୍ତ୍ରକୁ ଅନୁସରଣ କରି 'କାମଶାସ୍ତ୍ରେ କୁଶଳ । କୃଷ୍ଣଗୋପୀ ପଟଳ' ଙ୍କର କାମ ସମର ବର୍ଣ୍ଣନା କରିବାପାଇଁ ସେ ଯେପରି ଉଦ୍‌ଗ୍ରୀବ । ରାଧାକୃଷ୍ଣଙ୍କ ରାସ ବର୍ଣ୍ଣନାରେ କବି ଶ୍ଳୀଳତାର ପରିଚୟ ଦେଇଥିଲେ ହେଁ ରାଧାଙ୍କ ବିରହରେ ବ୍ୟଥିତ ଶ୍ରୀକୃଷ୍ଣଙ୍କ ଉକ୍ତିରୁ ରାଧାକୃଷ୍ଣଙ୍କ ଶାରୀରିକ ସମୀପତାର ପ୍ରଚୁର ପ୍ରମାଣ ମିଳିଥାଏ । ରାଧାକୃଷ୍ଣଙ୍କ ସମ୍ଭୋଗ ବର୍ଣ୍ଣନାର ପରଂପରା ଅତି ପ୍ରାଚୀନ । ଗାଥା ସପ୍ତଶତୀ (୧୩୪ ଖ୍ରୀ.), ଗୌଡ଼ ବହୋ (୭୭୫ ଖ୍ରୀ.), ଧ୍ୱନ୍ୟାଲୋକ (୯୧୦ ଖ୍ରୀ), ବ୍ରହ୍ମବୈବର୍ତ୍ତପୁରାଣ (ଦ୍ୱାଦଶ ଶତାବ୍ଦୀ) ଓ ଜୟଦେବଙ୍କ ଗୀତଗୋବିନ୍ଦ (୧୨ଶ ଶତାବ୍ଦୀ)ରେ ରାଧାକୃଷ୍ଣଙ୍କ ସମ୍ଭୋଗ ବର୍ଣ୍ଣନାର ବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ ।

ରସକଲ୍ଲୋଳର ରାଧାକୃଷ୍ଣ ସାଧାରଣ ନାୟକନାୟିକା ନୁହନ୍ତି । ସେମାନଙ୍କ ପ୍ରୀତିର ତୁଳନା ଦେବାପାଇଁ କବି କୁମୁଦ ଓ ଚନ୍ଦ୍ର, କମଳ ଓ ସୂର୍ଯ୍ୟ, କୁସୁମ ଓ ମଧୁକରର ପ୍ରୀତିକୁ ଗ୍ରହଣ କରିଛନ୍ତି । କିନ୍ତୁ ଏମାନଙ୍କର ପ୍ରୀତିରେ ଐକାନ୍ତିକତା ନାହିଁ । କୁମୁଦ ଓ ଚନ୍ଦ୍ର ପ୍ରୀତିରେ ଦୋଷ ହେଉଛି ଯେ ଜଣେ ଆକାଶରେ ଓ ଆଉ ଜଣେ ଜଳରେ । କୁମୁଦ ଥାଉଁ ଥାଉଁ ଚନ୍ଦ୍ର ତାରାମାନଙ୍କ ସହ ପ୍ରୀତି କରେ । କମଳ ଓ ସୂର୍ଯ୍ୟ ପ୍ରୀତିର ଦୋଷ ହେଉଛି ଯେ କମଳ ଜଳ ତ୍ୟାଗ କରିବାକ୍ଷଣି ସୂର୍ଯ୍ୟ ତାପରେ ଦଗ୍ଧ ହୁଏ । କୁସୁମ ଓ ମଧୁକର ପ୍ରୀତିର ଦୁର୍ବଳତା ହେଉଛି ଯେ ମଧୁକର କୁସୁମରୁ ମଧୁପାନ କରିବା ପରେ ତାକୁ ତ୍ୟାଗ କରି ଅନ୍ୟ ଫୁଲ ପାଖକୁ ଚାଲିଯାଏ । ପୁଣି ଫେରିବା କଥାକୁ ସେ ପସନ୍ଦ କରେନାହିଁ । ତା ନିକଟରେ କମଳ ଓ କୁଟଜର କୌଣସି ପାର୍ଥକ୍ୟ ନାହିଁ । ଅଥଚ ରାଧାକୃଷ୍ଣ ପ୍ରେମ ଏହି କ୍ଷଣିକତାରୁ ମୁକ୍ତ । ସେମାନେ କେବଳ ଏ ଜନ୍ମରେ ନୁହନ୍ତି, ଯୁଗ ଯୁଗ ଧରି ଲୀଳା କରିଆସୁଛନ୍ତି । ସବୁ ଯୁଗରେ ସେ ଅଭିନ୍ନ । ଦୀନକୃଷ୍ଣ ରାଧାକୃଷ୍ଣ ଅଭିନ୍ନତାରେ ଦୃଢ଼ ବିଶ୍ୱାସ ରଖି ଲେଖିଛନ୍ତି,

କୋଟି କୋଟି କଳ୍ପାନ୍ତେ ତୋ ଅଙ୍ଗ ସଙ୍ଗ ।
କେତେବେଳେ ହେଁ ହୋଇନାହିଁ ବିଭଙ୍ଗରେ । ୨୦-୧୩ ।

୫- ଗୋପୀ ଗର୍ବ ତଥା ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ହେବା

ଗୋପୀ-କୃଷ୍ଣ ସମ୍ବାଦ ପରେ ଶ୍ରୀକୃଷ୍ଣ ଗୋପୀମାନଙ୍କ ସହ ରମଣ କେଳି କରିଥିବା ଭାଗବତରେ ବର୍ଣ୍ଣିତ । ଶ୍ରୀକୃଷ୍ଣଙ୍କ ସହ ସୁରତି କରିବାର ସୌଭାଗ୍ୟ ପାଇ ଗୋପୀମାନେ ଗର୍ବୋତ୍‌ଫୁଲ୍ଲ ହୋଇ ଉଠିଲେ । ସେମାନଙ୍କର ଗର୍ବ ନିବାରଣ କରିବାପାଇଁ ଶ୍ରୀକୃଷ୍ଣ ପ୍ରଥମଥର ପାଇଁ ଅନ୍ତର୍ଦ୍ଧାନ ହୁଅନ୍ତି । ଭାଗବତରେ ଦ୍ୱିତୀୟଥର ଅନ୍ତର୍ଦ୍ଧାନ ହେବା କଥା ଅଛି । ଏଥର ଶ୍ରୀକୃଷ୍ଣ କୌଣସି ଗୋପୀବିଶେଷର ସ୍କନ୍ଧାରୋହଣ ଇଚ୍ଛା ପୂର୍ଣ୍ଣ କରିବାପାଇଁ ଅନ୍ତର୍ଦ୍ଧାନ ହୁଅନ୍ତି । ବ୍ରହ୍ମବୈବର୍ତ୍ତପୁରାଣ (କୃଷ୍ଣ ଜନ୍ମଖଣ୍ଡ ୨୯-୧୨, ୫୨-୪)ରେ ମଧ ଦୁଇଥର ଅନ୍ତର୍ଦ୍ଧାନ ହୋଇଛନ୍ତି । ଦୀନକୃଷ୍ଣଙ୍କ ରସକଲ୍ଲୋଳରେ କେବଳ ଗୋପୀବିଶେଷ ସହ ଅନ୍ତର୍ଦ୍ଧାନ ହେବା ବର୍ଣ୍ଣିତ । ରାଧାକୃଷ୍ଣ କେଳି ପରେ ରାଧାଙ୍କଠାରୁ ବିଦାୟ ନେଇ ଯାଉଥିବାବେଳେ କୌଣସି ଗୋପୀ ସହ ଶ୍ରୀକୃଷ୍ଣ ଅନ୍ତର୍ହିତ ହୋଇଯାନ୍ତି । ଭାଗବତରେ 'ଅନୟା ରାଧିତୋନୂନଂ' ଦ୍ୱାରା ବ୍ୟଞ୍ଜିତ ଗୋପୀବିଶେଷକୁ

ବ୍ରହ୍ମବୈବର୍ତ୍ତକାର ରାଧା ନାମ ପ୍ରଦାନ କରିଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତରେ 'ସେହି ଗୋପୀ ହେଉଛନ୍ତି ବୃନ୍ଦାବତୀ । ଦୀନକୃଷ୍ଣ ସଂସ୍କୃତ ଭାଗବତର ପରଂପରାକୁ ଅନୁସରଣ କରି ଗୋପୀବିଶେଷକୁ କୌଣସି ନାମଦ୍ୱାରା ଚିହ୍ନିତ କରିନାହାନ୍ତି । ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନରେ ଗୋପୀମାନେ ବିରହ ବେଦନାରେ ବ୍ୟଥିତ ହୋଇ ଶ୍ରୀକୃଷ୍ଣଙ୍କୁ ପ୍ରତ୍ୟେକ କୁଞ୍ଜରେ ଅନ୍ୱେଷଣ କରିଛନ୍ତି । ପଥ ମଧ୍ୟରେ କଦମ୍ବ, କରୁଣା, ତମାଳ ଓ ଅଶୋକ ପ୍ରଭୃତି ବୃକ୍ଷ ସହ ସାକ୍ଷାତ ହୋଇଛି । ସମସ୍ତେ ଶ୍ରୀକୃଷ୍ଣଙ୍କର ପରିଚିତ । କାଳେ ଶ୍ରୀକୃଷ୍ଣ ଗଲାବେଳେ ଦେଖିଥିବେ, ସେଥିପାଇଁ ଗୋପୀମାନେ ପ୍ରତ୍ୟେକ ବୃକ୍ଷକୁ ସେମାନଙ୍କର ଦୁଃଖ ଜଣାଇ କାତର ସ୍ୱରରେ ଶ୍ରୀକୃଷ୍ଣଙ୍କର ବାର୍ତ୍ତା ପଚାରିଛନ୍ତି । ସଂସ୍କୃତ ଭାଗବତର ଦଶମସ୍କନ୍ଧର ତ୍ରିଂଶ ଅଧ୍ୟାୟର ଅନୁକରଣରେ ଦୀନକୃଷ୍ଣ ଗୋପୀମାନଙ୍କ ବିରହ ଦଶା ବର୍ଣ୍ଣନା କରିଥିଲେ ହେଁ ଅଭିବ୍ୟକ୍ତିରେ ନୂତନତା ଅଛି । ଭାଗବତର ବର୍ଣ୍ଣନାଠାରୁ ଏହା ସମ୍ପୂର୍ଣ୍ଣ ଭିନ୍ନ । ଦୀନକୃଷ୍ଣ ବିରହିଣୀ କାମାତୁରା ଗୋପୀମାନଙ୍କ ହୃଦୟ ବେଦନା ଚିତ୍ରଣ କଲାବେଳେ କେବଳ କାମର ବିଭିନ୍ନ ଦଶା ବର୍ଣ୍ଣନା ନ କରି ରାଗାନୁଗା ଭକ୍ତର କେତୋଟି ଗୁଣ ପ୍ରକାଶ କରିଛନ୍ତି । ସେମାନେ ଶ୍ରୀକୃଷ୍ଣଙ୍କ ଗୁଣ ସ୍ମରଣ କରି, ସ୍ନେହ ମନେପକାଇ (୨୧-୨୪), ନାମ ଜପକରି (୨୧-୨୪), ମନୋହର ମୂର୍ତ୍ତିକୁ ଧ୍ୟାନ କରି (୨୧-୨୫), ତାଙ୍କଠାରେ ମନ ସମର୍ପଣ କରି (୨୧-୨୫), ତାଙ୍କରି ପାଇଁ ବିକଳ ହୋଇଛନ୍ତି ।

ଏତିକିବେଳେ ଶ୍ରୀକୃଷ୍ଣଙ୍କ ସହ ଅନ୍ତର୍ଦ୍ଧାନ ହୋଇଥିବା ଗୋପୀବିଶେଷ ସହ ସେମାନଙ୍କର ସାକ୍ଷାତ ହୁଏ । ସେହି ଭାଗ୍ୟବତୀ ଗୋପୀକୁ ଦେଖି ସେମାନଙ୍କର ଗୋଟିଏ ମାତ୍ର ପ୍ରଶ୍ନ 'କାହିଁ ରଖିଛୁ ମୋହନ । କହ ବହନ ସଜନି ।' ସମସ୍ତେ ତାର ଭାଗ୍ୟକୁ ପ୍ରଶଂସା କରିଛନ୍ତି । ସେ ଜାଣିଥିବା ମନ୍ତ୍ର ଓ କରିଥିବା ତପସ୍ୟା ସମ୍ବନ୍ଧରେ ଜାଣିବାପାଇଁ ସମସ୍ତଙ୍କର ଉଦଗ୍ରୀବତା ପ୍ରକାଶ ପାଇଛି । ତା ଦୁଃଖ ଶୁଣିବା ପରେ କୃଷ୍ଣ ଅଭିସାରୀ କୁମାରୀଙ୍କର କାତରତା ଆହୁରି ବୃଦ୍ଧି ପାଇଛି । ଦୀନକୃଷ୍ଣ ଅତି ତନ୍ମୟତାର ସହିତ ବିରହୀ ଗୋପୀମାନଙ୍କର ମନର ସ୍ଥିତି ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କୁ ବଶ କରିପାରି ନ ଥିବା ଯୋଗୁଁ ସେମାନେ ସେମାନଙ୍କର ଅଙ୍ଗ-ସୌନ୍ଦର୍ଯ୍ୟକୁ ଧିକ୍କାର କରି କହିଛନ୍ତି,

କେ ବୋଲେ ଭାଗ୍ୟ ନ ଥିଲେ । ଭାବ ନ ରହଇ ଭଲେ ।
କି ହେବ ସୁବର୍ଣ୍ଣ ଫୁଲେ । ବାସ ନ ଥିଲେ । ସଜନି ।

\+ \+ \+

କନକ କୁମ୍ଭ ସମାନ ।    କୁଚରୁ କି ପ୍ରୟୋଜନ ।

ନ ହରିଲା ଯେବେ ମନ । ମୋହନ ମନ । ସଜନି । ୨୨-୧୪,୧୬

୬-ଶ୍ରୀକୃଷ୍ଣଙ୍କର ଆତ୍ମପ୍ରକାଶ

ଗୋପୀମାନଙ୍କ କାରୁଣ୍ୟରେ କୃପାପରବଶ ହୋଇ 'ଭକ୍ତମାନ ଉଦ୍ଧାରଣ । ଗତିକାରଣ । ମୋହନ' କାନନ ମଧ୍ୟରୁ ବାହାର ହୋଇଛନ୍ତି । ଶ୍ରୀକୃଷ୍ଣଙ୍କ ଦର୍ଶନରେ ଗୋପୀମାନଙ୍କ ଆନନ୍ଦର ସୀମା ନାହିଁ । 'କୃଷ୍ଣଙ୍କୁ ଦେଖି ଗୋପୀ ହେଲେ ଯାହା, କେ କହିବ ଅବା ବଚନେ ତାହା ।' ଦୀନକୃଷ୍ଣ ଲେଖିଛନ୍ତି,

କଳାକର ଦର୍ଶନ । କଲେ କୁମୁଦ ବନ ।

କୋଟିନିଧି ପାଇଲା । ମହାଦରିଦ୍ର ଜନ ବା ।

କମଳ ଦେଖିଲା ରବି ମଣ୍ଡଳ । କୋକିଳ ପାଇଲା ବସନ୍ତ କାଳ ।

କୃଷ୍ଣ ମେଘ ଉଦୟେ । କେକୀ ଯେମନ୍ତ ହୋଏ ।

କୃଷ୍ଣ ଚାହିଁ ଗୋପୀଏ ସେହି ପ୍ରକାରେ ହୋଏ ସେ । (୨୩-୧,୨)

ଭାଗବତକାର ଏହି ଅବସରରେ ଯମୁନା ତଟର ବର୍ଣ୍ଣନା କରିଛନ୍ତି । ରସକଲ୍ଲୋଳରେ ଯମୁନା ତଟରେ ଶ୍ରୀକୃଷ୍ଣ ଆତ୍ମପ୍ରକାଶ କରିଥିବା ସୂଚିତ ହୋଇଥିଲେ ହେଁ ଯମୁନା ତଟର ବର୍ଣ୍ଣନା ନାହିଁ । କୃଷ୍ଣ-ସୁଭଗା ଯମୁନାକୁ ସେମାନେ ଶ୍ରୀକୃଷ୍ଣଙ୍କ ବାର୍ତ୍ତା ପଚାରିଛନ୍ତି ଓ କାମ ବିକଳେ ଯମୁନାର ଜଳରେ ପ୍ରବେଶ କରିଛନ୍ତି ।

୭-ସୁରତି ଲୀଳା

ଯମୁନାତଟରେ ଶ୍ରୀକୃଷ୍ଣ ପ୍ରକଟ ହେବା ପରେ ଗୋପୀମାନଙ୍କ ସହ ରାସଲୀଳା କରିଥିବା ଭାଗବତରେ ବର୍ଣ୍ଣିତ । ଦୀନକୃଷ୍ଣ ରାସଲୀଳାକୁ ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ହେବା ପୂର୍ବରୁ ବର୍ଣ୍ଣନା କରିଥିବାରୁ ଶ୍ରୀକୃଷ୍ଣଙ୍କ ଆତ୍ମପ୍ରକାଶ ହେବା ପରେ ରାସଲୀଳାର ପୁନର୍ବାର ବର୍ଣ୍ଣନା କରିନାହାନ୍ତି । ସେ ଏହାକୁ ସୁରତି ଲୀଳାରେ ପରିଣତ କରିଛନ୍ତି । ରାସଭୂମିରୁ ଗୋପୀମାନଙ୍କୁ ବିଦାୟ ଦେବାବେଳେ ଶ୍ରୀକୃଷ୍ଣଙ୍କର ଉକ୍ତି ହେଉଛି,

କୁଞ୍ଜବନକୁ ଆସୁଥିବୁ ନିତି । କରୁଥିବା ତୋର ମୋର ସୁରତି ।

ଦୀନକୃଷ୍ଣ ରାସଲୀଳା ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀକୃଷ୍ଣ ବହୁରୂପ ଧାରଣ କରିଥିବା ବର୍ଣ୍ଣନା କରିନାହାନ୍ତି । ରାସଲୀଳାରେ ଶ୍ରୀକୃଷ୍ଣ ଏକା । ଅଥଚ କାମ ସମର ପାଇଁ ସେ  କାୟା କଲେ ବହୁତ । ବସନ୍ତଲୀଳା କାଳରେ ମଧ୍ୟ ସେ ଗୋପୀମାନଙ୍କୁ

ବୋଧିବା ପାଇଁ ବହୁ ରୂପ ଧାରଣ କରିଥିଲେ । 'କାୟାକୁ ହରି ବହୁତକରି ଗୋପୀଙ୍କି ତେହ୍ନେ ବୋଧି ।' (୧୪-୧୪) । ଭାଗବତରେ ମଧ୍ୟ ଶ୍ରୀକୃଷ୍ଣ ଅନେକ ରୂପ ଧାରଣ କରି ରାସଲୀଳା କରିଥିଲେ । 'କୃତ୍ୱା ତାବନ୍ତମାତ୍ମାନଂ ଯାବତୀଗୋପ ଯୋଷିତଃ ।' (୧୦,୩୦-୨୦) । ବ୍ରହ୍ମବୈବର୍ତ୍ତପୁରାଣରେ ଶ୍ରୀକୃଷ୍ଣଙ୍କ ବହୁରୂପତାର ଆବଶ୍ୟକତା ନାହିଁ । କାରଣ ସେଥିରେ ସମାନ ସଂଖ୍ୟକ ଗୋପାଳ ବାଳକ ରାସରେ ଭାଗ ନେଇଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତରେ ଷୋଳସହସ୍ର ଗୋପୀ ରାସ ମଣ୍ଡଳରେ ଉପସ୍ଥିତ ଥିବା କୁହାଯାଇଛି । ସଂ. ଭାଗବତରେ ଗୋପୀମାନଙ୍କର କୌଣସି ନିର୍ଦ୍ଦିଷ୍ଟ ସଂଖ୍ୟା ନାହିଁ । ଦୀନକୃଷ୍ଣ ମଧ୍ୟ ଗୋପୀମାନଙ୍କ ସଂଖ୍ୟାର ଉଲ୍ଲେଖ କରିନାହାନ୍ତି ।

ରାସଲୀଳା ବର୍ଣ୍ଣନା ପ୍ରସଙ୍ଗରେ ସମ୍ଭୋଗ ବର୍ଣ୍ଣନା କରିବା ବହୁ କବିଙ୍କ କାବ୍ୟରେ ଦେଖିବାକୁ ମିଳେ । ଦୀନକୃଷ୍ଣ ରାସଲୀଳାର ଦିବ୍ୟତାକୁ ଅଦିବ୍ୟ ଲୀଳାଠାରୁ ଅଲଗା କରିବାପାଇଁ ଓ ରାସଲୀଳାର ମହିମାକୁ କଳୁଷିତ ନ କରିବାପାଇ ସୁରତିଲୀଳାକୁ ରାସଲୀଳାଠାରୁ ସ୍ୱତନ୍ତ୍ରକରି ବର୍ଣ୍ଣନା କରିଛନ୍ତି । ଦୀନକୃଷ୍ଣ ଶ୍ରୀକୃଷ୍ଣ ଓ ଗୋପୀଙ୍କ ସୁରତି କ୍ରୀଡ଼ାକୁ କାମସମରର ରୂପ ଦାନ କରିଛନ୍ତି । ଏହି ସମରରେ ଗୋପୀମାନଙ୍କର ଅଙ୍ଗ ହେଉଛି ସୁବର୍ଣ୍ଣ ରଥ ଓ ଶ୍ରୀକୃଷ୍ଣ ହେଉଛନ୍ତି, ରଥୀ । "କନକଗୋରୀ ଗୋପୀଙ୍କ ଶ୍ରୀଅଙ୍ଗ । କଲେ ବିଚିତ୍ର ସୁବର୍ଣ୍ଣ ଶତାଙ୍ଗ । କୃଷ୍ଣ ହୋଇଲେ ରଥୀ । କଉଁ ଉପମା ତଥି । କହି ବସିଲେ ଏଥି କଥା ହୋଇବ ପୋଥି ସେ ।" ୨୩-୮ କାମ ସମର ବର୍ଣ୍ଣନା କରିବା ପ୍ରସଙ୍ଗରେ ଦୀନକୃଷ୍ଣ ସମରର ପୂର୍ଣ୍ଣ ବାତାବରଣ ସୃଷ୍ଟି କରିବାକୁ ସମର୍ଥ ହୋଇଛନ୍ତି । ଗୁଜରାଟର କବି ନରସୀ ମଧ୍ୟ ଦାନଲୀଳା ବର୍ଣ୍ଣନା କଲାବେଳେ ଗୋପୀ ଓ ଶ୍ରୀକୃଷ୍ଣଙ୍କ କଳହକୁ ସୁରତି ସଂଗ୍ରାମର ରୂପ ପ୍ରଦାନ କରିଛନ୍ତି । ବଳରାମଙ୍କ ସହ ବିଶାଖା ଓ କୃଷ୍ଣଙ୍କ ସହ ରାଧାଙ୍କର ଯୁଦ୍ଧ ବର୍ଣ୍ଣନାରୁ ଗୋଟିଏ ଦୃଶ୍ୟ ନିମ୍ନରେ ପ୍ରଦତ୍ତ ହୋଇଛି : ଯଥା ବିଶାଖା ଓ ବଳରାମଙ୍କ ଯୁଦ୍ଧ-

ପିଣ୍ଡ ଦ୍ୱୟ ପୀସତାଂ । ମନ ମାଂ ହାସତାଂ, ତ୍ରାହେ ତ୍ରାହେ କରତୀ ବିଶାଖା ।
ଚୁମ୍ବନେ ଚୋକତା, ସପ୍ତବିଧି ଘୋଳତା, ଅଷ୍ଟ ଆଲିଙ୍ଗନେ ଚୋଳୀଂ ନାଖ୍ୟାଂ ।
ଅଷ୍ଟାଦଶ ହାବ ମାଂ, ବଳି ପଞ୍ଚଭାବ ମାଂ, ପକଡ଼ତାଂ ଦାବ ମାଂ ଦାରୁପାୟା ।
ନବହବାଂକୁକିୟେ, କୋଇଦି ନବ ମୁକିୟେ, ଭ୍ରାତ ନରସୈନୋ ବହୁପୀଡ଼ାୟ ।

ଦୀନକୃଷ୍ଣ ମଧ୍ୟ ଲେଖିଛନ୍ତି,

କେତେବେଳେ ଭିଡ଼ନ୍ତି । ମାଳ ପ୍ରାୟ ଚଢ଼ନ୍ତି

କଉତୁକେ ଗଡ଼ନ୍ତି । କରଘାତେ ପୀଡ଼ନ୍ତି ସେ । (୨୩-୧୨)

ଅନ୍ୟସ୍ଥଳରେ,

କରି ଅଷ୍ଟବିଧି କରଜ କ୍ଷତ । କଲେ ଦ୍ୱାଦଶ ଆଲିଙ୍ଗନ ଜାତ

କେତେ ରୂପେ ଚୁମ୍ବନ । କେତେ ସ୍ଥାନେ ପ୍ରଦାନ ।

କହିବାକୁ ସେମାନ । କଳିନାହିଁ ମୁଁ ମନ ହେ । (୨୩-୧୮)

ରତିକୁ ସଂଗ୍ରାମରୂପେ କଳ୍ପନା କରିବାର ପରଂପରା ଅତି ପ୍ରାଚୀନ । କହ୍ନପାଙ୍କ ରଚିତ ଗୋଟିଏ ଦୋହାରୁ ଏହାର ସୂଚନା ମିଳେ -

ନାଡ଼ିଶକ୍ତି ଦିଢ଼ ଧରିଆ ଖାଟେ ।

ଅହ୍ନା ଡମରୁ ବଜଇ ବିରନାଟେ ।

କାହ୍ନ କପାଲୀ ଯୋଇ ପଇଂ ଅଚାରେ ।

ଦେହ ନ ଅରି ବିହରଇ ଏକକାରେ ।

ଏହାର ଅର୍ଥ ହେଉଛି, ନାରୀରୂପୀ ଶକ୍ତିକୁ ଦୃଢ଼କରି ଧରି ଖଟ ଉପରେ ପକେଇ ଦିଆଗଲା । ଅନହଦରୂପୀ ଡମରୁଦ୍ୱାରା ବୀରନାଦ ହେବାକୁ ଲାଗିଲା । କହ୍ନକପାଳୀ କ୍ରିୟା କରିବାପାଇଁ ତତ୍ପର ହେଲା । ସେ ଦେହରୂପୀ ନଗରୀରେ ବିହାର କରି ଏକାକାର ହୋଇଗଲା । କାହ୍ନପାଙ୍କ 'ବଜଇ ବିରନାଟ' ସହ ଦୀନକୃଷ୍ଣଙ୍କ 'କୂଜିତ ବୀରତାକହିଁ ଶୁଭିଲା ।' (୨୩-୧୦)ର ଅପୂର୍ବ ସାଦୃଶ୍ୟ ବିଦ୍ୟମାନ ।

ହିନ୍ଦୀ ସାହିତ୍ୟର ରାସୋକାବ୍ୟମାନଙ୍କରେ ବୀର ଓ ଶୃଙ୍ଗାର ରସର ସାମଗ୍ରୀ ପ୍ରସ୍ତୁତ ଓ ଅପ୍ରସ୍ତୁତ ଭାବେ ଆସିଛନ୍ତି । କାରଣ ହେଉଛି ରାସୋକାବ୍ୟକାର ଶୃଙ୍ଗାର ବିବିକ୍ତ ବୀର ବା ବୀର ବର୍ଜିତ ଶୃଙ୍ଗାରକୁ ଅପୂର୍ଣ୍ଣ ଜ୍ଞାନ କରୁଥିଲେ । ବୀରରସରେ ଅପ୍ରସ୍ତୁତ ରୂପରେ ପ୍ରଯୁଜ୍ୟମାନ କୁଳଟା ତଥା ମୁଗ୍ଧା କୁଳବଧୂମାନଙ୍କର କାର୍ଯ୍ୟ ଅତି ମନୋହର ।

(କ) ଯୋଂ ଆତୁର ରତ୍ତେ ଖଗ-ମଗ୍‌ଗଂ ।

ଜ୍ୟୋଂ କୁଳଟା ନ ଛୈଲ ମନ ଲଗ୍‌ଗଂ ।

(ସେ ତରବାରୀ ଦ୍ୱାରା ଆତୁର ହୋଇ ଏପରି ଅନୁରକ୍ତ ଯେପରି ଛଇଳ ପୁରୁଷର ମନ କୁଳଟାଠାରେ ନିମଜ୍ଜିତ ଥାଏ ।)

(ଖ) ସାର ସାର ମଦ୍‌ଚୀ କହର, ଦୋଉ ଦଳନି ସିର ସଂଧି ।
ପ୍ରୌଢ଼ା ନାୟକ-ଛୟଳ ରମି, ପ୍ରାତ ନ ବଂଛୈସଂଧି ।
(ଦୁଇ ଦଳରେ ଘୋର ଯୁଦ୍ଧ ହେଉଛି, ସେମାନେ ସନ୍ଧି ଚାହୁଁ ନାହାନ୍ତି, ଯେପରି କି ପ୍ରୌଢ଼ା ନାୟିକା ଓ ଛଇଳ ନାୟକ ରମଣରେ ପ୍ରଲିପ୍ତ ହୋଇ ପ୍ରାତଃକାଳର ଇଚ୍ଛା କରିନଥାନ୍ତି ।)

ମଥୁରାଲୀଳା

ରସକଲ୍ଲୋଳରେ ଚଉତିରିଶିଟି ଛାନ୍ଦ । ଲେଖାର ପରିମାଣକୁ ବିଷୟବସ୍ତୁର ମାନଦଣ୍ଡରୂପେ ଗ୍ରହଣ କଲେ ରସକଲ୍ଲୋଳର ଦ୍ୱିତୀୟରୁ ଷଷ୍ଠଛାନ୍ଦ ପର୍ଯ୍ୟନ୍ତ ବ୍ରଜଲୀଳା, ଷଷ୍ଠଛାନ୍ଦରୁ ଚତୁର୍ବିଂଶ ଛାନ୍ଦ ପର୍ଯ୍ୟନ୍ତ ବୃନ୍ଦାବନ ଲୀଳା ଓ ଅବଶିଷ୍ଟ ଛାନ୍ଦଗୁଡ଼ିକରେ ମଥୁରାଲୀଳା ବର୍ଣ୍ଣିତ । ବ୍ରଜ ଓ ବୃନ୍ଦାବନଲୀଳାକୁ ସ୍ୱତନ୍ତ୍ରରୂପେ ଗ୍ରହଣ ନ କରି କେବଳ ଗୋପୀଲୀଳାରୂପେ ବିଚାର କଲେ, ରସକଲ୍ଲୋଳର ତେଇଶିଟି ଛାନ୍ଦରେ ଗୋପଲୀଳା ଓ ଦଶୋଟି ଛାନ୍ଦରେ ମଥୁରଲୀଳା । ପୂର୍ବୋକ୍ତ ବିଭାଗରୁ ଜଣାଯାଏ ଯେ କବି ଦୀନକୃଷ୍ଣ ମଥୁରାଲୀଳା ଅପେକ୍ଷା ଗୋପଲୀଳାକୁ ବିଶେଷ ମହତ୍ତ୍ୱ ପ୍ରଦାନ କରିଛନ୍ତି । ବୈଷ୍ଣବ ପୂର୍ବାଚାର୍ଯ୍ୟମାନଙ୍କ ମତରେ ଶ୍ରୀକୃଷ୍ଣ ଦ୍ୱାରକାରେ ପୂର୍ଣ୍ଣ, ମଥୁରାରେ ପୂର୍ଣ୍ଣତର ଓ ଗୋପରେ ପୂର୍ଣ୍ଣତମ । ସେଥିପାଇଁ ଗୋପଲୀଳା ବୈଷ୍ଣବ କବି ଦୀନକୃଷ୍ଣଙ୍କ ନିକଟରେ ଏତେ ଆଦୃତ ।

ବୈଷ୍ଣବ କବିମାନେ ଶ୍ରୀକୃଷ୍ଣଙ୍କ ଗୋପଲୀଳାକୁ ମହତ୍ତ୍ୱ ଦେଇଥିଲେ ହେଁ ମଥୁରାଲୀଳା ଅବହେଳିତ ହୋଇନାହିଁ । ମଥୁରାଲୀଳାର ବିଷୟବସ୍ତୁକୁ ଗ୍ରହଣ କରି ଦୀନକୃଷ୍ଣଙ୍କ ମଥୁରାମଙ୍ଗଳ ଓ ଭକ୍ତଚରଣଙ୍କ ମଥୁରାମଙ୍ଗଳ କାବ୍ୟ ରଚିତ । ବଳରାମଦାସ ଭାଗବତର ଛୟାଳିଶି ଓ ସତଚାଳିଶି ଅଧ୍ୟାୟର କଥାକୁ ଗ୍ରହଣ କରି ଉଦ୍ଧବ ଗୀତା ନାମକ ସ୍ୱତନ୍ତ୍ର ଗ୍ରନ୍ଥ ରଚନା କରିଛନ୍ତି । କୃଷ୍ଣଦାସ, ଦୀନକୃଷ୍ଣ ଦାସ, ଭୂପତି ପଣ୍ଡିତ ପ୍ରଭୃତି ଉଦ୍ଧବ ଗୋପୀ ସମ୍ବାଦକୁ ଚଉତିଶାରେ ରୂପବନ୍ତ କରିଛନ୍ତି । ପୂର୍ବୋକ୍ତ ପ୍ରତ୍ୟେକ ଗ୍ରନ୍ଥରେ ଭାଗବତହିଁ ମୁଖ୍ୟ ଆଧାର ଗ୍ରନ୍ଥ । ଦୀନକୃଷ୍ଣ ମଥୁରାଲୀଳାର ଉପକ୍ରମରେ କହିଛନ୍ତି,

କର ସାଧୁ ବିବେକ ଜନେ ମନକୁ ଏକ
କୃଷ୍ଣ କଥାକୁ ମନ ଦେଇ
କଂସ ତମକୁ ହଂସ ହେବଯେ ହୃଷୀକେଶ
ସେକଥା କିଛି କହିବଇଁ ହେ, ଆହେ ଜନେ । (୨୫-୧)

'କିଛି କହିବଇଁ' ଉକ୍ତିରୁ ମଥୁରାଲୀଳା ପ୍ରତି କବିଙ୍କ ଦୃଷ୍ଟିକୋଣ ଅତି ସ୍ପଷ୍ଟ। ଆଲୋଚନାର ସୁବିଧା ଦୃଷ୍ଟିରୁ ମଥୁରାଲୀଳାର ବିଷୟବସ୍ତୁକୁ ନିମ୍ନଲିଖିତ ଭାବେ ବିଭକ୍ତ କରାଯାଇଛି :

(କ) ଅକ୍ରୂରର ବ୍ରଜପୁର ଗମନ ।

(ଖ) ଶ୍ରୀକୃଷ୍ଣଙ୍କର ମଥୁରା ପ୍ରବେଶ (ମଥୁରା ନାରୀମାନଙ୍କର ବିଭ୍ରମ)। ରଜକ ବଧ, ଗନ୍ଧାଇତ ଓ ମାଳୀ ଉଦ୍ଧାର, କୁବ୍‌ଜା ଉପରେ କୃପା ପ୍ରକାଶ ଓ ଧନୁ ଭଗ୍ନ ।

(ଗ) ରଙ୍ଗ ସଭାରେ ଶ୍ରୀକୃଷ୍ଣଙ୍କର ପ୍ରବେଶ-କୁବଳୟାହସ୍ତୀ ଓ ମାହୁନ୍ତ ବଧ, ଚାଣୁର ଓ ମୁଷ୍ଟିକ ବଧ-କଂସ ବଧ ।

(ଘ) କୁବ୍‌ଜା ପୁରରେ ଶ୍ରୀକୃଷ୍ଣଙ୍କର ପ୍ରବେଶ ।

(ଙ) ଉଦ୍ଧବଙ୍କର ବ୍ରଜଗମନ-ଉଦ୍ଧବ-ଗୋପୀ ସମ୍ବାଦ, ଉଦ୍ଧବଙ୍କର ପ୍ରତ୍ୟାଗମନ ।

ଏସବୁ ଲୀଳାମଧ୍ୟରୁ ରଜକ ବଧ, ଗନ୍ଧାଇତ ଓ ମାଳୀ ଉଦ୍ଧାର, କୁବ୍‌ଜା ଉପରେ କୃପା, ଧନୁଭଗ୍ନ, କୁବଳୟା ହସ୍ତୀ ଓ ମାହୁନ୍ତ ବଧ, ଚାଣୁର, ମୁଷ୍ଟିକ ବଧ ଓ କଂସ ବଧ ଅଲୌକିକ ଓ ଅନ୍ୟାନ୍ୟ ଲୀଳା ଲୌକିକ ।

## (କ) ଅକ୍ରୂରର ବ୍ରଜପୁର ଗମନ

ଶ୍ରୀମଦ୍‌ଭାଗବତରେ ନାରଦଙ୍କ ପରାମର୍ଶ ଓ ବ୍ରହ୍ମବୈବର୍ତ୍ତପୁରାଣରେ ଏକ ଭୟଙ୍କର ସ୍ୱପ୍ନ ଦ୍ୱାରା ପ୍ରେରିତ ହୋଇ କଂସ ଅକ୍ରୂରକୁ ବ୍ରଜପୁର ଯିବାପାଇଁ ଆଦେଶ ଦିଏ । ରସକଲ୍ଲୋଳରେ କଂସ କାହାରି ଦ୍ୱାରା ପ୍ରେରିତ ହୋଇଥିବା ପ୍ରସଙ୍ଗ ନାହିଁ । କଂସ ମନରେ ସବୁବେଳେ ଶ୍ରୀକୃଷ୍ଣଙ୍କ ଭୟ । ରାତିଦିନ ତାଙ୍କରି ଚିନ୍ତା । ଶ୍ରୀକୃଷ୍ଣଙ୍କ ଡରହିଁ ଅକ୍ରୂରକୁ ଗୋପପୁର ପଠାଇବାର ମୂଳ ହେତୁ । ପ୍ରତ୍ୟାବର୍ତ୍ତନ କାଳରେ ଅକ୍ରୂର ଜଳ ମଧ୍ୟରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିଥିବା ପ୍ରସଙ୍ଗ ଭାଗବତରେ ଅଛି । ରସକଲ୍ଲୋଳକାର ଏହି ପ୍ରସଙ୍ଗକୁ ସମ୍ପୂର୍ଣ୍ଣରୂପେ ପରିହାର କରିଛନ୍ତି । ଭାଗବତ ପରି ରସକଲ୍ଲୋଳରେ ଅକ୍ରୂର ଶ୍ରୀକୃଷ୍ଣଙ୍କ ଭକ୍ତ ରୂପରେ ଚିତ୍ରିତ ।

## (ଖ) ଶ୍ରୀକୃଷ୍ଣଙ୍କ ମଥୁରା ପ୍ରବେଶ

ରାମକୃଷ୍ଣଙ୍କ ମଥୁରା ପ୍ରବେଶକାଳୀନ ଦୃଶ୍ୟ ରସକଲ୍ଲୋଳରେ ଅତ୍ୟନ୍ତ ଜୀବନ୍ତ ଭାବରେ ପ୍ରକାଶ ପାଇଛି । ରାମକୃଷ୍ଣଙ୍କ ଦର୍ଶନରେ ମଥୁରାପୁରର

ଲୋକେ ଆନନ୍ଦିତ ହୋଇଛନ୍ତି । ସେମାନେ କଉତୁକରେ ରାମକୃଷ୍ଣଙ୍କୁ ଦେଖୁଛନ୍ତି । ସତେ ଯେପରି ଗଙ୍ଗା ଯମୁନା ଯୁଗଳ ତୀର୍ଥ, ମଥୁରା ଲୋକଙ୍କୁ କୃତାର୍ଥ କରିବାକୁ କଂସରାଜାଙ୍କ ଘଣ୍ଟାପଥରେ ପ୍ରବାହିତ ହୋଇ ଆସୁଛି । ରାମକୃଷ୍ଣଙ୍କ ଦର୍ଶନ ପାଇଁ ମଥୁରାର ଲୋକେ ମାଡ଼ି ପଡ଼ିଲା ପରି ମଥୁରାର କାମିନୀମାନେ କେଶବାସ ଅସମ୍ଭାଳ କରି ଧାଇଁଛନ୍ତି । ମଥୁରା ନାରୀମାନଙ୍କର ବିଭ୍ରମ ବର୍ଣ୍ଣନା ଶ୍ରୀମଦ୍‌ଭାଗବତ (୪୧ଅ, ୨୪-୩୧)ର ଅନୁକରଣରେ ରଚିତ ହୋଇଥିଲେ ହେଁ ରସକଲ୍ଲୋଳର ବିସ୍ତୃତ ବର୍ଣ୍ଣନା ଭାଗବତରେ ନାହିଁ । ରଜକ, ଗନ୍ତାଇତ, ମାଳାକାର ଓ କୁବ୍‌ଜା ପ୍ରଭୃତି ପ୍ରସଙ୍ଗର  ବର୍ଣ୍ଣନାରେ ରସକଲ୍ଲୋଳର ପାର୍ଥକ୍ୟ ଅତି ସାମାନ୍ୟ । ରଜକ ବଧ ପ୍ରସଙ୍ଗରେ ଦୀନକୃଷ୍ଣ କମ୍ବୁଘୋଷ ଶୁଣି ରଜକକୁ ଅନାଇଁ ଥିବା ଉଲ୍ଲେଖ କରିଛନ୍ତି । ଏହା ଓଡ଼ିଆ ଭାଗବତର ଅନୁରୂପ । ଭାଗବତରେ ମାଳାକାରର ନାମ ହେଉଛି ସୁଦାମା । ଓଡ଼ିଆ ହରିବଂଶରେ ସେ ହେଉଛି ସୁଧର୍ମା । ରସକଲ୍ଲୋଳରେ ମାଳାକାରର କୌଣସି ନାଁ  ନାହିଁ । ସେ ରାମକୃଷ୍ଣଙ୍କ କେଶକୁ କୁସୁମରେ ବେଶ କରି ଦେଇଛି । କଂସର ଗନ୍ତାଇତ ରାମକୃଷ୍ଣଙ୍କ ଦର୍ଶନରେ ସୁଖୀ ହୋଇ କମନୀୟ କରି  ବସ୍ତ୍ର ପିନ୍ଧାଇ ଦେଇଛି । କେଶ ବେଶ କରି ଗଲାବେଳେ ରାମକୃଷ୍ଣଙ୍କର କୁବ୍‌ଜା ସହ ସାକ୍ଷାତ ହୁଏ । ଶ୍ରୀମଦ୍ ଭାଗବତର କୁବ୍‌ଜା ହେଉଛି- 'ଯୁବତୀ ବରାନାନା' (୪୧-୧) । ଦୀନକୃଷ୍ଣଙ୍କ  କୁବ୍‌ଜା ହେଉଛି ନାଗରୀ ।

କେଶ ବେଶ କରି ରାମ ଗୋବିନ୍ଦ ଗଲେ ।
କୁବୁଜା ନାଗରୀ ଆସୁଛି ଦେଖିଲେ । ୨୭-୨୮ ।

ଶ୍ରୀକୃଷ୍ଣଙ୍କ କଳା ଶ୍ରୀମୁଖକୁ ଚନ୍ଦ୍ରବଦନ ମଣ୍ଡିବା ପାଇଁ ତାର ଇଚ୍ଛା । ଶ୍ରୀକୃଷ୍ଣଙ୍କ ସ୍ପର୍ଶରେ ସେ କାମିନୀକୁଳମଣ୍ଡନୀର ରୂପ ଧାରଣ କରିଛି ।

**(ଗ) କଂସ ବଧ**

ମଥୁରା ପ୍ରବେଶର ପରବର୍ତ୍ତୀ ଦିନ ଶ୍ରୀକୃଷ୍ଣ କଂସ ସହ ସାକ୍ଷାତ କରିବା ପାଇଁ ରାଜସଭା ଅଭିମୁଖରେ ଯାତ୍ରା କରିଛନ୍ତି । ସିଂହଦ୍ୱାରଠାରେ କୁବଳୟା ହସ୍ତୀ ଓ ତାର ମାହୁନ୍ତ ଶ୍ରୀକୃଷ୍ଣଙ୍କୁ ବାଧା ପ୍ରଦାନ କରି ମୃତ୍ୟୁ ମୁଖରେ ପତିତ ହୁଅନ୍ତି । ରସକଲ୍ଲୋଳରେ କୁବଳୟା ହସ୍ତୀ ସହ ଶ୍ରୀକୃଷ୍ଣଙ୍କ ନାନା ପ୍ରକାର ସମର ବର୍ଣ୍ଣିତ । କୁବଳୟା ହସ୍ତୀର ମୃତ୍ୟୁରେ ସ୍ୱର୍ଗ ଓ ମର୍ତ୍ତ୍ୟର ଲୋକମାନେ

ତାଟକା ହୋଇଯାଇଛନ୍ତି । ଦେବତାମାନେ କୁସୁମ ବର୍ଷାକରି ଶ୍ରୀକୃଷ୍ଣଙ୍କର ବିଜୟ ଘୋଷଣା କରନ୍ତି । ରସକଲ୍ଲୋଳକାର ମାହୁନ୍ତକୁ ଯନ୍ତା, ମାହୁନ୍ତ ଓ ହସ୍ତୀପାଳକ ପ୍ରଭୃତି ଶବ୍ଦ ଦ୍ୱାରା ସମ୍ବୋଧିତ କରିଛନ୍ତି । ଓଡ଼ିଆ ହରିବଂଶରେ ମାହୁନ୍ତର ନାମ ହେଉଛି ସୁନାସ ଓ ସେ କଂସର ଭାଇ ।

ହସ୍ତୀ ଓ ହସ୍ତୀପାଳକଙ୍କୁ ବଧ କରି ଶ୍ରୀକୃଷ୍ଣ ରଙ୍ଗସଭାରେ ପ୍ରବେଶ କରିଛନ୍ତି । ଶ୍ରୀକୃଷ୍ଣଙ୍କ କୋଟି କନ୍ଦର୍ପ ଲାବଣ୍ୟ ବେଶ, ରଙ୍ଗସଭାରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କ ହୃଦୟରେ ବିଭିନ୍ନ ରୂପରେ ପ୍ରକାଶିତ ହୋଇଛି । ସେ କାମୀ, କାମିନୀଙ୍କୁ କାମଦାତା ରୂପରେ, କଂସ ନୃପକୁ କାଳଦେବତା ଭାବରେ ଓ ମାଲଙ୍କ ହୃଦୟରେ କୁଳିଶ ପରାୟେ ଜଣା ପଡ଼ିଛନ୍ତି । ରଙ୍ଗସଭାରେ ପ୍ରବେଶ କରିବାକ୍ଷଣି ମାଲମାନେ ବାହାସ୍ଫୋଟ ମାରି ରାମ ଓ କୃଷ୍ଣଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କରିଛନ୍ତି । ରସକଲ୍ଲୋଳରେ କେବଳ ଚାଣୁର ଓ ମୁଷ୍ଟିକର ଯୁଦ୍ଧ ବର୍ଣ୍ଣିତ । ଭାଗବତରେ ଥିବା ଶଲ, ତୋଷଲ, କୂଟ ଓ ଅନ୍ୟାନ୍ୟ ମାଲଙ୍କ ଯୁଦ୍ଧ ସମ୍ବନ୍ଧରେ ରସକଲ୍ଲୋଳରେ କୌଣସି ସୂଚନା ନାହିଁ । ମାଲଙ୍କ ମୃତ୍ୟୁ ଦେଖି କଂସ ନୃପତି ଭୟଭୀତ ହୋଇଯାଇଛି ଓ ସେହି ଭୟହିଁ ତାର ମୃତ୍ୟୁର କାରଣ ।

କଂସ ନୃପତି ତାହା ଦେଖିଲା । କମ୍ପି କାତରେ କଣ୍ଠ ଶୁଖିଲା ।

କଳେବର ଛାଡ଼ି ପ୍ରାଣ ଗଲା ଉଡ଼ି ଭବଭୟ ଉପେକ୍ଷିଲା । ୨୮-୩୩

କଂସର ମୃତ୍ୟୁ ପରେ ଶ୍ରୀକୃଷ୍ଣ ମଞ୍ଚ ଉପରକୁ ଉଠି କଂସର କେଶ ଧାରଣ କରି, ତାକୁ ତଳେ କଚାଡ଼ି ଦେଇଛନ୍ତି । ଭାଗବତର କଂସ ବଧଠାରୁ ରସକଲ୍ଲୋଳର ବର୍ଣ୍ଣନା ସ୍ୱତନ୍ତ୍ର । ଭାଗବତରେ କଂସ ଓ ଶ୍ରୀକୃଷ୍ଣଙ୍କ ଯୁଦ୍ଧ ବର୍ଣ୍ଣିତ । କଂସ ତରବାରି ସାହାଯ୍ୟରେ ଆତ୍ମରକ୍ଷା କରିବାକୁ ଚେଷ୍ଟା କରୁଥିବାବେଳେ ଶ୍ରୀକୃଷ୍ଣ ତାର କେଶ ଧାରଣ କରି ତାକୁ ମଞ୍ଚରୁ ତଳକୁ ପକେଇ ଦେଇଛନ୍ତି ଓ ତଦ୍ଦ୍ୱାରା ତାର ମୃତ୍ୟୁ ହୋଇଛି ।

(ଘ) କୁବଜାପୁରରେ ଶ୍ରୀକୃଷ୍ଣଙ୍କର ପ୍ରବେଶ

କଂସ ବଧ ପରେ ଶ୍ରୀକୃଷ୍ଣ କୁବଜାର କାମନା ପୂର୍ଣ୍ଣ କରିବା ପାଇଁ ଉଦ୍ଧବ ସହ ବାସକସଜ୍ଜା ନାୟିକା କୁବଜାର ପୁରରେ ପ୍ରବେଶ କରିଛନ୍ତି । ଭାଗବତ ଅନୁଯାୟୀ ଉଦ୍ଧବ ଗୋପପୁରକୁ ଯିବା ପରେ ଅର୍ଥାତ୍ 'ଭ୍ରମଣ ଗୀତ' ପଛକୁ ଏହି ଘଟଣାର ବର୍ଣ୍ଣନା ହେବାର କଥା । ଦୀନକୃଷ୍ଣ 'ଭ୍ରମର ଗୀତ'କୁ

ପରିହାର କରି ବିଷୟବସ୍ତୁ ସଂସ୍ଥାନ ଦୃଷ୍ଟିରୁ ସାମାନ୍ୟ ପରିବର୍ତ୍ତନ ଆଣିଛନ୍ତି । ଗୋପୀମାନଙ୍କ ମେଳରୁ ରାଧାଙ୍କୁ ଅଲଗା କରି ରାଧା ଭାବର ସ୍ୱତନ୍ତ୍ର ବର୍ଣ୍ଣନା କରିବାପାଇଁ ଏହି ପରିବର୍ତ୍ତନ ବୋଧହୁଏ ଆବଶ୍ୟକ ହୋଇଛି । କଂସବଧ ପରେ ପରେ ଓ ଉଦ୍ଧବଙ୍କୁ ଗୋପପୁରକୁ ପଠାଇବା ପୂର୍ବରୁ ଶ୍ରୀକୃଷ୍ଣ କୁବଜା ସହ କିଛିଦିନ ରହିବାର କାମନା ପୂର୍ଣ୍ଣ କରିଛନ୍ତି । ଦୀନକୃଷ୍ଣଙ୍କ ପରି ହିନ୍ଦୀ ସାହିତ୍ୟରେ ସୁରଦାସ ମଧ୍ୟ ଭ୍ରମରଗୀତ ପୂର୍ବରୁ କୁବଜାଙ୍କ ସହ ଶ୍ରୀକୃଷ୍ଣଙ୍କ ରଙ୍ଗଲୀଳାର ବର୍ଣ୍ଣନା କରିଛନ୍ତି । ଉଦ୍ଧବଙ୍କ ବ୍ରଜପୁର ଗମନ ପ୍ରସଙ୍ଗରେ କୌଣସି ଉଲ୍ଲେଖନୀୟ ବିଶେଷତା ଦେଖିବାକୁ ମିଳେ ନାହିଁ । ତେବେ 'ଭ୍ରମରଗୀତ' ପରି ଭାଗବତର ଏକ ପ୍ରମୁଖ ପ୍ରସଙ୍ଗକୁ ପରିତ୍ୟାଗ କରି ଓ ରାଧା ଭାବକୁ ସ୍ୱତନ୍ତ୍ର ସ୍ଥାନ ଦେଇ ଦୀନକୃଷ୍ଣ କୃଷ୍ଣ କଥାର ବିକାଶରେ ଏକ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ଆଣିଛନ୍ତି । କେବଳ ଦୀନକୃଷ୍ଣ ନୁହନ୍ତି, ଭାରତୀୟ କବିମାନଙ୍କ ମଧ୍ୟରୁ ଗୁଜରାତର ଭୀମ, ନରହରି ଓ ଭାଲଣ ପ୍ରଭୃତି ମଧ୍ୟ ଭ୍ରମର ଗୀତକୁ ପରିହାର କରିଛନ୍ତି । ଭାଗବତରେ ଉଦ୍ଧବ ଗୋପପୁରରୁ ପ୍ରତ୍ୟାବର୍ତ୍ତନ କରି ଶ୍ରୀକୃଷ୍ଣଙ୍କ ପ୍ରତି ଗୋପବାସୀ ତଥା ଗୋପୀମାନଙ୍କର ଭକ୍ତିର ବର୍ଣ୍ଣନା କରିଛନ୍ତି - "କୃଷ୍ଣାୟ-ପ୍ରଣିପତ୍ୟାହ ଭକ୍ତ୍ୟୁଦ୍ରେକଂ ବ୍ରଜୌକସାମ୍" ୧୦-୪୭ଅ-୩୯ ଅଥଚ ଦୀନକୃଷ୍ଣ ଗୋପୀମାନଙ୍କ ଭକ୍ତିଭାବ ଅପେକ୍ଷା ବିରହଦଶାକୁ ବିଶେଷ ମହତ୍ତ୍ୱ ଦେଇଛନ୍ତି ।

### (ଡ) ଗୋପୀ ଉଦ୍ଧବ ସମ୍ବାଦ

ଭାଗବତର ଗୋପୀ-ଉଦ୍ଧବ ସମ୍ବାଦକୁ ପରବର୍ତ୍ତୀ ବହୁ ଭାରତୀୟ କବି ଜ୍ଞାନମାର୍ଗଠାରୁ ଭକ୍ତିମାର୍ଗର ଉତ୍କର୍ଷତା ଦର୍ଶାଇବା ପାଇଁ ଏକ ଆଦର୍ଶ ପ୍ରସଙ୍ଗ ରୂପେ ଗ୍ରହଣ କରିଛନ୍ତି । ଉଦ୍ଧବ ଜ୍ଞାନମାର୍ଗର ନେତା ଓ ଗୋପୀମାନେ ଭକ୍ତିମାର୍ଗର । ବହୁ ତର୍କ ପରେ ଉଦ୍ଧବ ଗୋପୀମାନଙ୍କ ନିକଟରେ ପରାସ୍ତ ହୋଇ ଭକ୍ତିକୁ ଶ୍ରେଷ୍ଠ ବୋଲି ଘୋଷଣା କରିଛନ୍ତି । କିନ୍ତୁ ଭାଗବତରେ ଉଦ୍ଧବଙ୍କଠାରୁ ଶ୍ରୀକୃଷ୍ଣଙ୍କ ସନ୍ଦେଶ ଶ୍ରବଣ କରି ବ୍ରଜବାସୀମାନଙ୍କ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି ହୋଇନାହିଁ । ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରିବା କ୍ଷଣି ଭାବବିହ୍ୱଳ ହୋଇ ଯାଇଛନ୍ତି ସତ କିନ୍ତୁ ପରକ୍ଷଣରେ ସେମାନଙ୍କର ବିରହାବସ୍ଥା ଦୂର ହୋଇଯାଇଛି ଓ ସେମାନେ ଉଦ୍ଧବଙ୍କୁ ପୂଜା କରିଛନ୍ତି । ଉଦ୍ଧବ ବି ଜ୍ଞାନ ଉପଦେଶ ଦେବା ପୂର୍ବରୁ ଓ ପରେ ଗୋପୀମାନଙ୍କ ଭକ୍ତିମତ୍ତାର ପ୍ରଶଂସା କରିଛନ୍ତି । ଏଥିରୁ ସ୍ପଷ୍ଟ

ବିଦିତ ହୁଏ ଯେ ଜ୍ଞାନ ତଥା ଭକ୍ତିର ପ୍ରତିଦ୍ୱନ୍ଦିତା ଦେଖାଇ ଜ୍ଞାନଠାରୁ ଭକ୍ତିର ଶ୍ରେଷ୍ଠତ୍ୱ ସିଦ୍ଧ କରିବା ଭାଗବତକାରଙ୍କର ଉଦ୍ଦେଶ୍ୟ ନ ଥିଲା । ପରବର୍ତ୍ତୀ ବହୁ କବି ଜ୍ଞାନଠାରୁ ଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାପାଇଁ ଏହି ପ୍ରସଙ୍ଗକୁ ଗ୍ରହଣ କରିଥିଲେ ହେଁ ଦୀନକୃଷ୍ଣ ଭାଗବତର ପଦାଙ୍କ ଅନୁସରଣ କରିଥିବା ରସକଲ୍ଲୋଳରୁ ଜଣାପଡ଼େ । ଦୀନକୃଷ୍ଣଙ୍କ ଉଦ୍ଧବ ଜ୍ଞାନ ଉପଦେଷ୍ଟା ନୁହନ୍ତି । ବିରହୀ ଶ୍ରୀକୃଷ୍ଣଙ୍କର ବାର୍ତ୍ତା ଘେନି ସେ ଗୋପପୁରକୁ ଆସିଛନ୍ତି । ତାଙ୍କର ଦର୍ଶନରେ ଗୋପୀମାନେ ଆନନ୍ଦରେ ବିହ୍ୱଳ ହୋଇ ଯାଇଛନ୍ତି । ଉଦ୍ଧବଙ୍କଠାରୁ ଶ୍ରୀକୃଷ୍ଣଙ୍କ ବିରହବାଣୀ ଶୁଣି ଗୋପୀମାନେ ମଧ୍ୟ ବିରହବିହ୍ୱଳ ହୋଇ ପଡ଼ିଛନ୍ତି ଓ ଉଦ୍ଧବ ସମ୍ମୁଖରେ ନିଜର ସମସ୍ତ ଅନୁଭବ ପ୍ରକାଶ କରିଛନ୍ତି । ଉଦ୍ଧବ ମୁଗଧ ଚିତ୍ତରେ ସେ ସବୁ ଶ୍ରବଣ କରି ତୋଷ ମନରେ ମଥୁରା ପ୍ରତ୍ୟାବର୍ତ୍ତନ କରିଛନ୍ତି । ଦୀନକୃଷ୍ଣଙ୍କ ଗୋପୀ ଉଦ୍ଧବ ସମ୍ବାଦ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ବିରହାବସ୍ଥା ବର୍ଣ୍ଣନା କରିବାପାଇଁ ଅଭିପ୍ରେତ ।

ରସକଲ୍ଲୋଳର କଥାବସ୍ତୁର ପ୍ରତ୍ୟେକ ବିଭାଗରେ ଶ୍ରୀକୃଷ୍ଣଙ୍କ ଲୌକିକ ଓ ଅଲୌକିକ ଲୀଳା ପ୍ରାୟ ସମାନ ଭାବରେ ଗତି କରିଥିବାରୁ ରସକଲ୍ଲୋଳର କଥାବସ୍ତୁ କେବଳ ଦିବ୍ୟ ନୁହେଁ, ବା କେବଳ ଅଦିବ୍ୟ ନୁହେଁ ।

## (୩)
# କୃଷ୍ଣଦାସଙ୍କ କାବ୍ୟାଦର୍ଶ

କାବ୍ୟର କଳେବର ଭିତରେ ଓ ବିଶେଷକରି ଉପସଂହାରରେ କବି ଦୀନକୃଷ୍ଣ କବି ଓ କାବ୍ୟ ସଂମ୍ବନ୍ଧରେ ବହୁ ମନ୍ତବ୍ୟ ପ୍ରଦାନ କରିଛନ୍ତି । ସେହିସବୁ ମତ ବା ମନ୍ତବ୍ୟ ଏକାସ୍ଥାନରେ ନାହିଁ ବା କ୍ରମାନ୍ୱୟରେ ପ୍ରକାଶ ପାଇନାହିଁ । ଏପରିକି ଗୋଟିଏ କଥା ବିଭିନ୍ନ ରୂପ ପରିଗ୍ରହ କରି ବିଭିନ୍ନ ସ୍ଥାନରେ ଆତ୍ମପ୍ରକାଶ କରିଛି । ଏହିସବୁ ଉକ୍ତିକୁ ଏକତ୍ର କରି ଅନୁଶୀଳନ କଲେ କବିଙ୍କ କାବ୍ୟାଦର୍ଶ ସହ ପରିଚିତ ହେବା ସଙ୍ଗେ ସଙ୍ଗେ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ଆଦର୍ଶ ମଧ୍ୟ ସ୍ପଷ୍ଟ ହୁଏ । ମଧ୍ୟକାଳୀନ ଓଡ଼ିଆ କାବ୍ୟାଦର୍ଶର ସବିଶେଷ ଆଲୋଚନା ପାଇଁ ଦୀନକୃଷ୍ଣଙ୍କ ଉକ୍ତିଗୁଡ଼ିକ ଅତ୍ୟନ୍ତ ମୂଲ୍ୟବାନ ।

କାବ୍ୟ ସମ୍ବନ୍ଧରେ ଦୀନକୃଷ୍ଣଙ୍କର ଗୋଟିଏ ଉକ୍ତି ହେଉଛି, 'କବିତ୍ୱ କୋଷେ ନାନା ଦ୍ରବ୍ୟ ଥାଇ ।' ନାନା ଦ୍ରବ୍ୟ କହିଲେ ସୁନା, ରୂପା, ମୋତି, ମାଣିକ୍ୟ ନୁହେଁ କବିତ୍ୱର ବିଭିନ୍ନ ଉପାଦାନ । ଦୀନକୃଷ୍ଣ ଏହାର ସୂଚନା ପୂର୍ବପଦ ସବୁରେ ଦେଇଛନ୍ତି । ଯେପରିକି - 'କ' ନିୟମ, କୁଟିଳ ବର୍ଣ୍ଣାବଳି, କଥା, କବିର ହୃଦୟ ଓ ରସ । ସାହିତ୍ୟ ଦର୍ପଣକାର କବିତ୍ୱର ବି ଭିନ୍ନ ଉପାଦାନ ସମ୍ବନ୍ଧରେ ସୂଚନା ଦେଇ କହିଛନ୍ତି, 'ଶବ୍ଦାର୍ଥ' କାବ୍ୟର ଦେହ, 'ରୀତି' ତାର ଅବୟବ ସଂସ୍ଥାନ, 'ଅଳଙ୍କାର' କଟକ କୁଣ୍ଡଳାଦି ସ ଦଶ ଆଭରଣ ଓ 'ରସ' କାବ୍ୟର ଆତ୍ମା । (ଅଳଙ୍କାରାଃ କଟକ କୁଣ୍ଡଳିନ୍ଦିବତ । ରୀତୟୋଽବୟବ ସଂସ୍ଥାନବିଶେଷବତ । ଦେହଦ୍ୱାରେଣୈବ ଶବ୍ଦାର୍ଥଦ୍ୱାରେଣ ତମେବ କାବ୍ୟସ୍ୟାତ୍ମଭୂତରସଂ ସମୁତ୍କର୍ଷୟନ୍ତଃ କାବ୍ୟସ୍ୟୋତ୍କର୍ଷକା ଉଚ୍ୟନ୍ତେ ।)- କବି କର୍ଣ୍ଣପୁର କାବ୍ୟକୁ ଏକ ପୁରୁଷରୂପେ କଳ୍ପନା କରିଛନ୍ତି ।' ଶରୀରଂ ଶବ୍ଦାର୍ଥୌ ଧ୍ୱନିରସବ ଆତ୍ମା କିଲ ରସୋ/ଗୁଣା ମାଧୁର୍ଯ୍ୟାଦ୍ୟା ଉପମିତି ମୁଖୋଽଳଙ୍କୃତିଗଣଃ । ସୁସଂସ୍ଥାନଂ ରୀତିଃ ସ କିଲ ପରମଃ କାବ୍ୟ ପୁରୁଷୋ/ଯଦିସ୍ମିନ୍ ଦୋଷଃ ସ୍ୟାତ୍‌ଶ୍ରବଣ. କଟୁତାଦିଃ ସସନ ପରଃ ।

ପରମ କାବ୍ୟ ପୁରୁଷର ଶରୀର ହେଉଛି ଶବ୍ଦ ଓ ଅର୍ଥ । ପ୍ରାଣ ହେଉଛି ଧ୍ୱନି, ଆତ୍ମା ହେଉଛି ରସ, ଗୁଣ ହେଉଛି ମାଧୁର୍ଯ୍ୟାଦି, ଅଳଙ୍କାର ହେଉଛି ଉପମିତ ପ୍ରମୁଖ ଅଳଙ୍କାରସବୁ ଏବଂ ସୁସଂସ୍ଥାନ ହେଉଛି ରୀତି । ଯଦି ଦୋଷ

କିଛି ଥାଏ, ତାହାହେଲେ ଶ୍ରବଣକଟୁତାଦି ପ୍ରସିଦ୍ଧ ସ୍ଥୂଳଦୋଷହିଁ ହେଉଛି ଦୋଷ, ପର ବା କ୍ଷୁଦ୍ର ଦୋଷ ଏହିକାବ୍ୟ ପୁରୁଷର ଦୋଷ ନୁହେଁ, କାରଣ କ୍ଷୁଦ୍ର ଦୋଷରେ ରସର ଅପକର୍ଷ ହୁଏନାହିଁ ।

କବିତ୍ୱକୋଷରେ ଥିବା ବିଭିନ୍ନ ଦ୍ରବ୍ୟ-କଥା, ରୀତି (କ ନିୟମ), ଛନ୍ଦ, ଅଳଙ୍କାର ('କେତେ କଉତୁକ ଅଛନ୍ତି ଏଥି') କୁ ଧୀଷଣା ଦ୍ୱାରା ମନ୍ଥନ କଲେ ରସ ସୃଷ୍ଟି ହୁଏ । ଦୀନକୃଷ୍ଣଙ୍କ ଉକ୍ତିରୁ 'ରସ', 'କଥା', ନିୟମ ଓ ବିଭିନ୍ନ କଉତୁକଠାରୁ ସ୍ୱତନ୍ତ୍ର ହୋଇଥିବା ଜଣାଯାଏ । ପ୍ରକୃତରେ କାବ୍ୟର ଲକ୍ଷ୍ୟ ହେଉଛି ରସ । କଥା, ରୀତି, ଛନ୍ଦ, ଅଳଙ୍କାର, ଶବ୍ଦ ଓ ଅର୍ଥ ଏହାର ଉପାୟ । ବୁଦ୍ଧି ବା ଜ୍ଞାନଚକ୍ଷୁଦ୍ୱାରା ଏହି ଉପାଦାନ ସବୁର ବିଶ୍ଳେଷଣ ହୁଏ, ରସର ନୁହେଁ । କବି ମଧ୍ୟ କହିଛନ୍ତି, "କେବଳ କ୍ଷୀରସିନ୍ଧୁ ପ୍ରାୟେ ମନ୍ଥି କର ରସ ଜାତ/ କରି ଧୀଷଣା ମନ୍ଦର ପର୍ବତ । କାବ୍ୟ-ପାଠକ କାବ୍ୟରୁ ରସ ଆସ୍ୱାଦନ କରିପାରିଲେ କବିର ଶ୍ରମ ସାର୍ଥକ ହୁଏ । କବିର ମଧ୍ୟ ଲକ୍ଷ୍ୟ ହେଉଛି କାବ୍ୟରେ ରସ ସୃଷ୍ଟି କରିବା । ଲୋକମାନଙ୍କର ଆଲୋକ ଆବଶ୍ୟକ ହେଲେ ପ୍ରଦୀପ ପ୍ରଜ୍ୱଳିତ କରିବାକୁ ପଡ଼େ, ସେହିପରି ରସ ସୃଷ୍ଟି କରିବାକୁ ହେଲେ କବିକୁ ଶବ୍ଦାର୍ଥମୟ କଥାବସ୍ତୁ ନିର୍ମାଣ କରିବାକୁ ହୁଏ । ଧ୍ୱନ୍ୟାଲୋକରେ ଅଛି, ଆଲୋକାର୍ଥୀ ଯଥା ଦୀପଶିଖାୟା ଯତ୍ନବାନ୍ ଜନଃ/ତଦୁପାୟତୟାତଦବଦର୍ଥେ ବାଚ୍ୟେ ତଦାଦୃତଃ । (୧/୯) କବି ଦୀନକୃଷ୍ଣ ରସକଲ୍ଲୋଳର କଥାବସ୍ତୁ ସମ୍ବନ୍ଧରେ ସୂଚନା ଦେଇ କୁହନ୍ତି କଥା ନୋହେ ଦିବ୍ୟ ଅଦିବ୍ୟ ସମ । କଥା କହିଲେ କୃଷ୍ଣକଥା ବା ଗୋପୀ ଗୋପୀନାଥ କଥା । କାବ୍ୟ ମଧ୍ୟରେ କବି ନିଜେ ଏକଥା ବାରମ୍ବାର କହିଛନ୍ତି । ଉଦାହରଣ ସ୍ୱରୂପ କେତୋଟି ପଂକ୍ତି ନିମ୍ନରେ ପ୍ରଦତ୍ତ ହୋଇଛି ।

କମନୀୟ କୃଷ୍ଣକଥା ପ୍ରସଙ୍ଗ । ୩-୬୨

କୃଷ୍ଣକଥାରେ ଯାର ସ୍ନେହ ନାହିଁ । ୫-୩୪ ।

କହଇ ଦୀନକୃଷ୍ଣ ଏ କଥା । ୫-୩୪ ।

କହଇ ଦୀନକୃଷ୍ଣ ହୋଇ ମହାତୃଷ୍ଣ ଗୋପୀ ଗୋପୀନାଥ କଥା -୧୦-୩୫

କୃଷ୍ଣ କଥାରେ ଏକା ମନ ଦିଅ - ୩୪-୩୧ ଇତ୍ୟାଦି ।

ନୋହେ ଦିବ୍ୟ ଅଦିବ୍ୟ ସମ ଉକ୍ତିଦ୍ୱାରା କେବଳ ଦିବ୍ୟ (ଅଲୌକିକ ବା ଅପ୍ରାକୃତ) ବା କେବଳ ଅଦିବ୍ୟ (ଲୌକିକ ବା ପ୍ରାକୃତ) ନୁହେଁ, ଓ ଶ୍ରୀକୃଷ୍ଣଙ୍କ

ଉଭୟ ଦିବ୍ୟ ଓ ଅଦିବ୍ୟ ଲୀଳା ସମାନ ଭାବରେ ରୂପାୟିତ ହୋଇଥିବା ସୂଚିତ । କୃଷ୍ଣକଥା ପ୍ରାକୃତ କଥା ନୁହେଁ । ପ୍ରାକୃତ କଥାର ବର୍ଣ୍ଣନାରେ ରସ ସୃଷ୍ଟି ହୋଇଥାଏ ସତ, କିନ୍ତୁ କୃଷ୍ଣକଥା ବର୍ଣ୍ଣନାରେ ଯେଉଁ ରସର ସୃଷ୍ଟି ହୁଏ, ତାହା ରସ ମଧ୍ୟେ ପୀୟୁଷ - କୃଷ୍ଣକଥା ଏ ରସ ମଧ୍ୟେ ପୀୟୁଷ ।

ବୈଷ୍ଣବ ଆଳଙ୍କାରିକମାନେ କଥାବସ୍ତୁ ଦୃଷ୍ଟିରୁ କାବ୍ୟ ଦୁଇଭାଗରେ ବିଭକ୍ତ କରିଛନ୍ତି-ଅପ୍ରାକୃତ ଓ ପ୍ରାକୃତ କାବ୍ୟ । ଅପ୍ରାକୃତ ଭଗବଦ୍ ଲୀଳା ବର୍ଣ୍ଣିତ ହୋଇଥିବା କାବ୍ୟକୁ ସେମାନେ ଅପ୍ରାକୃତ କାବ୍ୟ ଓ ପ୍ରାକୃତ ଜୀବର ଆଚରଣ ଅର୍ଥାତ୍ ଲୌକିକ ବିଷୟ ବର୍ଣ୍ଣିତ ହୋଇଥିବା କାବ୍ୟକୁ ସେମାନେ ପ୍ରାକୃତ କାବ୍ୟ କୁହନ୍ତି । ଏ ଦୃଷ୍ଟିରୁ ଦେଖିଲେ ରସକଲ୍ଲୋଳରେ ଉଭୟ ପ୍ରାକୃତ ଓ ଅପ୍ରାକୃତ କଥାବସ୍ତୁ ଅଛି । କୃଷ୍ଣକଥାର ବର୍ଣ୍ଣନା ରସକଲ୍ଲୋଳରେ ମୁଖ୍ୟ ହେଲେହେଁ ସାଧାରଣ ଲୌକିକ ଜୀବନର ବହୁ ଚିତ୍ର ଏଥିରେ ସନ୍ନିବେଶିତ । ଆଷାଢ଼ ମାସ ବର୍ଣ୍ଣନା (ଷୋଡ଼ଶ ଛାନ୍ଦ) ପ୍ରସଙ୍ଗରେ ଯେଉଁ ବିଦେଶୀ (୧୬-୪), ପଥିକ (୧୬-୧୨), ଚତୁରବର (୧୬-୧୩) ଓ ଯେଉଁ ରସିକଙ୍କ (୧୬-୧୫) କଥା କୁହାଯାଇଛି, ହିମଋତୁ ବର୍ଣ୍ଣନା କଲାବେଳେ ଯେଉଁ କାମୁକ (୧୧-୨୫), ଯେଉଁ ରତିରଙ୍କ ପୁରୁଷମାନଙ୍କର (୧୧-୨୬) କଥା ବର୍ଣ୍ଣିତ ହୋଇଛି, ସେମାନେ ରସିକ ଶ୍ରେଷ୍ଠ ଶ୍ରୀକୃଷ୍ଣ ନୁହନ୍ତି । ବସନ୍ତକାଳ ବର୍ଣ୍ଣନା କଲାବେଳେ କବି ଯେଉଁ କୁଳଟାମାନଙ୍କର (୧୪-୨୧) ଉଲ୍ଲେଖ କରିଛନ୍ତି, ଯେଉଁ ବାରନାରୀମାନଙ୍କର (୧୪-୨୩) ଚିତ୍ର ଦେଇଛନ୍ତି, ଓ ଯେଉଁ ଖଣ୍ଡିତାମାନଙ୍କର ଦୁଃଖ ବର୍ଣ୍ଣନା କରିଛନ୍ତି, ସେମାନେ ମଧ୍ୟ ରସିକାନୀମୋକ୍ଷା ଗୋପିକା ନୁହନ୍ତି । କୃଷ୍ଣକଥାଠାରୁ ସେମାନେ ସ୍ୱତନ୍ତ୍ର । ମନେହୁଏ ଦୀନକୃଷ୍ଣଙ୍କ ସାହିତ୍ୟିକ ପରମ୍ପରା ବା ସମାଜରୁ ସେମାନେ ସଂଗୃହୀତ ।

ରସକଲ୍ଲୋଳର ବାଣୀ, ବାକ୍ୟ ବା ବର୍ଣ୍ଣାବଳୀ ସମ୍ବନ୍ଧରେ ଦୀନକୃଷ୍ଣଙ୍କ ମତ ହେଉଛି, ଏହା କୁଟିଳ ବର୍ଣ୍ଣାବଳୀରେ ଅଦ୍ଭୁତ, ଅର୍ଥାତ୍ ବର୍ଣ୍ଣାବଳୀର ଦୁଇଟି ବିଶିଷ୍ଟ ଗୁଣ-କୁଟିଳ ଓ ଅଦ୍ଭୁତ । କୁଟିଳ ଶବ୍ଦକୁ ଦୀନକୃଷ୍ଣ ବକ୍ର ଅର୍ଥରେ ବହୁଥର ବ୍ୟବହାର କରିଛନ୍ତି, ତେଣୁ କୁଟିଳ ବର୍ଣ୍ଣାବଳି ହେଉଛି ବକ୍ରବଚନ, ବକ୍ର-ବାଣୀ ବା ବକ୍ରୋକ୍ତି । ରସକଲ୍ଲୋଳରେ ବକ୍ରବଚନର ବହୁଳତା ପରିଦୃଷ୍ଟ ହୁଏ । ଗୋପୀ ଓ ଶ୍ରୀକୃଷ୍ଣ ପ୍ରତି ସ୍ନେହବାଣୀ (୭-୨୯) ବା ସ୍ନେହଗର୍ଭବାଣୀ (୩-୯) ବା

ରସଗର୍ଭବାଣୀ (୧୯-୪୧) ବା ଘେନାଘେନି ବାଣୀ (୭-୩୦)ର ଆତ୍ମା ହେଉଛି, ବକ୍ରବଚନ । ଦୀନକୃଷ୍ଣଙ୍କ ବ୍ୟବହୃତ ବକ୍ରବାଣୀର ଗୋଟିଏ ଉଦାହରଣ ହେଉଛି -

କଉଁ ଗୋପୀକି ବକ୍ରବାଣୀ କହି । କି ତୋହୋର ଶୀତକୁ ଭୟ ନାହିଁ ।
କରୁଅଛି ମନରେ ଏ ବିଚାର । କଲା ବିହି ତୋତେ ଗତ୍ରୁ କାହାର ।
କାନ୍ତ ହୋଇଛି ବଦନ କମଳ । କିଛି ହେବ ଏଠାରେ ମୋର ଫଳ ।
କମ୍ପୁଅଛି ମୋହର କଳେବର । କର ତୋ ତନୁକୁ ନବ ନିଶାର ।
କହେ ଗୋପୀ ବଚନ ବକ୍ର କରି । କେତେ ନାହିଁ ତୁମ୍ଭର ଶୀତହାରୀ ।
କି କରିବ ଏ ତନୁ ନିଶାରକୁ । କହି ନୋହଇ କୃଷ୍ଣ ଭ୍ରମରକୁ ।

ଆଉ ଗୋଟିଏ ଉଦାହରଣ ଦେଖନ୍ତୁ,

କୁଟିଳ କରି ବୋଲେ ଚତୁରୀ ବିଭା ହେଲ କି କାଲି
କାହାରି ଚିତ୍ତେ ନ ଥିଲା ପ୍ରତେ ଏମନ୍ତ କର୍ମ ବୋଲି ।
କଉତୁକରେ ଦର୍ପଣ କରେ ଧରି ବୋଲଇ ଚାହିଁ ।
କେମନ୍ତ ଚିତ୍ର ଦିଶେ ବକତ୍ର କେମନ୍ତ ଶୋଭା ଦେହ ।

ପୂର୍ବୋକ୍ତ ଦୁଇଟି ଯାକ ଉକ୍ତିରେ ବାଚ୍ୟାର୍ଥ ବା ମୁଖ୍ୟାର୍ଥ ଅତିରିକ୍ତ ଅନ୍ୟ ଗୋଟିଏ ଅର୍ଥ ଅଛି । ପ୍ରଥମ ଉଦାହରଣରେ ଥିବା 'କର ତୋ ତନୁକୁ ନବ ନିଶାର' କେବଳ ଶୀତହାରୀ ଦ୍ରବ୍ୟ ଅର୍ଥରେ ପ୍ରଯୁକ୍ତ ନୁହେଁ, ବିପରୀତ ରତି ମଧ୍ୟ ସୂଚିତ । ପ୍ରଥମ ଉକ୍ତିରୁ ଦ୍ୱିତୀୟ ଉକ୍ତିରେ ଥିବା ବକ୍ରତାର ପ୍ରକୃତି ଭିନ୍ନ । ପ୍ରଥମ ବକ୍ରୋକ୍ତିର ପ୍ରାଣ ହେଉଛି ଶବ୍ଦର ଅର୍ଥଗତ ଭିନ୍ନତା ଅଥଚ ଦ୍ୱିତୀୟ ଉକ୍ତିର ବକ୍ରତା ପରିହାସ ଓ କାର୍ଯ୍ୟ ଉପରେ ନିର୍ଭର କରିଛି ।

ବକ୍ରୋକ୍ତି ଶବ୍ଦ ଅତି ପ୍ରାଚୀନ । ବାଣଭଟ୍ଟ, ଭାମହ, ଦଣ୍ଡୀ ଓ ରୁଦ୍ରଟ ପ୍ରଭୃତି ଆଳଙ୍କାରିକମାନଙ୍କ ମତରେ ଏହା ଗୋଟିଏ ଶବ୍ଦାଳଙ୍କାର । ବାମନ ଏହାକୁ ଅର୍ଥାଳଙ୍କାର କହିଛନ୍ତି। କୁନ୍ତକ ପୂର୍ବୋକ୍ତ ସବୁ ଆଚାର୍ଯ୍ୟଙ୍କ ମତକୁ ଖଣ୍ଡନ କରି କୁହନ୍ତି ଯେ ବକ୍ରୋକ୍ତି କୌଣସି ସ୍ୱତନ୍ତ୍ର ଅଳଙ୍କାର ନୁହେଁ, ଏହା କାବ୍ୟର ଜୀବନ । ବକ୍ରୋକ୍ତିର ବ୍ୟାଖ୍ୟା କରି ସେ କୁହନ୍ତି, "ବକ୍ରୋକ୍ତିଃ ପ୍ରସିଦ୍ଧାଭିଧାନ ବ୍ୟତିରେକିଣୀ ବିଚିତ୍ରୈବାଭିଧା । କୀଦୃଶୀ ବୈଦଗ୍ଧ୍ୟଭଙ୍ଗୀ ଭଣିତିଃ । ବୈଦଗ୍ଧ୍ୟଂ ବିଦଗ୍ଧଭାବଃ, କବିକର୍ମ କୌଶଳଂ, ତସ୍ୟ ଭଙ୍ଗୀ ବିଚ୍ଛିତିଃ, ତୟା ଭଣିତିଃ ବିଚିତ୍ରୈବାଭିଧା ବକ୍ରୋକ୍ତିରିତ୍ୟୁଚ୍ୟତେ" - ଅର୍ଥାତ ପ୍ରସିଦ୍ଧ କଥନଠାରୁ ଭିନ୍ନ ବିଚିତ୍ର

ଅଭିଧା ବା ବର୍ଣ୍ଣନଶୈଳୀ ହେଉଛି, ବକ୍ରୋକ୍ତି । ଏହା କିପରି ? ବୈଦଗ୍ଧ୍ୟପୂର୍ଣ୍ଣଶୈଳୀଯୁକ୍ତ ଉକ୍ତିକୁ ବକ୍ରୋକ୍ତି କୁହନ୍ତି । ବୈଦଗ୍ଧ୍ୟର ଅର୍ଥ ହେଉଛି ବିଦଗ୍ଧତା - କବି କର୍ମ କୌଶଳ ତାହାର ଭଙ୍ଗିମା ବା ଶୋଭା (ଚାରୁତା) । ତାହା ଉପରେ ଆଶ୍ରିତ ଉକ୍ତିହିଁ ବକ୍ରୋକ୍ତି । ସଂକ୍ଷେପରେ ବିଚିତ୍ର ଅଭିଧା (ବର୍ଣ୍ଣନ-ଶୈଳୀ)ର ଅନ୍ୟନାମ ହେଉଛି, ବକ୍ରୋକ୍ତି । ବାମନ ମଧ ବିଶିଷ୍ଟ ପଦ ରଚନାକୁ ରୀତି କୁହନ୍ତି ।

କୁଟିଳ ବର୍ଣ୍ଣାବଳିରେ ରସକଲ୍ଲୋଳ ଅଦ୍ଭୁତ ହୋଇଥିଲେ ହେଁ ଏହା କାବ୍ୟ-ପୁରୁଷର ଅଙ୍ଗ, ଆତ୍ମା ନୁହେଁ । ରସ ଜାତ କରିବାପାଇଁ ଏହା ଗୋଟିଏ ଉପାଦାନ । ବକ୍ରବଚନ ଦ୍ୱାରା କବି ଦୀନକୃଷ୍ଣ ଆଚାର୍ଯ୍ୟ ଭାମହଙ୍କ ପରି ଅର୍ଥର ବକ୍ରତାକୁହିଁ ଗ୍ରହଣ କରୁଥିଲେ । ଭାମହଙ୍କ ପରି ସେ ମଧ କାବ୍ୟରେ ବକ୍ରୋକ୍ତିର ସାର୍ବଭୌମତ୍ୱ ସ୍ୱୀକାର କରିଛନ୍ତି । କାରଣ ବକ୍ରୋକ୍ତିହୀନ କଥନ କାବ୍ୟ ନୁହେଁ ବାର୍ତ୍ତା । 'ସୂର୍ଯ୍ୟ ଅସ୍ତ ହୋଇଗଲ', 'ଚନ୍ଦ୍ରମା ଉଦିତ ହେଲା' ପ୍ରଭୃତି ବାକ୍ୟ ପରି ଏହା କେବଳ ସାକ୍ଷାତ ସ୍ୱରୂପର ବର୍ଣ୍ଣନା କରିଥାଏ । ବକ୍ରୋକ୍ତିର ଅନ୍ୟ ନାମ ଚାତୁର୍ଯ୍ୟୋକ୍ତି । କାବ୍ୟର ବର୍ଣ୍ଣ୍ୟବସ୍ତୁକୁ ସହଜ ଭାବରେ ନ କହି ଚତୁରତାର ସହିତ କହିବା କବିର ଲକ୍ଷ୍ୟ । କବି ଦୀନକୃଷ୍ଣ କବି କର୍ମର ଏହି କୌଶଳକୁ 'କହିବା ଚାତୁରୀ' (୭-୯), 'ବାଗ ଚାତୁରୀ' (୧୬-୧୪) 'ବଚନ ଚାତୁରୀ' ଓ 'କବିତ୍ୱ ଚାତୁରୀ' ନାମ ଦେଇଛନ୍ତି । କବିର ଚାତୁର୍ଯ୍ୟୋକ୍ତି ରସ ସୃଷ୍ଟିର ପରମ ସହାୟକ । "କହିବା ଚାତୁରୀ ବରଷଇ ଘନ ରସ ।" ଏହାପୁଣି 'ରସ ଗର୍ଭବାଣୀ' (୧୯-୪୧) । କବି କର୍ଣ୍ଣପୁର ମଧ 'କବି' ବାକ୍ ନିର୍ମିତଃ କାବ୍ୟଃ ଅର୍ଥାତ୍ କବିକୃତ ଅସାଧାରଣ ଚମତ୍କାରିଣୀ ରଚନାକୁହିଁ କାବ୍ୟ କହୁଥିଲେ । ବାକ୍ୟର ସମାବେଶରେ କାବ୍ୟ ହେଇଥିଲେବି ଯେ କୌଣସି ବାକ୍ୟକୁ କାବ୍ୟ କୁହାଯାଇପାରେ ନାହିଁ ।

କବିତ୍ୱ-ଚାତୁରୀର ସଠିକ ସଂଜ୍ଞା ନିର୍ଦ୍ଦେଶ କରିବା ସହଜ ନୁହେଁ । ଏହାର କୌଣସି ଧରାବନ୍ଧା ନିୟମ ନାହିଁ । ପ୍ରତ୍ୟେକ କବି ନିଜର ପ୍ରତିଭା ବଳରେ ନୂତନ ପ୍ରକାରର କବିତ୍ୱ ଚାତୁରୀ ସୃଷ୍ଟି କରିଥାନ୍ତି । ଦୀନକୃଷ୍ଣଙ୍କ ରସକଲ୍ଲୋଳରୁ କବିତ୍ୱ-ଚାତୁରୀର ରୂପରେଖ ସଂବଂଧରେ ନିମ୍ନ ସୂଚନା ମିଳିଥାଏ । କବି କହିଛନ୍ତି,

କବି ସେ ସତ ମିଛ କରି କୁହନ୍ତି ।
କବିତ୍ୱ-ଚାତୁରୀରେ ମନ ମୋହନ୍ତି ଯେ ।

ଅର୍ଥାତ୍ କବିତ୍ୱ ଚାତୁରୀରେ ପାଠକକୁ ମୁଗ୍ଧ କରିବାପାଇଁ କବିଙ୍କୁ ସତ ମିଛ କରି କହିବାକୁ ପଡ଼ିଥାଏ । କାବ୍ୟରେ କବିଙ୍କ ମିଛ-ଫନ୍ଦାର ଅଜସ୍ର ଉଦାହରଣ ଅଛି । ସେ ସବୁ କାବ୍ୟର ଅଳଙ୍କାର । ଉପମା ଅଳଙ୍କାରରୁ ଏହାର ଆରମ୍ଭ । ମୁଖ ଚନ୍ଦ୍ରପରି ବା ପଦ୍ମ ପରି କହିଲା ବେଳେ କବି ନିଶ୍ଚିତ ଭାବେ ସତ କୁହେ ନାହିଁ । ବାସ୍ତବ ସୌନ୍ଦର୍ଯ୍ୟ କବିକୁ ସନ୍ତୁଷ୍ଟ କରିପାରେ ନାହିଁ । କବି ତୁଳନା ଦ୍ୱାରା ବାସ୍ତବ ସୌନ୍ଦର୍ଯ୍ୟକୁ ଅଭିନବ ରୂପ ପ୍ରଦାନ କରେ । କବି ମନର ଏହି ପ୍ରକ୍ରିୟାକୁ ଦୀନକୃଷ୍ଣ ମିଛ-ଫନ୍ଦା କହିଛନ୍ତି । ଆଳଙ୍କାରିକମାନଙ୍କ ମତରେ ଏହାର ଦୁଇଭାଗ- ଅସତ ନିବନ୍ଧ ଓ ସତ୍ୟ ତ୍ୟାଗ ବା ସତ୍ୟ ଅନିବନ୍ଧ, ଅସତ ନିବନ୍ଧରେ ମିଥ୍ୟା ସତ୍ୟ ରୂପରେ ବର୍ଣ୍ଣିତ ଓ ସତ୍ୟ ତ୍ୟାଗରେ ଜାଣିଶୁଣି ସତ୍ୟର ତ୍ୟାଗ । ରସକଲ୍ଲୋଳରେ କବିଙ୍କ ମିଛ-ଫନ୍ଦାର ଗୋଟିଏ ଉଦାହରଣ ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା ପ୍ରସଙ୍ଗରେ ମିଳିଥାଏ । ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା କରି କବି କୁହନ୍ତି -

କରି ଏ ପୁତ୍ର ରୂପ ବିଲୋକନ ।
କହୁଁ କହୁଁ ଏ ଦିଶିଲେ ନିଉନ ।
କବି ଏହାକୁ ଏହାଙ୍କ କାନ୍ତିକି ।
କଲେ ଲକ୍ଷ୍ୟ ବୋଲିବା ଅବିବେକୀ ।
କାଚ କାଞ୍ଚନ ତୁଳିଲା ପରାୟେ ।
କବି ବାଣୀ ନିକିଟିରେ ସେ ହୋଏ ।
କାଇଞ୍ଚକୁ ଯେ ସୁନା ସଙ୍ଗେ ତୁଳି ।
କ୍ରମେ ମୂଲ ବେଳକୁ ପଡ଼େ ବଳି ।
କବି ବଚନେ କଲେ ତାରତମ ।
କୁବେରକୁ ବୋଲନ୍ତି କୋଟି କାମ ।
କଉଁଠାରେ କନ୍ଦର୍ପ ହୋୟେ ନିନ୍ଦା ।
କେତେ କହିବି ତାଙ୍କ ମିଛ-ଫନ୍ଦା ।

କୁତ୍ସିତ କଳେବର କୁବେରକୁ କୋଟି କାମ ସହ ତୁଳନାକରି ଓ ସ୍ୱଭାବ-ସୁନ୍ଦର କନ୍ଦର୍ପକୁ ନିନ୍ଦାକରି କବି ଜାଣିଶୁଣି ସତ୍ୟର ତ୍ୟାଗ କରିଛନ୍ତି । ଏହା ସତ୍ୟ ଅନିବନ୍ଧ ।

ସତ ମିଛ କରି କହିବାର ଅନ୍ୟ ଗୋଟିଏ ଉଦାହରଣ କବି ପ୍ରେମିକର ଚାଟୁ ବଚନ ମଧ୍ୟରେ ସନ୍ଧାନ କରିଛନ୍ତି । ସାଧାରଣତଃ ପ୍ରେମିକ ପ୍ରେମିକାକୁ

କୁସୁମଗଭା, କପାଳ ତିଳକ, କଳାଡୋଳା ପ୍ରତିମା, କଣ୍ଠ ମଣ୍ଡନା, କର୍ପୂର, ଚନ୍ଦନ, କାମତଟିନୀ ଭେଳା, ଧନ, ଓ ଅନ୍ୟାନ୍ୟ ସବୁ ଉପମା ସହ ତୁଳନା କରିଥାଏ । ଏ ସବୁ ଉପମାନର କ୍ଷଣିକତା କବି ମନକୁ ସ୍ପର୍ଶ କରିଛି ।

କୁସୁମ ଗଭା ବୋଲି ଡାକନ୍ତି ଅବା ।
କରିଛି ବିହି ତାକୁ ପକାଇ ଦେବା । ୨୦-୬ ।

ଅଥଚ ପ୍ରୀତି ଚିରନ୍ତନ । କୋଟି କୋଟି କଳ୍ପରେ ଏହାର କ୍ଷୟ ନାହିଁ । ତେଣୁ ଯେଉଁମାନେ କୁମୁଦ ଓ ଚନ୍ଦ୍ରର ପ୍ରୀତିକୁ ବା କମଳ ଓ ସୂର୍ଯ୍ୟର ପ୍ରୀତିକୁ ବା କୁସୁମ ଓ ମଧୁକରର ପ୍ରୀତିକୁ ପ୍ରୀତିର ଆଦର୍ଶ ରୂପେ ଗ୍ରହଣ କରିଛନ୍ତି କବିଙ୍କ ମତରେ ସେମାନେ ଅବିବେକୀ । କେବଳ ପ୍ରେମିକାର ମନ ନେବାପାଇଁ ସେମାନେ କବିମାନଙ୍କ ପରି ସତ ମିଛ କରି କହିଥାନ୍ତି । ଏଥିରେ କବିତ୍ୱ ଚାତୁରୀ ଥାଇପାରେ କିନ୍ତୁ ଏହା ସତ ନୁହେଁ । ଏହା ଅସତ ନିବନ୍ଧ ।

ସମାଜରେ ସାଧାରଣ ଲୋକେ ଯେଉଁ ମିଛ କୁହନ୍ତି, କବିଙ୍କ ମିଛ - ଫନ୍ଦା ତାଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଏଥିରେ ନିଜକୁ ବିପଦରୁ ବଞ୍ଚେଇବା ବା ଅନ୍ୟକୁ ବିପଦରେ ପକେଇବାର ମନୋବୃତ୍ତି ନାହିଁ । କବିଙ୍କ ମିଛ-ଫନ୍ଦା କାବ୍ୟକୁ ସୁନ୍ଦର ଓ ମନୋରମ କରେ । କବିଙ୍କ ସତ ମଧ ପ୍ରାକୃତ ସତ୍ୟ ନୁହେଁ, ସାହିତ୍ୟିକ ସତ୍ୟ । ସାହିତ୍ୟରୁ ପ୍ରକୃତିର ଯେଉଁ ବର୍ଣ୍ଣନା ଆମେ ପଢୁ, ଯେଉଁ ଚରିତ୍ର ସହ ଆମର ଚିହ୍ନା ହୁଏ, ସେ ଆମର ସମ୍ପୂର୍ଣ୍ଣ ଅଜଣା ନୁହେଁ । ମନେହୁଏ, ସେ ଚରିତ୍ର ବା ବର୍ଣ୍ଣନା ସହ କେଉଁଠି ଥରେ ଦେଖା ହୋଇଥିଲା । ସେ ସମ୍ପୂର୍ଣ୍ଣ ନିଜର ନୁହେଁ ବା ସମ୍ପୂର୍ଣ୍ଣ ପର ନୁହେଁ । ସାହିତ୍ୟ ଦର୍ପଣକାର କୁହନ୍ତି,

ପରସ୍ୟ ନ ପରସ୍ୟେତି/ମମେତି ନ ମମେତି ଚ
ତଦାସ୍ୱାଦେ ବିଭାବାଦେଃ/ପରିଚ୍ଛେଦେ ନ ବିଦ୍ୟତେ ।

କାବ୍ୟ-ପାଠ୍ୟକର ମନେହୁଏ, କାବ୍ୟର ଚରିତ୍ର ଓ ଭାବ ପରର, କିନ୍ତୁ ସମ୍ପୂର୍ଣ୍ଣ ପରର ନୁହେଁ, ଆପଣାର, କିନ୍ତୁ ସମ୍ପୂର୍ଣ୍ଣ ଆପଣାର ନୁହେଁ । କାବ୍ୟର ରସାସ୍ୱାଦବେଳେ ବିଭାବ-ଅନୁଭାବ-ସଂଚାରୀ ଭାବ ସମୂହ ପୃଥକ୍ ପୃଥକ୍ ଭାବରେ ପ୍ରତୀତ ନ ହୋଇ ଏକ ଅଛିନ୍ନ ଧାରାରେ ସମ୍ମିଳିତ ଭାବରେ ପ୍ରତିଭାତ ହୋଇଥାନ୍ତି । କୌଣସି ବ୍ୟକ୍ତିର ସୁଖ-ଦୁଃଖ, ବିରାଗ-ଅନୁରାଗ, ଯେତେବେଳେ ପର୍ଯ୍ୟନ୍ତ ସେହି ବ୍ୟକ୍ତି ହୃଦୟରେ ଆବଦ୍ଧ, ସେତେବେଳେ ପର୍ଯ୍ୟନ୍ତ ତାହା ପ୍ରାକୃତ

ବା ଲୌକିକ ସତ୍ୟ । ବାଟଘାଟରେ ଯେଉଁ ଲୋକ ସହ ଆମର ସାକ୍ଷାତ ହୁଏ, ଯେଉଁ ଲୋକ ସହ ଆମର ସାମାନ୍ୟ ପରିଚୟ ଅଛି, ବା ଯେଉଁ ଲୋକ ଆମ ସହ ଘନିଷ୍ଠ ଭାବେ ପରିଚିତ, ସେମାନଙ୍କ ଜୀବନର ବହୁ ଅଳ୍ପ କଥା ଆମର ଜ୍ଞାତ, ଅଧିକାଂଶ ହିଁ ଅଜ୍ଞାତ । କବି ନିଜ ପ୍ରତିଭା ଦ୍ୱାରା ଏହି ଅପୂର୍ଣ୍ଣତାକୁ ପୂର୍ଣ୍ଣତା ପ୍ରଦାନ କରିଥାନ୍ତି । ରବୀନ୍ଦ୍ରନାଥ ଏ କଥାକୁ ସମର୍ଥନ କରି କୁହନ୍ତି, କୌଣସି ଜିନିଷକୁ ଦୂରରୁ ଦେଖାଇବାକୁ ହେଲେ ବଡ଼ କରି ଦେଖାଇବାକୁ ହୁଏ । ତା ନ ହେଲେ ଦେଖଣାହାରୀ ହୁଏତ ମୋଟେ ଦେଖି ପାରେ ନାହିଁ ବା ଦେଖି ବୁଝି ପାରେ ନାହିଁ । କଥା କହି ନ ଜାଣିଲେ ବା କଥା କହିବାବେଳେ ଥା ଥା ମା ମା ହେଲେ ଲୋକେ କୁହନ୍ତି, ସେ ମିଛ କହୁଛି । ସେଥିପାଇଁ କବି ବା ସାହିତ୍ୟିକଙ୍କୁ କେବଳ ଯେ ବଢ଼େଇ କରି କହିବାକୁ ହୁଏ, ତାହା ନୁହେଁ, ପ୍ରାଞ୍ଜଳ ଭାବେ କହିବାକୁ ପଡ଼େ । ନିଜର ବକ୍ତବ୍ୟକୁ 'ସକଳ ସହୃଦୟହୃଦୟସଂବାଦୀ' କରି ନ ପାରିଲେ ଲେଖକର ରଚନା ବିଫଳ ।

ବାସ୍ତବ-ଜୀବନ ସହ କବିର କଳନା, କଳ୍ପନା, ଅନୁଭବ ଓ ଅନୁମାନ ମିଶି କାବ୍ୟ-ଜଗତ ସୃଷ୍ଟି ହୁଏ । ପ୍ରତ୍ୟେକ ବ୍ୟକ୍ତିର ଅନୁଭୂତି ଅନ୍ୟ ବ୍ୟକ୍ତିଠାରୁ ସ୍ୱତନ୍ତ୍ର । ସେଥିପାଇଁ ଭାଗବତର ଶ୍ରୀକୃଷ୍ଣ, ରସକଲ୍ଲୋଳରେ ନାହାନ୍ତି ବା ରସକଲ୍ଲୋଳର ରାଧିକା ବିଦଗ୍ଧ ଚିନ୍ତାମଣିର ରାଧିକା ନୁହନ୍ତି । କଥା, ଚରିତ୍ର ଏପରିକି ଉପମାନ ଚୟନରେ କବି ପରମ୍ପରାକୁ ଅନୁସରଣ କରିଥିଲେ ହେଁ କବିଙ୍କ ହୃଦୟ ସହ କାବ୍ୟ ନିବିଡ଼ ଭାବରେ ଜଡ଼ିତ । କବି ଦୀନକୃଷ୍ଣ ମଧ କହିଛନ୍ତି, 'କବି ହୃଦ ଅବଲମ୍ବକୁ ଜାତ' । କାବ୍ୟ ଭିତରେ କବି ନିଜ ଜୀବନର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି, ତାହା ପାଇଁ ନୁହେଁ, କାବ୍ୟର ପ୍ରତ୍ୟେକ ଚରିତ୍ର, ପ୍ରତ୍ୟେକ ଘଟଣା ବର୍ଣ୍ଣନା କଲାବେଳେ କବିଙ୍କ ଜୀବନର ଅନୁଭୂତି ପ୍ରକାଶ ପାଇଥାଏ । ଉଦାହରଣ ସ୍ୱରୂପ ରସକଲ୍ଲୋଳରୁ କଂସ ଦରବାର ବର୍ଣ୍ଣନାକୁ ଗ୍ରହଣ କରାଯାଇପାରେ ।

କେ ତହିଁ ପ୍ରଭୁମନ ଘେନିବାକୁ ବହନ
ବୋଲଇ ମଣିମା ମଣିମା କେ ବୋଲାଇ
ତୁମ୍ଭ ତହୁଁ କେ ଅଛି ବଡ଼ ।
କେ ବୋଲଇ । ଯେତେ ହୋଇଲେ ସେ ଗଉଡ଼ ।

\+ + +

କହେଁ ଯଉଁ ପଣ୍ଡିତ ସଭାରେ ପକ୍ଷପାତ
ପ୍ରଭୁ ଆଶକୁ ଅନୁସରି ।
କରେ ତହିଁକି ପ୍ରତେ ଯଉଁ ନୃପତି ଚିତ୍ତେ
ସେହିଟି ଅବିବେକ ପୁରୀ ହେ । ଆହେ ଜନେ ।
୨୫-୩,୪ ।

କଂସ ରାଜାଙ୍କ ଦରବାରରେ ଥିବା ଦରବାରୀମାନଙ୍କୁ ପ୍ରତି ରାଜ-ସଭାରେ ଦେଖିବାକୁ ମିଳୁ ଥିଲେହେଁ କବି ଦୀନକୃଷ୍ଣ ଏମାନଙ୍କୁ ଉତ୍କଳର ତତ୍କାଳୀନ ଗଜପତିଙ୍କ ଦରବାରରେ ଦେଖିଥିବା ଅନୁମେୟ ।

ରସକଲ୍ଲୋଳରେ ରସ ସୃଷ୍ଟି କରିବାର ଅନ୍ୟ ଗୋଟିଏ ଉପାଦାନ ହେଉଛି । କ ଅକ୍ଷରେ ହୋଇଛି ନିୟମ । ଏହି ନିୟମକୁ ଅନୁସରଣ କରିଥିବାରୁ କବିଙ୍କୁ ବହୁ ଶ୍ରମ କରିବାକୁ ପଡ଼ିଛି ।

କ ଅ ଅକ୍ଷରେ କଲି ଯେ ଗୀତ,
କେବେହେଁ ଏଥି ନ ଦେବ ଘାତ ।
କବି ହେଲେ ତ ଜାଣିବ ଏଥି ଶ୍ରମହିଁ ଯେତେ ହେ ।

ଓଡ଼ିଆ ସାହିତ୍ୟରେ ଅକ୍ଷର ନିୟମର ଅନ୍ୟତମ ଆଚାର୍ଯ୍ୟ ଉପେନ୍ଦ୍ର ଭଞ୍ଜଙ୍କ ମତରେ ଏହା କାବ୍ୟକୁ ପ୍ରଦୀପ୍ତ କରେ । ଓଡ଼ିଆ କବିମାନଙ୍କର ନିୟମ ହେଉଛି ସଂସ୍କୃତ ଆଲଙ୍କାରିକ ବାମନଙ୍କ ରୀତି । ବାମନଙ୍କ ମତରେ ରୀତି ହେଉଛି, 'କାବ୍ୟର ଆତ୍ମା ରୀତିରାତ୍ମା କାବ୍ୟସ୍ୟ' (୨-୫) । ବିଶିଷ୍ଟ ପଦ ରଚନାକୁ ସେ ରୀତି ନାମ ଦେଇଛନ୍ତି, 'ବିଶିଷ୍ଟାପଦ ରଚନା ରୀତିଃ ।' (୨-୭) । ପଦ ରଚନାର ବିଶିଷ୍ଟ୍ୟ ବିଭିନ୍ନ ଗୁଣ ଉପରେ ନିର୍ଭର କରେ । 'ବିଶେଷୋ ଗୁଣାତ୍ମା ।' ଗଣ ହେଉଛି କାବ୍ୟକୁ ଶୋଭିତ କରୁଥିବା ଧର୍ମ । ବାମନଙ୍କ ମତରେ ଗଣ ହେଉଛି କାବ୍ୟର୍ ନିତ୍ୟ ଧର୍ମ, ଅଳଙ୍କାର ଅନିତ୍ୟ । ମଣିଷର ଦେହ ଗଠନ ସୁନ୍ଦର ନ ହେଲେ, କେବଳ ଅଳଙ୍କାରପିନ୍ଧି ସେ ଯେପରି ସୁନ୍ଦର ଦେଖାଯାଏ ନାହିଁ ସେହିପରି କେବଳ ଅଳଙ୍କାର ଦ୍ୱାର କାବ୍ୟ ସୁନ୍ଦର ହୁଏ ନାହିଁ । ସୁନ୍ଦର ଗଢ଼ଣ ଦରକାର । ରସକଲ୍ଲୋଳର କ-ନିୟମ କାବ୍ୟକୁ ସୁନ୍ଦର କରି ଗଢ଼ିବାରେ ସାହାଯ୍ୟ କରୁଥିଲେ ହେଁ, ଏହାକୁ କବି କାବ୍ୟର ଆତ୍ମା ରୂପେ ଗ୍ରହଣ କରିନାହାନ୍ତି । ରସକଲ୍ଲୋଳର କଥା, ନିୟମ, ଅଳଙ୍କାର ପ୍ରଭୃତି ବିଷୟରେ ସୂଚନା ଦେବା

ପରେ କବି ଦୀନକୃଷ୍ଣ ରସିକ, ଭକ୍ତ ତଥା ରସକଲ୍ଲୋଳର ଆଲୋଚନମାନଙ୍କୁ ଧୀଷଣା ପ୍ରୟୋଗ କରି ରସକଲ୍ଲୋଳରୁ ରସ ଜାତ କରିବାକୁ ଅନୁରୋଧ କରିଛନ୍ତି । 'କର ରସ ଜାତ, କରି ଧୀଷଣା ମନ୍ଦର ପର୍ବତ ।' କବିଙ୍କ ଉକ୍ତିରୁ ରସ କାବ୍ୟର ଆତ୍ମା ହୋଇଥିବା ଜଣାପଡ଼େ । ସାହିତ୍ୟ ଦର୍ପଣକାର ମଧ୍ୟ ରସାତ୍ମକ ବାକ୍ୟକୁ କାବ୍ୟ କହିଛନ୍ତି ଓ ରସକୁ କାବ୍ୟର ଆତ୍ମା ରୂପେ ସ୍ଥିର କରନ୍ତି । କାବ୍ୟରୁ ରସ ଜାତ କରିବାପାଇଁ କବି ଦୀନକୃଷ୍ଣ ଧୀଷଣାକୁ ଗ୍ରହଣ କଲାପରି ବିଶ୍ୱନାଥ ମଧ୍ୟ କାବ୍ୟ ରସର ଆସ୍ୱାଦନ ପାଇଁ ସ୍ୱତନ୍ତ୍ର ଯୋଗ୍ୟତାର ଆବଶ୍ୟକତା ଅନୁଭବ କରିଛନ୍ତି । ତାଙ୍କ ମତରେ ଏହା ଚିତ୍ତର ଅବସ୍ଥା ବିଶେଷ । 'ନ ଜାୟତେ ତଦାସ୍ୱାଦୋ ବିନା ରତ୍ୟାଦିବାସନାମ୍' ୩/୯ । ରତି ପ୍ରଭୃତି ବାସନା ନ ଥିଲେ ରସାସ୍ୱାଦ ହୁଏ ନାହିଁ । ରତ୍ୟାଦି ବାସନା ଦୁଇ ପ୍ରକାର-ଆଧୁନିକ ଓ ପ୍ରାକ୍ତନୀ । କେବଳ ପ୍ରାକ୍ତନୀ ବା କେବଳ ଆଧୁନିକୀ ବାସନା ଦ୍ୱାରା ରସାସ୍ୱାଦନ ଅସମ୍ଭବ । ଯଦି କେବଳ ପ୍ରାକ୍ତନୀ ବାସନାକୁ ରସାସ୍ୱାଦନର କାରଣ ରୂପେ ଗ୍ରହଣ କରାଯାଏ, ତାହା ହେଲେ ବେଦାଭ୍ୟାସଜଡ଼ ମୀମାଂସକମାନେ ମଧ୍ୟ ରସାସ୍ୱାଦନ କରିବାକୁ ସକ୍ଷମ ହୁଅନ୍ତେ, କିନ୍ତୁ ତାହା ହୁଏ ନାହିଁ । ଆଉ ଯଦି କେବଳ ଆଧୁନିକୀ ବାସନାକୁ କାରଣ ରୂପେ ସ୍ୱୀକାର କରାଯାଏ ତାହା ହେଲେ ସମସ୍ତ ସରାଗ ବ୍ୟକ୍ତି ସବୁବେଳେ ରସାସ୍ୱାଦନ କରି ପାରନ୍ତେ, କିନ୍ତୁ ତାହାବି ହୁଏ ନାହିଁ । ଏ ବିଷୟରେ ଧର୍ମଦତ୍ତଙ୍କ ମତ ହେଉଛି-

ସବାସନାନାଂ ସଭ୍ୟାନାଂ ରସସ୍ୟାସ୍ୱାଦନଂ ଭବେତ୍ ।
ନିର୍ବାସନାସ୍ତୁ ରଙ୍ଗାନ୍ତଃ କାଷ୍ଠକୁଡ୍ୟାଶ୍ମସନ୍ନିଭାଃ ।

ଯେଉଁସବୁ ସଭ୍ୟ (ସାମାଜିକ) ବାସନା ବିଶିଷ୍ଟ (ପ୍ରାକ୍ତନୀ ଓ ଆଧୁନିକୀ) ସେମାନେହି ରସାସ୍ୱାଦ କରିଥାନ୍ତି, ଯେଉଁମାନଙ୍କର ସେପରି ବାସନା ନାହିଁ, ସେମାନେ ରଙ୍ଗଶାଳାସ୍ଥିତ ଶୁଷ୍କକାଷ୍ଠଭିତ୍ତି ବା ପାଷାଣ ସଦୃଶ । ଦୀନକୃଷ୍ଣ ମଧ୍ୟ ସେମାନଙ୍କୁ ଶୁଷ୍କତରୁ ଓ ନପୁଂସକ ସହ ତୁଳନା କରିଛନ୍ତି । କାବ୍ୟର ରସାସ୍ୱାଦନ ପାଇଁ ପାଠକର ପ୍ରାକ୍ତନ ଓ ଆଧୁନିକ ସଂସ୍କାର ଯଥେଷ୍ଟ ନୁହେଁ, କାବ୍ୟ ବର୍ଣ୍ଣିତ ବିଷୟବସ୍ତୁର ସବିଶେଷ ଜ୍ଞାନ ଆବଶ୍ୟକ । ଏହି ଜ୍ଞାନର ଆହରଣ ପାଇଁ ଆବଶ୍ୟକ ହୁଏ ଚିତ୍ତର ନିର୍ମଳତା । ସତ୍ତ୍ୱଗୁଣ ଦ୍ୱାରା ଚିତ୍ତ ନିର୍ମଳ ହୁଏ ଓ ବିଷୟବସ୍ତୁର ଜ୍ଞାନ ହୁଏ । 'ସତ୍ତ୍ୱାତ୍ ସଞ୍ଜାୟତେ ଜ୍ଞାନମ୍' ଏହି ହେଉଛି ଦୀନକୃଷ୍ଣଙ୍କ ଧୀଷଣା ।

ରସକଲ୍ଲୋଳର ରସ-ଆସ୍ୱାଦନକାରୀମାନଙ୍କ ସମ୍ବନ୍ଧରେ ସୂଚନା ଦେଇ କବି ଦୀନକୃଷ୍ଣ କୁହନ୍ତି ଯେ ସେମାନେ କେବଳ କାବ୍ୟ-ରସିକ ହେଲେ ହେବନାହିଁ, ରସିକ-ଭକ୍ତ ହେବା ଉଚିତ । "କୃଷ୍ଣ ସେବକ ଗୋପୀଭକ୍ତି ଯାର । କରନ୍ତୁ ସେମାନେ କଣ୍ଠର ହାର ।" ଚୈତନ୍ୟ ଚରିତାମୃତରେ ମଧ୍ୟ ଅଛି,

ଏହି ରସ ଆସ୍ୱାଦ ନାହିଁ ଅଭକ୍ତେର ଗଣେ,

କୃଷ୍ଣ ଭକ୍ତ ଗଣ କରେ ରସ ଆସ୍ୱାଦନେ । ଶ୍ରୀଚୈ. ଚ.୨।୨୩।୫୧

ରୂପ ଗୋସ୍ୱାମୀ ମଧ୍ୟ କହିଛନ୍ତି,

ସର୍ବଥୈବ ଦୁରୂହୋଽୟମ-ଭକ୍ତୈର୍ଭଗବଦ୍ରସଃ ।

ତଂ ପାଦାମ୍ବୁଜ ସର୍ବ୍ବସ୍ୱୈର୍ଭକ୍ତୈରେବାନୁରସ୍ୟତେ । ୨।୫।୭୮

ଏହି ଭକ୍ତିରସ ଅଭକ୍ତଗଣଙ୍କ ପକ୍ଷରେ ସର୍ବପ୍ରକାରେ ଦୁଷ୍ପ୍ରାପ୍ୟ । କିନ୍ତୁ ଶ୍ରୀକୃଷ୍ଣଙ୍କ ପାଦାମ୍ବୁଜ ଯେଉଁମାନଙ୍କର ସର୍ବସ୍ୱ, ସେହି ଭକ୍ତଗଣ ଏହାକୁ ନିରନ୍ତର ଆସ୍ୱାଦନ କରିପାରିବେ । କବିତ୍ୱ ସମ୍ବନ୍ଧରେ କବି ଦୀନକୃଷ୍ଣଙ୍କ ଉକ୍ତି ହେଉଛି ଏହା ବନୀତା ସଦୃଶ (କବିତ୍ୱ ବନିତା), ମଳୟ ପବନ ମତ ଓ ଶାନ୍ତି ଜଳପରି (କବିତ୍ୱ ଶାନ୍ତିଜଳ ଏକାକାର) । କବିତ୍ୱର ରସକୁ ସେ ଉତ୍ତମ ଗୋକ୍ଷୀର ସହ ତୁଳନା କରିଛନ୍ତି । କବିତ୍ୱରୂପୀ ଗୋକ୍ଷୀର ସହ ସ୍ନେହ ସାକର ସଂଯୋଗ କଲେ ଏହାର ଆସ୍ୱାଦନ ଚମତ୍କାରିତ୍ୱ ବୃଦ୍ଧି ପାଇଥାଏ । କବିତ୍ୱକୁ କାନ୍ତା ସହ ତୁଳନା କରିବାର ପରମ୍ପରା ଅତି ପ୍ରାଚୀନ । ମମ୍ମଟଙ୍କ ମତରେ କାବ୍ୟ ବା କବିତା ଯେଉଁ ଉପଦେଶ ଦିଏ ତାହା ନୀରସ ଶାସ୍ତ୍ରବାକ୍ୟର ଉପଦେଶ ନୁହେଁ, 'କାନ୍ତାସମ୍ମିତତୟୋପଦେଶ ଯୁଜେ ।' କବିତ୍ୱ ଯେ କେବଳ କାନ୍ତା ସଦୃଶ ଉପଦେଶ ଦିଏ ତାହାନୁହେଁ, ମଳୟ ପବନ ପରି ରସିକ ତରୁକୁ ପଲ୍ଲବିତ କରେ ଅର୍ଥାତ୍ ରସିକକୁ ନୂତନ ଜୀବନ ପ୍ରଦାନ କରେ । ରସିକର ଅନ୍ତରିନ୍ଦ୍ରିୟ ଓ ବହିରିନ୍ଦ୍ରିୟ ଉଭୟ ବିସ୍ତାରିତ ହୁଏ । ରସିକ ଅନିର୍ବଚନୀୟ ସୁଖ ଲାଭକରେ । ସାହିତ୍ୟ ଦର୍ପଣକାର କାବ୍ୟର ମହିମା ବର୍ଣ୍ଣନା କରି କୁହନ୍ତି ଯେ କାବ୍ୟ ପାଠକଲେ ଅଳ୍ପବୁଦ୍ଧିସମ୍ପନ୍ନ ବ୍ୟକ୍ତି ମଧ୍ୟ ଅନାୟାସରେ ଧର୍ମ-ଅର୍ଥ-କାମ-ମୋକ୍ଷ ରୂପ ଚତୁର୍ବର୍ଗ ଫଳ ଲାଭକରେ ।

ଚତୁର୍ବର୍ଗ ଫଳ ପ୍ରାପ୍ତିଃ ସୁଖାଦଳ୍ପଧିୟାମପି,

କାବ୍ୟାଦେବ ଯତସ୍ତେନ ତତସ୍ୱରୂପଂ ନିରୂପ୍ୟତେ ।୧।

ସାହିତ୍ୟ ଦର୍ପଣକାର ନିଜ ଉକ୍ତିର ପୁଷ୍ଟତା ପାଇଁ ଅନ୍ୟ ଗୋଟିଏ ପ୍ରାଚୀନ ବାକ୍ୟ ଉଦ୍ଧାର କରି କହିଛନ୍ତି,

ଧର୍ମାର୍ଥ କାମମୋକ୍ଷେଷୁ ବୈଚକ୍ଷଣାଂ କଳାସୁଚ

କରୋତି କୀର୍ତ୍ତି-ପ୍ରୀତିଞ୍ଚ ସାଧୁକାବ୍ୟ ନିଷେବଣମ୍ ।

ଅର୍ଥାତ ସାଧୁକାବ୍ୟ ନିଷେବଣ ଫଳରେ ଧର୍ମାର୍ଥକାମମୋକ୍ଷ ଏବଂ ନୃତ୍ୟଗୀତାଦି କଳାବିଦ୍ୟାରେ ପାରଦର୍ଶିତା ପ୍ରାପ୍ତ ହୁଏ, କୀର୍ତ୍ତି ଓ ପ୍ରୀତି ମଧ୍ୟ ମିଳେ । ବେଦ ମଧ୍ୟ କୁହେ, "ଏକଃ ଶବ୍ଦଃ ସୁପ୍ରଯୁକ୍ତଃ ସମ୍ୟଗ୍‌ଜ୍ଞାତଃ ସ୍ୱର୍ଗେ ଲୋକେଚ କାମଧୁଗ ଭବତି ।" ଅର୍ଥାତ୍ ଗୋଟିଏ ଶବ୍ଦ ଯଦି ସୁପ୍ରଯୁକ୍ତ ହୋଇ ସମ୍ୟକ୍‌ରୂପେ ଜ୍ଞାତ ହୁଏ, ତାହାହେଲେ ସେହି ଗୋଟିକ ଶବ୍ଦ ସ୍ୱର୍ଗ ଓ ମର୍ତ୍ତ୍ୟରେ କାମଫଳପ୍ରସୂ ହୋଇଥାଏ ।

କାବ୍ୟ ପାଠଦ୍ୱାରା ଚତୁର୍ବର୍ଗଫଳ ପ୍ରାପ୍ତି ହୁଏ । ବେଦ ପାଠରୁ ମଧ୍ୟ ଚତୁର୍ବର୍ଗ ମିଳେ । ପାର୍ଥକ୍ୟ ହେଉଛି ବେଦ ନୀରସ ଓ କାବ୍ୟ ସରସ । ଯେଉଁଠି ପଣ୍ଡିତମାନେ ଅତି କଷ୍ଟରେ ବେଦର ମର୍ମ ଅବଗତ ହୋଇଥାନ୍ତି, ସେଠି ଅତି ସାଧାରଣ ବ୍ୟକ୍ତି କାବ୍ୟରୁ ପରମାନନ୍ଦ ଲାଭ କରିଥାଏ । ସେଥିପାଇଁ କାବ୍ୟ ବିଶେଷଭାବେ ଆଚରଣୀୟ । ସାହିତ୍ୟ ଦର୍ପଣକାର କୁହନ୍ତି,

କଟୁକୌଷଧୋପଶମନୀୟସ୍ୟ ରୋଗସ୍ୟ ସିତଶର୍କରୋପଶମନୀୟତ୍ୱେ

କସ୍ୟ ବା ରୋଗିଣଃ ସିତଶର୍କରାପ୍ରବୃତ୍ତିଃ ସାଧୀୟସୀ ନସ୍ୟାତ୍ ?

ଅର୍ଥାତ କଟୁରସଯୁକ୍ତ ଔଷଧ ସେବନରେ ଯେଉଁ ରୋଗ ଦୂର ହୁଏ, ତାହା ଯଦି ସୁମିଷ୍ଟ ଶର୍କରା ସେବନ ଦ୍ୱାରା ବିନାଶ ହୁଏ ତାହାହେଲେ ସୁମିଷ୍ଟ ଶର୍କରା ତ୍ୟାଗକରି କିଏ ବା ତିକ୍ତ ଔଷଧ ସେବନ କରିବ ? କାବ୍ୟ ପ୍ରକାଶକାର ମମ୍ମଟଙ୍କ ମତରେ କାବ୍ୟର ଉପକାରିତା ହେଉଛି, ଯଶଃ, ଅର୍ଥପ୍ରାପ୍ତି, ଅମଙ୍ଗଳ-ନିବୃତ୍ତି, ବ୍ୟାବହାରିକ ଜଗତର ଅଭିଜ୍ଞତାଲାଭ, ପରମ-ସୁଖ-ପ୍ରାପ୍ତ ଏବଂ ସଦୁପଦେଶ-ପ୍ରାପ୍ତି ।

କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାରବିଦେ ଶିବେତରକ୍ଷତୟେ

ସଦ୍ୟଃ ପରନିର୍ବୃତୟେ କାନ୍ତା ସମ୍ମିତତୟୋପଦେଶ ଯୁଜେ ।୧।୨।

ମଳୟ ପବନର ସ୍ପର୍ଶରେ ବୃକ୍ଷ ସବୁ ନବକିଶଳୟ ଖଚିତ ହୋଇ ଅପୂର୍ବ ଓ ଅତୁଳନୀୟ ରମଣୀୟତା ଲାଭ କରିଥାନ୍ତି । ବୃକ୍ଷସବୁର ସୌନ୍ଦର୍ଯ୍ୟ କେବଳ ଯେ ବୃକ୍ଷସବୁକୁ ଶ୍ରୀମଣ୍ଡିତ କରେ ତାହାନୁହେଁ, ପୃଥିବୀର ଅନ୍ୟାନ୍ୟ ଜୀବଜନ୍ତୁ ଏହାର ପ୍ରଭାବରେ ପ୍ରଭାବିତ ହୋଇଥାନ୍ତି । କବିତ୍ୱ ଦ୍ୱାରା ରସିକଜନ ଯେଉଁଭାବରେ

ପଲ୍ଲବିତ ହୋଇଥାନ୍ତି, ଯେଉଁ ଆନନ୍ଦର ଆସ୍ୱାଦନ କରନ୍ତି, ତାହା ନିକଟରେ ଧର୍ମ, ଅର୍ଥ, କାମ, ମୋକ୍ଷ ଅତି ତୁଚ୍ଛ । ଚତୁର୍ବର୍ଗ ଫଳ ପ୍ରାପ୍ତିରେ ମଣିଷର ବ୍ୟକ୍ତିଗତ ସ୍ୱାର୍ଥ ନିହିତ, ଅନ୍ୟକୁ ପ୍ରଭାବିତ କରିବାର ଶକ୍ତି ଏଥିରେ ନାହିଁ । କିନ୍ତୁ କବିତ୍ୱରୁ ଯେଉଁ ଆନନ୍ଦ ମିଳେ, ତାହା କେବଳ ରସିକମାନଙ୍କ ପାଇଁ ନୁହେଁ, ରସିକମାନଙ୍କ ସମ୍ପର୍କରେ ଆସୁଥିବା ଲୋକମାନେ ମଧ୍ୟ ଏହି ଅପୂର୍ବ ଆନନ୍ଦରେ ନିମଜ୍ଜିତ ହୁଅନ୍ତି । କବି କର୍ଣ୍ଣପୁର ଭଗବଦ୍‌ବିଷୟକ ଅପ୍ରାକୃତ କାବ୍ୟର ମହିମା ବର୍ଣ୍ଣନ କରି ଲେଖିଛନ୍ତି,

ଯଶଃ ପ୍ରଭୃତ୍ୟେବ ଫଳଂ ନାସ୍ୟ କେବଳ ମିଷ୍ୟତେ,
ନିର୍ମ୍ମାଣକାଳେ ଶ୍ରୀକୃଷ୍ଣଗୁଣଲାବଣ୍ୟକେଳିଷୁ ।
ଚିତ୍ତସ୍ୟାଭିନିବେଶେନ ସାନ୍ଦ୍ରାନନ୍ଦଲୟସ୍ତୁ ଯଃ ।
ସ ଏବ ପରମୋ ଲାଭଃ ସ୍ୱାଦକାନାଂ ତଥୈବ ସଃ । ୧।୮୦୯

ଅର୍ଥାତ୍ କେବଳ ଯଶ ପ୍ରଭୃତି କାବ୍ୟ ନିର୍ମାଣର ଫଳ ନୁହେଁ, କାବ୍ୟ- ରଚନାର ମୁଖ୍ୟ ଫଳ ଏବଂ ପରମଲାଭ ହେଉଛି-କାବ୍ୟ ରଚନା କାଳରେ ଯେପରି କବିର ଚିତ୍ତ, ଶ୍ରୀକୃଷ୍ଣଙ୍କର ରୂପ-ଗୁଣ-ଲାବଣ୍ୟ ଏବଂ ଲୀଳାରେ ନିବିଡ଼ ରୂପେ ଅଭିନିବିଷ୍ଟ ହୋଇ ସାନ୍ଦ୍ରାନନ୍ଦଂ ଲାଭ କରିଥାଏ ସେହିପରି ଯେଉଁମାନେ ଏହି କାବ୍ୟର ରସାସ୍ୱାଦନ କରନ୍ତି, ସେମାନେ ମଧ୍ୟ ସେହିପରି ଅବସ୍ଥା ଲାଭ କରିଥାନ୍ତି ।

କବିତ୍ୱ ମାନବ ଜାତିକୁ କେ କେବଳ ପରମାନନ୍ଦ ଦାନ କରେ ତାହା ନୁହେଁ, ପରମ ଶାନ୍ତି ମଧ୍ୟ ଦିଏ । ଏ ବିଷୟରେ ଦୀନକୃଷ୍ଣଙ୍କ ଉକ୍ତି ହେଉଛି 'କବିତ୍ୱ ଶାନ୍ତିଜଳ ଏକାକାର' । ପୂଜା, ହୋମ ପ୍ରଭୃତିର ସମାପ୍ତ ହେଲେ ବ୍ରାହ୍ମଣ ଉପସ୍ଥିତ ଜନତାକୁ ପୂଜା ଜଳ ଦ୍ୱାର ଅଭିସିଞ୍ଚିତ କରେ । ଏହି ପୂଜା ଜଳକୁ ଶାନ୍ତି ଉଦକ, ଶାନ୍ତିଜଳ ବା ଶାନ୍ତିବାରି କୁହନ୍ତି । ଶାନ୍ତିଜଳ ଦ୍ୱାରା ଉପସ୍ଥିତ ଜନତାର ଶରୀର ଶୀତଳ ହୁଏ ନାହି, ହୃଦୟକୁ ଶାନ୍ତିଦାନ କରିବା ଏହାର ଲକ୍ଷ୍ୟ । ଲୌକିକ ସୁଖ-ଦୁଃଖର ଅବସାନ ହେଲେ ମଣିଷ ଯେଉଁ ସୁଖ ପାଏ, ଶମ ଗୁଣର ଆବିର୍ଭାବ ଦ୍ୱାରା ସେହି ସୁଖ ଜାତ ହୁଏ । ଶମ ଗୁଣର ବ୍ୟାଖ୍ୟା କରି ଶ୍ରୀକୃଷ୍ଣ କହିଛନ୍ତି, "ଶମୋ ମନିଷ୍ଠତା ବୁଦ୍ଧେଃ ।" ୧୧।୧୯।୩୬ ଭଗବାନଙ୍କଠାରେ ବୁଦ୍ଧିର ନିଷ୍ଠତା ହେଉଛି ଶମ । ଜୀବନର ସମସ୍ତ ବିଷୟବାସନା, ଲୋଭ, ମୋହ, ରାଗ-ଅହଙ୍କାର ଦୂର କରି ଭଗବାନଙ୍କଠାରେ ଆତ୍ମସମର୍ପଣ

କରି ମଣିଷ ଯେଉଁ ଶାନ୍ତି ପାଏ, କବିତ୍ୱ ସେହି ପ୍ରକାର ଶାନ୍ତି ଦିଏ । ଏ ଶାନ୍ତିର ତୁଳନା ନାହିଁ । ଜୀବନରେ ଏ ପ୍ରକାର ଶାନ୍ତି ପାଇଲେ, ମଣିଷ ହୃଦୟରୁ ଆପଣା ପର ଭେଦ ଲୋପ ପାଇଯାଏ । ସେତେବେଳେ କେହି ଶତ୍ରୁ ନୁହନ୍ତି ତ କେହି ମିତ୍ର ନୁହନ୍ତି । ବ୍ରହ୍ମାନନ୍ଦ ଓ ମୋକ୍ଷ ପ୍ରଭୃତି ଏହା ନିକଟରେ ଅତି ତୁଚ୍ଛ । ବ୍ରହ୍ମାନନ୍ଦରେ ନିମଗ୍ନ 'ଚତୁଃସନ' ଭଗବାନଙ୍କ ଚରଣ ସଂଲଗ୍ନ ତୁଳସୀର ଗନ୍ଧାମୋଦରେ ଆକୃଷ୍ଟ ହୋଇ ବ୍ରହ୍ମାନନ୍ଦ କଥା ଭୁଲିଯାଇ କହିଛନ୍ତି,

ନାତ୍ୟନ୍ତିକଂ ବିଗଣୟନ୍ତ୍ୟପି ତେ ପ୍ରସାଦଂ
କିନ୍ତ୍ୱନ୍ୟଦର୍ପିତଭୟଂ ଭ୍ରୁବ ଉନ୍ନୟୈସ୍ତେ ।
ଯେଽଙ୍ଗ ତ୍ୱଦଙ୍ଘ୍ରି ଶରଣା ଭବତଃ କଥାୟାଃ
କୀର୍ତ୍ତନ୍ୟତୀର୍ଥଯଶସଃ କୁଶଳା ରସଜ୍ଞାଃ ॥
କାମଂ ଭବଃ ସ୍ୱବୃଜିନୈର୍ନିରୟେଷୁ ନସ୍ତା-
ଚେତୋଽଳିବଦ୍ ଯଦି ନୁ ତେ ପଦୟୋ ରମେତ ।
ବାଚଶ୍ଚ ନସ୍ତୁଳସୀବଦ୍ ଯଦି ତେଽଙ୍ଘ୍ରିଶୋଭାଃ
ପୂର୍ଯ୍ୟେତ ତେ ଗୁଣଗଣୈର୍ଯଦି କର୍ଣ୍ଣରନ୍ଧ୍ରଃ ।(ଶ୍ରୀଭା ୩।୧୫।୪୮-୪୯)

ଅର୍ଥାତ୍ ହେ ପ୍ରଭୁ ! ଆପଣଙ୍କ ସୁଯଶ କୀର୍ତ୍ତନଯୋଗ୍ୟ ଓ ସାଂସାରିକ ଦୁଃଖ ସବୁର ନିବୃତ୍ତିକାରକ । ଆପଣଙ୍କ ଚରଣାଶ୍ରିତ ଭକ୍ତ, ଯେଉଁମାନେ ଆପଣଙ୍କ କଥାର ରସିକ, ସେମାନେ ମୋକ୍ଷପଦକୁ ତୁଚ୍ଛ ଜ୍ଞାନ କରନ୍ତି । ପୁଣି ଯେଉଁମାନେ ଆପଣଙ୍କ ଭ୍ରୁ ଚାଳନରେ ଭୟଭୀତ ହୋଇଯାନ୍ତି, ସେହି ଇନ୍ଦ୍ରପଦ ପ୍ରଭୃତି ଭୋଗ ବିଷୟରେ କଣ କୁହାଯିବ ? ଭଗବାନ୍ ! ଯଦି ମୋର ଚିତ୍ତ ଭ୍ରମର ସଦୃଶ ଆପଣଙ୍କ ଚରଣ-କମଳରେ ସଦା ରମଣ କରିପାରେ, ମୋର ବାଣୀ ତୁଳସୀପରି ଆପଣଙ୍କ ଚରଣ ସମ୍ପର୍କରେ ସୁଶୋଭିତ ହୁଏ ଓ ମୋର କର୍ଣ୍ଣ ଆପଣଙ୍କ ସୁଯଶ-ସୁଧାରେ ପରିପୂର୍ଣ୍ଣ ରୁହେ, ତାହାହେଲେ ମୋର ପାପ ଯୋଗୁଁ ମୁଁ ଯଦି ନରକ ଗମନ କରେ, ତେବେ ବି ମୋର ଚିନ୍ତା ନାହିଁ ।

ଭଗବଦ୍‌ଲୀଳା ଗାନ ଓ ଶ୍ରବଣରେ ଯେଉଁ ଆନନ୍ଦ ମିଳେ, ତାହା ଏକ ପକ୍ଷରେ ବ୍ରହ୍ମାନନ୍ଦର ନିକୃଷ୍ଟତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ନରକଯନ୍ତ୍ରଣାକୁ ମଧ୍ୟ ବିସ୍ମୃତ କରାଇଦିଏ । ଭକ୍ତିରସାମୃତସିନ୍ଧୁର ଲେଖକ ଭକ୍ତିମଖର ମହିମା ପ୍ରଖ୍ୟାପନ କରି ଲେଖିଛନ୍ତି :

ବ୍ରହ୍ମାନନ୍ଦୋ ଭବେଦେଷ ଚେତ୍ ପରାର୍ଦ୍ଧଗୁଣୀକୃତଃ
ନୈତି ଭକ୍ତିସୁଖାମ୍ଭୋଧେଃ ପରମାଣତୁଳାମପି ।

ଅର୍ଥାତ୍ ବ୍ରହ୍ମାନନ୍ଦକୁ ପରାର୍ଦ୍ଧଗୁଣ ବୃଦ୍ଧି କଲେ, ତାହା ଭକ୍ତିସୁଖସମୁଦ୍ରର ପରମାଣୁତୁଲ୍ୟ ହେବନାହିଁ । ଯେଉଁ କବିତ୍ୱ କବିର ଅଶେଷ ଦୁରିତ ନାଶକରି କବିକୁ ଅନିର୍ବଚନୀୟ ଓ ଅତୁଳନୀୟ ଆନନ୍ଦ ଦାନ କରିବା ସଙ୍ଗେ ସଙ୍ଗେ ରସିକ ସମାଜକୁ ସୁଖ ଓ ଶାନ୍ତି ପ୍ରଦାନ କରେ, କବି ଦୀନକୃଷ୍ଣ ତଥା ବୈଷ୍ଣବ ଆଲଙ୍କାରିକମାନଙ୍କ ମତରେ ତାହାହିଁ ପ୍ରକୃତ କବିତ୍ୱ । ସାହିତ୍ୟ ଦର୍ପଣକାର କାବ୍ୟ ରସାସ୍ୱାଦନଜନିତ ଆନନ୍ଦକୁ ବ୍ରହ୍ମ-ସ୍ୱାଦ-ସହୋଦର କହିଛନ୍ତି । ବ୍ରହ୍ମାନନ୍ଦରେ ନିମଗ୍ନ ବ୍ୟକ୍ତି ବ୍ରହ୍ମକଥା ଓ ନିଜ କଥା ବିସ୍ମୃତ ହୋଇଯାଏ । ସେ କେବଳ ବ୍ରହ୍ମାନନ୍ଦ ଆସ୍ୱାଦନରେ ତନ୍ମୟ ଥାଏ । ସେହିପରି ସହୃଦୟ ସାମାଜିକ କାବ୍ୟରସର ଆସ୍ୱାଦନରେ ତନ୍ମୟ ହେଲେ, ଆଉ କାହାରି ଖୋଜଖବର ରଖେନାହିଁ । ଭଗବଦ୍‌ବିଷୟକ କାବ୍ୟରସ ନିକଟରେ ଏହା ମଧ୍ୟ ତୁଚ୍ଛ । ଏହା ବ୍ରହ୍ମାସ୍ୱାଦ ସହୋଦର ନୁହେଁ ବା ବ୍ରହ୍ମାନନ୍ଦ ମଧ୍ୟ ନୁହେଁ । ଏହିକାବ୍ୟରସ ନିକଟରେ ବ୍ରହ୍ମାନନ୍ଦ ଗୋଷ୍ପଦ ତୁଲ୍ୟ । ଏହା ହିଁ ଦୀନକୃଷ୍ଣଙ୍କ ନିର୍ମଳ କବିତ୍ୱ । "କବିହୋଇ କରୁଥିବ ନିର୍ମଳ କବିତ୍ୱ ।" 'ନିର୍ମଳ' ଶବ୍ଦ ପ୍ରୟୋଗରେ କବି କେବଳ ଦୋଷବର୍ଜ୍ଜିତ କବିତ୍ୱ କଥା କହିନାହାନ୍ତି, କୃଷ୍ଣକଥାରେ ପବିତ୍ର ହୋଇଥିବା କବିତ୍ୱ ବିଷୟରେ କହିଛନ୍ତି ।

ଦୋଷହୀନ କାବ୍ୟ ରଚନା କରିବା ପ୍ରତ୍ୟେକ କବିର ଆଦର୍ଶ । ଅଗ୍ନିପୁରାଣରେ ଅଛି, "କାବ୍ୟଂ ସ୍ଫୁଟମଳଙ୍କାରବ୍ ଗୁଣବଦ୍ ଦୋଷବର୍ଜ୍ଜିତମ୍" । ୩୩୫।୭। ଅର୍ଥାତ୍ କାବ୍ୟରେ ସ୍ଫୁଟ ଅଳଙ୍କାର ରହିବ, ଗୁଣ ଥିବ ଓ ଦୋଷବର୍ଜ୍ଜିତ ହୋଇଥିବ । କାବ୍ୟ ପ୍ରକାଶକାର ମମ୍ମଟ ମଧ ଦୋଷହୀନ, ଗୁଣବିଶିଷ୍ଟ ଏବଂ ଅଳଙ୍କାରହୀନ ଶବ୍ଦାର୍ଥକୁ କାବ୍ୟ କହିଛନ୍ତି, "ତଦଦୋଷୌ ଶବ୍ଦାର୍ଥୌ ସଗୁଣା ବନଳଂକୃତୀ ପୁନଃ କ୍ୱାପି ।" କାବ୍ୟର ପୂର୍ବୋକ୍ତ ବ୍ୟାଖ୍ୟା ପରବର୍ତ୍ତୀ ଯୁଗରେ ପରିବର୍ତ୍ତିତ ହୋଇଛି । ବିଶ୍ୱନାଥଙ୍କ ମତରେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ କାବ୍ୟ ଏକାନ୍ତ ଅସମ୍ଭବ । 'ସର୍ବଥା ନିର୍ଦୋଷସ୍ୟୈ-କାନ୍ତମ-ସମ୍ଭବାତ୍ ।' ଦୋଷତ୍ରୁଟି ସତ୍ତ୍ୱେ ଯେଉଁ କାବ୍ୟ ରସସୃଷ୍ଟିରେ ସଫଳ, ସେ କାବ୍ୟ; ଯେ ରସସୃଷ୍ଟି କରିବାରେ ଅକ୍ଷମ, ସେଠି କାବ୍ୟତ୍ୱ ନାହିଁ । ମଣିଷ କଣା ବା ଛୋଟା ହେଲେ ଶରୀର ଅସୁନ୍ଦର ଦିଶେ, ଆତ୍ମା ନୁହେଁ । ସେହପରି ଶବ୍ଦାର୍ଥର ଦୋଷ କାବ୍ୟର ଆତ୍ମାକୁ

ଦୂଷିତ କରିପାରେ ନାହିଁ । କବି କର୍ଣ୍ଣପୁର ମଧ୍ୟ କହିଛନ୍ତି, 'ରସାପକର୍ଷକୋ ଦୋଷଃ ।' ଯାହା ରସର ଅପକର୍ଷ ସାଧକ ତାହା ଦୋଷ । ଆନନ୍ଦବର୍ଦ୍ଧନ ଦୋଷକୁ ଦୁଇଭାଗରେ ବିଭକ୍ତ କରନ୍ତି - ଅବ୍ୟୁତ୍ପତ୍ତିକୃତ ଓ ଅଶକ୍ତିଜନିତ । କାବ୍ୟ ମଧ୍ୟରେ ଥିବା ବିଷୟବସ୍ତୁଗତ ଅସଂଗତି ଓ ଅନୌଚିତ୍ୟ, ଭାଷାର କ୍ଲିଷ୍ଟତା ଓ ଛନ୍ଦର ଲାଳିତ୍ୟହୀନତା ପ୍ରଭୃତି ଅବ୍ୟୁତ୍ପତ୍ତିକୃତ ଦୋଷ । ଏସବୁ ଦୋଷ କାବ୍ୟ ପକ୍ଷରେ ମାରାତ୍ମକ ନୁହେଁ । କାବ୍ୟର ଅସଲ ଦୋଷ ହେଉଛି ରସ ସୃଷ୍ଟି କରିବାରେ ଅକ୍ଷମତା । କବି ଦୀନକୃଷ୍ଣ 'ନିର୍ମଳ କବିତ୍ୱ' ଦ୍ୱାରା କବିତ୍ୱର ପବିତ୍ରତା ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି । କୃଷ୍ଣକଥାରେ କାବ୍ୟ ଲେଖି କବି ଯେପରି ପବିତ୍ର ହୁଏ, ବକ୍ତା ଓ ଶ୍ରୋତା ଉଭୟେ ସେହିପରି ପବିତ୍ର ହୁଅନ୍ତି । ଦୀନକୃଷ୍ଣଙ୍କ ମତରେ କୃଷ୍ଣକଥା ହେଉଛି, 'ରସ ମଧ୍ୟେ ଏ ପୀୟୁଷ' । ତେଣୁ କବିତ୍ୱରୁ ରସ ସୃଷ୍ଟି କରିବାର ପ୍ରଶ୍ନ ଏଠି ନାହିଁ । କୃଷ୍ଣକଥା ବର୍ଣ୍ଣନା କରିବା ମାତ୍ରେ ରସ ସୃଷ୍ଟି ହୋଇଥାଏ । ରସ ସୃଷ୍ଟି କରିବା ସଙ୍ଗେ ସଙ୍ଗେ କୃଷ୍ଣକଥାର ବର୍ଣ୍ଣନା ଦ୍ୱାରା କବିର ଦୁରିତ କ୍ଷୟ ହୁଏ ଓ କବି ଭବ-ସିନ୍ଧୁ ପାରି ହୁଅନ୍ତି । "କବି ସେ ଚରିତ ମନୋହର ଗୀତ କରି ଭବସିନ୍ଧୁ ତରନ୍ତି" (୮-୩୦) । ଶ୍ରୀମଦ୍‌ଭାଗବତରେ ପରମଭକ୍ତ ନାରଦ ଭାଗବତରସର ବର୍ଣ୍ଣନା କରି କବି ଦୀନକୃଷ୍ଣଙ୍କ ଅନୁରୂପ ଉକ୍ତି କହିଛନ୍ତି :

ନ ଯଦ୍‌ବଚଶ୍ଚିତ୍ରପଦଂ ହରେର୍ଯଶୋ
ଜଗତ୍‌ପବିତ୍ରଂ ପ୍ରଗଣୀତ କର୍ହିଚିତ୍ ।
ତଦ୍‌ବାୟସଂ ତୀର୍ଥମୁଶନ୍ତି ମାନସା
ନ ଯତ୍ର ହଂସା ନିରମନ୍ତ୍ୟଶିକ୍‌କ୍ଷୟାଃ ।
ତଦ୍‌ବାଗ୍‌ବିସର୍ଗୋଜଗତାଘବିପ୍ଲବୋ
ଯସ୍ମିନ୍ ପ୍ରତିଶ୍ଳୋକମବଦ୍ଧବତ୍ୟପି ।
ନାମାନ୍ୟନନ୍ତସ୍ୟ ଯଶୋଽଙ୍କିତାନିଯ-
ଚ୍ଛୃଣ୍ୱନ୍ତି ଗାୟନ୍ତି ଗୃଣନ୍ତି ସାଧବଃ ।

ଅର୍ଥାତ୍ ଯେଉଁ ଗ୍ରନ୍ଥ ରସ ଭାବ ଅଳଙ୍କାରାଦିଯୁକ୍ତ ବିଚିତ୍ର ପଦରେ ରଚିତ, ଅଥଚ ଜଗତକୁ ପବିତ୍ର କରୁଥିବା ଭଗବାନ ଶ୍ରୀକୃଷ୍ଣଙ୍କ ଯଶ ଗାନ କରେ ନାହିଁ, ସେ ଗ୍ରନ୍ଥ କାକତୀର୍ଥ (ଉଚ୍ଛିଷ୍ଟ ପକେଇବା ସ୍ଥାନ) ସଦୃଶ ଅପବିତ୍ର ।

ଶକ୍ତିର୍ନିପୁଣତା-ଲୋକଶାସ୍ତ୍ର କାବ୍ୟାଦ୍ୟବେକ୍ଷଣାତ୍ ।
କାବ୍ୟଜ୍ଞ-ଶିକ୍ଷୟାଭ୍ୟାସ ଇତି ହେତୁସ୍ତଦୁଦ୍‌ଭବେ ॥
(କାବ୍ୟ-ପ୍ରକାଶ, ପ୍ରଥମ ଉଲ୍ଲାସ, ୩ୟ କାରିକା)

ରାଜଶେଖରଙ୍କ ମତରେ ପ୍ରତିଭା ଓ ବ୍ୟୁତ୍ପତ୍ତି କାବ୍ୟ-ରଚନାର ମୂଳ ହେତୁ । ବ୍ୟୁତ୍ପତ୍ତି ଶବ୍ଦଦ୍ୱାରା ସେ ଅଧ୍ୟୟନ, ଅଭ୍ୟାସ ଏବଂ ଉଚିତ ଓ ଅନୁଚିତ ବିଚାର କରିବାର ଶକ୍ତିକୁ ବୁଝାଇଛନ୍ତି । ଆନନ୍ଦ ବ୍ୟୁତ୍ପତ୍ତି ଅପେକ୍ଷା ପ୍ରତିଭାକୁ ପ୍ରାଧାନ୍ୟ ଦେଇଛନ୍ତି । ତାଙ୍କ ମତରେ ପ୍ରତିଭା କବିର ବ୍ୟୁତ୍ପତ୍ତିଜନିତ ଦୋଷସବୁକୁ ଆବୃତ କରିଦିଏ । କେତେକଙ୍କ ମତରେ ବ୍ୟୁତ୍ପତ୍ତି, ପ୍ରତିଭା ଅପେକ୍ଷା ପ୍ରଧାନ । ରାଜଶେଖର ଉଭୟ ପ୍ରତିଭା ଓ ବ୍ୟୁତ୍ପତ୍ତିର ମିଳନକୁ କାବ୍ୟ-ରଚନାର ମୂଳ ଉତ୍ସରୂପେ ଗ୍ରହଣ କରି କହିଛନ୍ତି, ଯେପରି ଲାବଣ୍ୟ ବ୍ୟତୀତ କେବଳ ଶରୀର-ସୌଷ୍ଠବ ସୌନ୍ଦର୍ଯ୍ୟ ଦାନ କରେ ନାହିଁ, ପୁଣି ଶରୀର-ସୌଷ୍ଠବ ବ୍ୟତୀତ କେବଳ ଲାବଣ୍ୟ ଶ୍ରେଷ୍ଠ ସୌନ୍ଦର୍ଯ୍ୟ ଦାନ କରିପାରେ ନାହିଁ, ସେହିପରି ପ୍ରତିଭା ଓ ବ୍ୟୁତ୍ପତ୍ତିର ମିଳନ ନ ହେଲେ ଶ୍ରେଷ୍ଠ କବିତ୍ୱ ଅସମ୍ଭବ ।

କବି ଦୀନକୃଷ୍ଣ ନିଜର ଶ୍ରମ ଓ ସାଧନାକୁ ଅସ୍ୱୀକାର ନ କରୁଥିଲେ ହେଁ ଜଗନ୍ନାଥଙ୍କୁ ରସକଲ୍ଲୋଳ ରଚନାର ମୂଳ କାରଣରୂପେ ଗ୍ରହଣ କରିଛନ୍ତି । ତାଙ୍କ ମତରେ କବିର ପ୍ରତିଭା, ବ୍ୟୁତ୍ପତ୍ତି ଓ ସରସତା ସବୁର ମୂଳ ଉତ୍ସ ହେଉଛନ୍ତି ନୀଳାଚଳପତି ଜଗନ୍ନାଥ । ମାନବ ଶରୀର ଧାରଣ କରି କୃଷ୍ଣଲୀଳା ବର୍ଣ୍ଣନା କରିବା, କଳାନିଧିକୁ ହାତରେ ଧରିବା ପରି, କଇବଲ୍ୟକୁ ଆୟତ୍ତ କଲାପରି, ବସୁନ୍ଧରୀକୁ କୋଳ କଲା ପରି, କନ୍ଦର୍ପକୁ ଆଖିରେ ଦେଖିବା ପରି, ସମୁଦ୍ର ପହଁରିବା ପରି ଓ ପଙ୍ଗୁ ଗିରି ଲଙ୍ଘନ କଲା ପରି ଅସମ୍ଭବ । ପଦ୍ମତୋଳା କୃପନ କଲେ ପ୍ରଭୁଲୀଳା କହି ହୁଏ ନାହିଁ । "କହି ହୋଯେ କି ସେ ପ୍ରଭୁଲୀଳା । କୃପା ନକଲେ ସେ ପଦ୍ମତୋଳା ।" ଜଗନ୍ନାଥ କୃପାରୁ ରସକଲ୍ଲୋଳ ରଚିତ ହୋଇଥିଲେ ହେଁ, ଏହା କବି ହୃଦ ଅବଲମ୍ବନୁ ଜାତ । କବିର ଅନୁଭବ ଏହାକୁ ଯେ କେବଳ ସରସ କରିଛି, ତାହା ନୁହେଁ, ନୂତନ ରୂପ ଦାନ କରିଛି । କବି କର୍ଣ୍ଣପୁର କୁହନ୍ତି, କୌଣସି ବିଷୟରେ ପ୍ରକୃତ ଅନୁଭବ ଲାଭ କରିବାକୁ ହେଲେ ପ୍ରାକ୍ତନ ସଂସ୍କାର ଦରକାର । ପ୍ରାକ୍ତନ ସଂସ୍କାର ବିନା କୌଣସି ବିଷୟରେ ଅନୁରକ୍ତି ଜନ୍ମେ ନାହିଁ, ଅନୁଭବ ତ ଦୂରର କଥା । ଭଗବଦାରଧନାଦି ବିଷୟରେ ଯାହାର

ପ୍ରାକ୍ତନ ସଂସ୍କାର ନାହିଁ, ଭଗବଦ୍‌ବିଷୟିଣୀ କଥାରେ ତାହାର ମନ ପ୍ରବେଶ କରିପାରେ ନାହିଁ । କବି କର୍ଣ୍ଣପୁର କବିର ସ୍ୱରୂପ ବର୍ଣ୍ଣନା କଲାବେଳେ ପ୍ରତିଭା, ସର୍ବାଗମକୋବିଦ, ସରସ ପ୍ରଭୃତି ଗୁଣ ସହ ସବୀଜତ୍ୱର ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ-

ସବୀଜୋ ହି କ ଜର୍ଞୟଃ ସ ସର୍ବଗମକୋବିଦଃ ।
ସରସଃ ପ୍ରତିଭାଶାଳୀ ଯଦି ସ୍ୟାଦୁତ୍ତମସ୍ତଦା ॥

ଅର୍ଥାତ୍ ଯେଉଁ ବ୍ୟକ୍ତି ସବୀଜ (ଅର୍ଥାତ୍ କାବ୍ୟୋତ୍ପାଦକ ପ୍ରାକ୍ତନ ସଂସ୍କାର ବିଶିଷ୍ଟ), ସେ କବି । ସେ ଯଦି ସର୍ବାଗମ କୋବିଦ, ସରସ ପ୍ରତିଭାଶାଳୀ ହୁଅନ୍ତି ତାହା ହେଲେ ସେ ହେବେ ଉତ୍ତମ କବି । ନାନା ଶାସ୍ତ୍ରରେ ଅଭିଜ୍ଞ ଓ ପ୍ରତିଭାଶାଳୀ ବ୍ୟକ୍ତି ସବୀଜ ଓ ସରସ ନ ହେଲେ ସହୃଦୟମାନଙ୍କର ମନୋରଞ୍ଜନ କରିବାକୁ ଅକ୍ଷମ ହେବେ । କବି ଦୀନକୃଷ୍ଣଙ୍କ କାବ୍ୟ ଅନୁଶୀଳନ କଲେ ଜଣାପଡ଼େ ଯେ କବି କର୍ଣ୍ଣପୁରଙ୍କ କଥିତ ପ୍ରତ୍ୟେକ ଗୁଣରେ ସେ ପରିପୂର୍ଣ୍ଣ ଥିଲେ । ତାଙ୍କ କାବ୍ୟର ପ୍ରତ୍ୟେକ ପଂକ୍ତିରୁ କବିଙ୍କର ପାଣ୍ଡିତ୍ୟ, ପ୍ରତିଭା ଓ ସରସତାର ପରିଚୟ ମିଳେ । କବି ଯେ କେବଳ ନିର୍ମଳ କୃଷ୍ଣକଥାକୁ କାବ୍ୟର ବିଷୟବସ୍ତୁରୂପେ ଗ୍ରହଣ କରି କବି ହୋଇଥିଲେ ତାହା ନୁହେଁ, ସେ ଶ୍ରୀକୃଷ୍ଣଙ୍କ ପରିକରମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ । ଗୋପୀକୃଷ୍ଣ ରାସର ସେ ପ୍ରତ୍ୟକ୍ଷ ଦର୍ଶକ । କବି କହିଛନ୍ତି,

କିଛି ପୂର୍ଣ୍ଣ କରି ମନୋରଥ । କଲେ ଗୋପୀକଦମ୍ବ ନେପଥ୍ୟ,
କର୍ଣ୍ଣେ ଶୁଣି ଦୀନକୃଷ୍ଣ ଦାସ । କଲେ ରସକଲ୍ଲୋଳ ପ୍ରକାଶ ।

ରସକଲ୍ଲୋଳ କାବ୍ୟର ବୈଶିଷ୍ଟ୍ୟ ଓ କବିତ୍ୱର ମହତ୍ତ୍ୱ ସମ୍ବନ୍ଧରେ ମନ୍ତବ୍ୟ ଦେବାପରି କବି ଦୀନକୃଷ୍ଣ ରସକଲ୍ଲୋଳ କାବ୍ୟର ଆଲୋଚକମାନଙ୍କ ସମ୍ବନ୍ଧରେ ନିଜର ବିଚାର ପ୍ରକାଶ କରିଛନ୍ତି । କବି ଦୀନକୃଷ୍ଣଙ୍କ ମତରେ ଆଲୋଚକ ଦୁଇ ଶ୍ରେଣୀର-ରସିକ ନେତା ଓ କୁମତି ଗୁଆଁର । ଆଲଙ୍କାରିକମାନେ ଏମାନଙ୍କୁ (୧) ଅରୋଚକୀ ଅର୍ଥାତ୍ ବିବେକୀ ବା ବିଚାରଶୀଳ (ଦୀନକୃଷ୍ଣଙ୍କ ରସିକ ନେତା) ଓ (୨) ସତୃଣାଭ୍ୟବହାରୀ ଅର୍ଥାତ୍ ଅବିବେକୀ ବା ବିଚାରବୁଦ୍ଧିଶୂନ୍ୟ (ଦୀନକୃଷ୍ଣଙ୍କ କୁମତି ଗୁଆଁର) ଭେଦରେ ବିଭାଗ କରିଥାନ୍ତି । ପ୍ରସିଦ୍ଧ ଆଳଙ୍କାରିକ ରାଜଶେଖର ସମାଲୋଚକମାନଙ୍କୁ ଚାରିଭାଗରେ ବିଭକ୍ତ କରିଛନ୍ତି- (୧) ବିବେକୀ, (୨) ଅବିବେକୀ, (୩) ମତ୍ସରୀ ଓ (୪) ତତ୍ତ୍ୱାଭିନିବେଶୀ । ଅରୋଚକୀ ବା ବିବେକୀ

ସମାଲୋଚକମାନଙ୍କୁ ପୁନଃ ଦୁଇଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମତଃ ଯେଉଁମାନେ ଅନ୍ୟଲୋକର ରଚନାରେ ଅରୁଚିସମ୍ପନ୍ନ, ଦ୍ୱିତୀୟତଃ, ଯେଉଁମାନେ ଅନ୍ୟ ଲୋକର ରଚନାରେ ଅରୁଚି ପ୍ରକାଶ କରନ୍ତି ଓ ଯଥାର୍ଥ ଉତ୍ତମ ରଚନାର ପ୍ରଶଂସା ବି କରିଥାନ୍ତି । ଅବିବେକୀ ସମାଲୋଚକମାନେ ସତଣାଭ୍ୟବହାର ନାମରେ ମଧ ପରିଚିତ । ଏହି ଶ୍ରେଣୀୟ ସମାଲୋଚକମାନେ ପ୍ରତିଭାହୀନ ଓ ବିଚାରବୁଦ୍ଧିବର୍ଜ୍ଜିତ । ଗୁଣ ବା ଦୋଷବିଚାର କରିବାରେ ଅସମର୍ଥ । ଖାଦ୍ୟ ଓ ଅଖାଦ୍ୟର ବିଚାର ଏମାନଙ୍କ ପାଖରେ ନ ଥାଏ । କବି ଦୀନକୃଷ୍ଣ ସେଥିପାଇଁ ସେମାନଙ୍କୁ ଶିଶୁ ଓ ପଶୁ ସହ ତୁଳନା କରିଛନ୍ତି । କାବ୍ୟ ଶ୍ରବଣ କରି ତୃଷ୍ଣୀଭୂତ ରହିବା ସେମାନଙ୍କର ପ୍ରକୃତି । ତୃତୀୟ ଶ୍ରେଣୀୟ ସମାଲୋଚକଙ୍କୁ ମତ୍ସରୀ ସମାଲୋଚକ କୁହାଯାଇଛି । ସାଧାରଣତଃ ପଣ୍ଡିତମାନେ ମତ୍ସରୀ ଶ୍ରେଣୀୟ ସମାଲୋଚକ । ମତ୍ସରୀ ନ ହୋଇଥିବା ପଣ୍ଡିତ ମିଳିବା ଅତି ବିରଳ । ମତ୍ସରୀ ସମାଲୋଚକମାନଙ୍କ ସମ୍ବନ୍ଧରେ ରାଜଶେଖର ଗୋଟିଏ କୌତୂହଳପୂର୍ଣ୍ଣ ପ୍ରଚଳିତ କଥାର ଉଲ୍ଲେଖ କରିଛନ୍ତି । କଥାଟି ହେଉଛି,

ପ୍ରଶ୍ନ- ଅଚ୍ଛା, ଆପଣ କିଏ ?

ଉତ୍ତର - ମୁଁ ଜଣେ କବି ।

ପ୍ରଶ୍ନ - ବନ୍ଧୁବର ! କୌଣସି ଗୋଟିଏ ନୂତନ କବିତା ପାଠ କରନ୍ତୁ ।

ଉତ୍ତର- ମୁଁ ଆଜିକାଲି କାବ୍ୟଚର୍ଚ୍ଚା ପରିତ୍ୟାଗ କରିଛି !

ପ୍ରଶ୍ନ- କାହିଁକି ?

ଉତ୍ତର- ଶୁଣନ୍ତୁ; ଯେଉଁ ସୁକବି ବା କବିବର ନିଜେ ଦୋଷଗୁଣର ସାରମର୍ମ ଯଥାଯଥ ବିଚାର କରିପାରନ୍ତି, ସେ ଭାବୁକ (ସମାଲୋଚକ) ନୁହନ୍ତି; ଯଦି ଦୈବକ୍ରମେ ସେ ଭାବୁକ ହୁଅନ୍ତି, ତେବେ ସେ ମାତ୍ସର୍ଯ୍ୟ-ଦୋଷମୁକ୍ତ ହୋଇପାରନ୍ତି ନାହିଁ ।

ଏପରି ଗୁଣୀ ଦୀନକୃଷ୍ଣଙ୍କ ମତରେ ମହାଫଣୀ ସଦୃଶ । ଏମାନେ ଜାଣିଶୁଣି ଅନ୍ୟ କବି ରଚିତ କାବ୍ୟକୁ ମହତ୍ତ୍ୱ ଦିଅନ୍ତି ନାହିଁ ଓ ଦରକାର ହେଲେ ଦ୍ୱେଷପୂର୍ଣ୍ଣ ଆଲୋଚନା (ପଶନ୍ତି ହାଣୀ) ମଧ୍ୟ କରିଥାନ୍ତି । କବି ଦୀନକୃଷ୍ଣ ଯେଉଁ ସମାଲୋଚକମାନଙ୍କୁ ଜଗତଯାକ ଖୋଜି ଖୋଜି ନିରାଶ ହୋଇଛନ୍ତି, ସେମାନେ ହେଉଛନ୍ତି, ରାଜଶେଖରଙ୍କ ତତ୍ତ୍ୱାଭିନିବେଶୀ ସମାଲୋଚକ । ଆଲୋଚକମାନଙ୍କ

ମଧ୍ୟରେ ଏମାନେ ଶ୍ରେଷ୍ଠ । କଥିତ ଅଛି, ଯେଉଁମାନେ ଶବ୍ଦ ସମୂହର ରଚନାପଦ୍ଧତି ସମ୍ବନ୍ଧରେ ବିଚାର କରନ୍ତି, ପୂର୍ବବର୍ତ୍ତୀ କବିମାନଙ୍କର ଉତ୍ତମ କବିତାରେ ଆନନ୍ଦ ଲାଭ କରନ୍ତି, ଏବଂ ଗଭୀର ରସ ଆସ୍ୱାଦନ କରି ତାତ୍ପର୍ଯ୍ୟ ଅନୁସନ୍ଧାନରେ ପ୍ରବୃତ୍ତ ହୁଅନ୍ତି, ସେହି କାବ୍ୟ ଶ୍ରମଜ୍ଞ (ଅର୍ଥାତ୍ କାବ୍ୟ ରଚନାର ପରିଶ୍ରମ ସମ୍ବନ୍ଧରେ ସଚେତନ) ବ୍ୟକ୍ତି ପୂଣ୍ୟବଳରୁ କେବେ କେବେ ସହୃଦୟ ବ୍ୟକ୍ତି ସଙ୍ଗେ ମିଳିତ ହୁଅନ୍ତି, ପୁଣି ସହୃଦୟ ବ୍ୟକ୍ତିମାନେ ମଧ୍ୟ କାବ୍ୟବିଚାରକ ବ୍ୟକ୍ତିର ଅଭାବରେ ଅର୍ନ୍ତବେଦନା ଅନୁଭବ କରିଥାନ୍ତି ।

କବି ଓ ଆଲୋଚକ (ରସିକ ନେତା ଓ କୁମତି ଗୁଆଁର) ବ୍ୟତୀତ କବିତା ବନିତା ପରିବାରର ଅନ୍ୟ ଜଣେ ବିଶିଷ୍ଟ ବ୍ୟକ୍ତି ହେଉଛି, କହିବା ଲୋକ । କବି ଦୀନକୃଷ୍ଣ କବିଙ୍କୁ କବିତାର ପିତା, କହିବା ଲୋକକୁ ଉପମାତା, ରସିକ ନେତାକୁ ସ୍ୱାମୀ ଓ କୁମତି ଗୁଆଁରକୁ ବଇମାତ୍ର ଭାଇ କହିଛନ୍ତି । କବିତାର ସ୍ରଷ୍ଟା ବା ଜନ୍ମଦାତା କବି ହେଲେହେଁ ତାର ଭରଣପୋଷଣ କରନ୍ତି କହିବା ଲୋକ ଓ ରସିକ ନେତା । କବି ଦୀନକୃଷ୍ଣ ସେଥିପାଇଁ କହିବା ଲୋକକୁ ଉପମାତାର ଗୌରବ ଓ ରସିକ ନେତାକୁ ସ୍ୱାମୀର ସମ୍ମାନ ପ୍ରଦାନ କରିଛନ୍ତି । କୁମତି ଗୁଆଁର ବଇମାତ୍ର ଭାଇ ପରି ମୂଳରୁ କବିତାର ଶ୍ରୀ ଦେଖି ପାରେ ନାହିଁ । କବି ଦୀନକୃଷ୍ଣ କହିବା ଲୋକ ବା ବକ୍ତାକୁ ଉପମାତାର ଗୌରବ ପ୍ରଦାନ କରିଥିବାରୁ ଜଣାପଡୁଛି ଯେ ଉପମାତା ବା ଧାଇ କନ୍ୟାର ଲାଳନପାଳନ କରି ତାକୁ ବଡ଼ କଲା ପରି, କହିବା ଲୋକ କାବ୍ୟର ଶ୍ରୀବୃଦ୍ଧି ଓ ପ୍ରଚାରରେ ବହୁ ସାହାଯ୍ୟ କରେ । ମଧ୍ୟଯୁଗୀୟ କବିତା କହିବା ଲୋକ ମାଧ୍ୟମରେହିଁ ଶ୍ରୋତୃମଣ୍ଡଳୀରେ ପ୍ରବେଶ ଲାଭ କରୁଥିଲା । ତେଣୁ କହିବା ଲୋକର ଯୋଗ୍ୟତା ଥିଲା କାବ୍ୟପ୍ରଚାରର ପ୍ରଧାନ ମାପକାଠି । ସଙ୍ଗୀତରେ ପାରଦର୍ଶିତା ଲାଭ କରିବାପାଇଁ ବହୁ ଜନ୍ମ ଆବଶ୍ୟକ ହେବା ପରି କବିତା ପାଠରେ ନିପୁଣତା ଏକା ଜନ୍ମରେ ହୁଏ ନାହିଁ । ଏଥିପାଇଁ ବହୁଜନ୍ମର ଅଭିଜ୍ଞତା ଆବଶ୍ୟକ ।

ଯଥା ଜନ୍ମାନ୍ତରାଭ୍ୟାସାତ୍ କଣ୍ଠେ କସ୍ୟାପି ରକ୍ତତା ।

ତଥୈବ ପାଠସୌନ୍ଦର୍ଯ୍ୟ ନୈକଜନ୍ମବିନିର୍ମିତମ୍ ॥ କାବ୍ୟ ମୀମାଂସା, ସପ୍ତମ ଅଧ୍ୟାୟ । କହିବା ଲୋକ ସ୍ୱର, ମାତ୍ରା, ଉଚ୍ଚାରଣସ୍ଥାନ, ଆନ୍ତର ଓ ବାହ୍ୟ ପ୍ରଯତ୍ନ-ଏହି ପଞ୍ଚସ୍ଥାନରୁ ଉତ୍ପନ୍ନ ବର୍ଣ୍ଣ ସମୂହର ଯଥାଯଥ ପୂର୍ଣ୍ଣ ଉଚ୍ଚାରଣ ଓ ଅର୍ଥ ଅନୁଯାୟୀ ବିରାମ ରକ୍ଷା କରିବା ଉଚିତ । ଏହାହିଁ କାବ୍ୟପାଠର ମୂଳତତ୍ତ୍ୱ ।

ପଞ୍ଚସ୍ଥାନସମୁଦ୍‌ଭବବର୍ଣ୍ଣେଷୁ ଯଥା ସ୍ୱରୂପନିଷ୍ଠଭିଃ ।
ଅର୍ଥବଶେନ ଚ ବିରତିଃ ସର୍ବସ୍ୱମିଦଂ ହି ପାଠସ୍ୟ ।

କେବଳ ଉତ୍ତମ କାବ୍ୟ-ପାଠ ପ୍ରବୀଣ ବକ୍ତାର ଉପଯୁକ୍ତ ଯୋଗ୍ୟତା ନୁହେଁ, ବାକ୍ୟର ବିଷୟବସ୍ତୁ ବା ରସ ସହ ସମ୍ପୂର୍ଣ୍ଣ ଭାବେ ପରିଚିତ ନ ହେଲେ ଶ୍ରୋତାମାନଙ୍କୁ ସେହି ରସରେ ଦ୍ରବୀଭୂତ କରି ହୁଏ ନାହିଁ । ଯୋଗ୍ୟ ବକ୍ତା ଓ ଯୋଗ୍ୟ ଶ୍ରୋତା ଉଭୟେ କାବ୍ୟରସର ଆସ୍ୱାଦକ । ପ୍ରାକୃତ ଓ ଅପ୍ରାକୃତ କାବ୍ୟ ଭେଦରେ ବକ୍ତା ଓ ଶ୍ରୋତାର ମଧ୍ୟ ପାର୍ଥକ୍ୟ ହୋଇଥାଏ । ଅଲୌକିକ କାବ୍ୟର ବକ୍ତା ଓ ଶ୍ରୋତାର ଯୋଗ୍ୟତା ପ୍ରତିପାଦନ କରି ଜୀବଗୋସ୍ୱାମୀ କହିଛନ୍ତି ।

ଶ୍ରବ୍ୟକାବ୍ୟେଷ୍ୱପି ବର୍ଣ୍ଣନୀୟ-ବର୍ଣ୍ଣକ-ଶ୍ରୋତୃଭେଦେନ ଯଥାଯଥଂ ବୋଦ୍ଧବ୍ୟଃ । କିନ୍ତ୍ୱାତ୍ର ପ୍ରାୟସ୍ତଦପେକ୍ଷା ରତ୍ୟାଙ୍କୁରବତାମେବ । ପ୍ରେମାଦିମତାନ୍ତୁ ଯଥାକଥଞ୍ଚିତ୍ ସ୍ମରଣମପି ତତ୍ର ହେତୁଃ । ଯେଷାଂ ଷଡ୍‌ଜାଦିମୟସ୍ୱରମାତ୍ର ମପିତତ୍ର ହେତୁର୍ଭବତି ।-ପ୍ରୀତି ସନ୍ଦର୍ଭ ।୧୧୧।

ଅର୍ଥାତ୍ ଶ୍ରବ୍ୟ କାବ୍ୟରେ ମଧ ବର୍ଣ୍ଣନୀୟ ବିଷୟ । ବର୍ଣକ (କଥକ) ଓ ଶ୍ରୋତା ଯଥୋଯୋଗ୍ୟ ହେଲେ ରସୋଦୟ ହୁଏ । କିନ୍ତୁ ଏ ସ୍ଥଳରେ ଯେଉଁମାନେ ରତ୍ୟାଙ୍କୁରବାନ କେବଳ ସେମାନେ ହିଁ କାବ୍ୟ-ଶ୍ରବଣର ଅପେକ୍ଷା ରଖିଥାନ୍ତି । ଯେଉଁମାନେ ପ୍ରେମାଦିବାନ, ସେମାନଙ୍କ ପକ୍ଷରେ କାବ୍ୟ-ଶ୍ରବଣର ଆବଶ୍ୟକତା ମଧ ନାହିଁ, ଯେକୌଣସି ରୂପେ ଭଗବଦ୍ ସ୍ମୃତି ସେମାନଙ୍କ ରସୋଦୟର କାରଣ । ଏପରିକି ଷଡ୍‌ଜାଦି ସପ୍ତସ୍ୱର (ସା,ରେ,ଗା,ମା,ପା,ଧା,ନି) ର ଆଳାପ ସେମାନଙ୍କ ରସୋଦୟର କାରଣ ହୋଇଥାଏ ।

କବି ଦୀନକୃଷ୍ଣ ରସକଲ୍ଲୋଳର ଶ୍ରୋତାରୂପେ ସାଧୁ, ସୁଜନ, ଗୁଣୀ, ବିବେକୀ, କୋବିଦ ଓ ରସିକ ଜନମାନଙ୍କୁ ବରଣ କରିଥିଲେ ହେଁ, ଏହାର ପ୍ରକୃତ ଶ୍ରୋତା ହେଉଛନ୍ତି, ଗୋପୀ ଭାବର ଅଧିକାରୀ ଶ୍ରୀକୃଷ୍ଣଙ୍କ ସେବକ ଗଣ । କୋବିଦମାନେ ରସକଲ୍ଲୋଳ ପାଠ ବା ଶ୍ରବଣ କରି ସୁଖ ପାଇବେ ଏଥିରେ ସନ୍ଦେହ ନାହିଁ, କିନ୍ତୁ ଭାବଭକ୍ତିର ଉପାସକମାନଙ୍କ କଣ୍ଠରେ ଏହା କଣ୍ଠହାର ରୂପେ ଶୋଭା ପାଇବ । କବି କହିଛନ୍ତି,

କୋବିଦ-ଦେବମାନେ ଲଭ ସୁଖ । କରନ୍ତୁ ବାଳିଶ-ଅସୁରେ ଦୁଃଖ
କୃଷ୍ଣ ସେବକ ଗୋପୀ ଭକ୍ତି ଯାର । କରନ୍ତୁ ସେମାନେ କଣ୍ଠର ହାର
କଠୋର କୁଟିଳ । କପଟୀ ଲୋକଙ୍କୁ ଏ ଅମଙ୍ଗଳ ।-ର.କ : ୩୪-୨୫

ରସିକ ଶ୍ରୋତାମାନଙ୍କର ଯୋଗ୍ୟତା ସଂପର୍କରେ କବି ଦୀନକୃଷ୍ଣ କେତୋଟି ମୂଲ୍ୟବାନ ସଙ୍କେତ ଦେଇଛନ୍ତି । ତାଙ୍କ ମତରେ ରସିକ ଭକ୍ତମାନଙ୍କର ଯୋଗ୍ୟତା ହେଉଛି ଯେ ସେମାନେ ଦୁର୍ଜନ ସଙ୍ଗ ପରିତ୍ୟାଗ କରି ସାଧୁ ଓ ଭକ୍ତମେଳରେ ଜୀବନ ଯାପନ କରିବେ । କ୍ରୋଧ, ଅଭିମାନ ପ୍ରଭୃତି ଦୁର୍ଗୁଣରୁ ଦୂରରେ ରହି ସଦାସର୍ବଦା କରୁଣ ହୃଦୟ ହେବେ, ଦୀନମାନଙ୍କୁ ଦାନ କରିବେ ଓ କୋମଳ କଥା ସେମାନଙ୍କ କଣ୍ଠ-ଭୂଷଣ ହେବ । ଶ୍ରୀକୃଷ୍ଣଙ୍କର ଧ୍ୟାନ ଓ କୃଷ୍ଣ-କଥା ଧ୍ୟାନରେ ସେମାନେ ଆତ୍ମ-ବିଭୋର ହୋଇଥିବେ । ସାହିତ୍ୟ ଦର୍ପଣକାରଙ୍କ ମତରେ ମଣିଷ ହୃଦୟରେ ତିନୋଟି ଗୁଣ ଅଛି-ସତ୍ତ୍ୱ, ରଜ ଓ ତମ । ରଜ ଗୁଣର ପ୍ରଭାବରେ ଚିତ୍ତ ଚଞ୍ଚଳ ହୁଏ ଓ ତମ ଗୁଣରୁ ଅଜ୍ଞାନତା ଜାତ ହୁଏ । ଏମାନେ ପୁଣି କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ପ୍ରଭୃତି ଷଡରିପୁର ସୃଷ୍ଟି କରନ୍ତି । ହୃଦୟ ରଜ ଓ ତମ ଗୁଣର ଅଧୀନ ହେଲେ, ମଣିଷର ମନ ସ୍ଥିର ହୁଏ ନାହିଁ । କାବ୍ୟର ରସବିଦମାନଙ୍କ ମତରେ କାବ୍ୟର ବାରମ୍ବାର ପାଠ ଓ ଅନୁଶୀଳନ ରଜ ଓ ତମ ଗୁଣକୁ ଅଭିଭୂତ କରି ସତ୍ତ୍ୱ ଗୁଣର ଉଦ୍ରେକ କରେ । କବି ଦୀନକୃଷ୍ଣ ମଧ୍ୟ କହିଛନ୍ତି, କୃଷ୍ଣକଥାରେ ମନୋନିବେଶ କଲେ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କଲେ ଓ କୃଷ୍ଣଚରିତ ପାନ କଲେ, ମନୁଷ୍ୟର ମନ ନିର୍ମଳ ହୁଏ । ପ୍ରାକୃତ କାବ୍ୟର ସାମାଜିକ ବା ରସିକ ଭକ୍ତ ନ ହୋଇବି ପାରେ, କିନ୍ତୁ ଶ୍ରୀକୃଷ୍ଣଲୀଳାସମ୍ବଳିତ ଅଲୌକିକ କାବ୍ୟର ରସିକ ଭକ୍ତ ନ ହେଲେ ନ ଚଳେ । ଜୀବଗୋସ୍ୱାମୀ ଭଗବତ-ପ୍ରୀତିରସିକ ଭକ୍ତମାନଙ୍କୁ ଦୁଇଭାଗରେ ବିଭକ୍ତ କରିଛନ୍ତି, -ଲୀଳାନ୍ତପାତୀ ଏବଂ ଲୀଳାନ୍ତଃପାତିତାଭିମାନୀ-(ପ୍ରୀତି ସନ୍ଦର୍ଭ । ୧୧୧) ଭାଗବତ ପରିକରଗଣ ପ୍ରଥମ ଶ୍ରେଣୀର ଅନ୍ତର୍ଭୁକ୍ତ । ସେମାନେ ପ୍ରେମାଦିମାନ୍ । ପ୍ରେମ, ସ୍ନେହ, ମନ, ପ୍ରଣୟ, ରାଗ, ଅନୁରାଗ ପ୍ରଭୃତି ଭାବ ସେମାନଙ୍କ ହୃଦୟରେ ନିତ୍ୟ ବିରାଜିତ । ଭଗବତଲୀଳା ସ୍ମରଣ କରିବାମାତ୍ରେ ସେମାନଙ୍କ ହୃଦୟ ରସାପ୍ଲୁତ ହୋଇଥାଏ । ଦ୍ୱିତୀୟ ପ୍ରକାର ଭକ୍ତ ଲୀଳା ପରିକର ନୁହନ୍ତି, ଅଥଚ ନିଜକୁ ଲୀଳା ପରିକର ବୋଲି ଭାବନ୍ତି । କୃଷ୍ଣକଥା ଶ୍ରବଣରେ ସେମାନଙ୍କର ରସୋଦୟ ହୁଏ ।

ଗାଁ ଲୋକେ ପିଲାମାଇପ, ଘରଦ୍ୱାର ନେଇ ସବୁବେଳେ ବ୍ୟସ୍ତ । ଦିନଯାକ ବିଲରେ କାମକରି ବେଳ ବୁଡୁବୁଡୁ ଶୋଇବା ସେମାନଙ୍କର ଚିରଦିନର

ଅଭ୍ୟାସ । ଖୁବ୍ ବେଶୀରେ ଭାଗବତ ଅଧ୍ୟାୟେ । ଏଇଠି ସେମାନଙ୍କର ବିଦ୍ୟାର ଆରମ୍ଭ ଓ ଶେଷ । ଯଦି କେତେବେଳେ ଉତ୍ସବ ପର୍ବରେ ଗାଁକୁ ପାଲା ଗାଆଣ ଆସନ୍ତି, ବା ଯଦି କେତେବେଳେ କଥା ବୋଲାହୁଏ, ସେମାନଙ୍କୁ ଏକଜୁଟ ହେବାର ସୁବିଧା ମିଳେ । କଥା ଶୁଣିବା ତ ଗୋଟାଏ ବାହାନା । ସେଠି ବି ସେଇ ଘରବାରି ଗପ, ପିଲାକବିଲାଙ୍କ କଥା । କାବ୍ୟକବିତା ପ୍ରତି ସେମାନଙ୍କର ଉଦାସୀନତା ରସବିନୋଦର କବି ଦୀନକୃଷ୍ଣଙ୍କୁ ଅବିଦିତ ନଥିଲା । ସେମାନଙ୍କୁ ସାବଧାନ କରି ରସବିନୋଦରେ କବି କହିଛନ୍ତି,

ଏ ନିତ୍ୟ ରାହାସକୁ ବସି । ଯେ ଅବା ଶୁଣୁଥିବ ବସି ।
ଆନ କଥାକୁ ଦେଲେ ମନ । ମଧିର ହୋଇ ବେନି କର୍ଣ୍ଣ ।

ଅନ୍ୟ ସ୍ଥାନରେ,

ଏ ନିତ୍ୟ ରାହାସର ଗତି । ବସି ଯେ ଶୁଣୁଥିବ ନିତି ।
ଗୃହ ଝଗଡା କଥା ବାଛି । ସେଠାରେ ନ କହିବ କିଛି ।
ରାଜ୍ୟ ରାଷ୍ଟ୍ରର କଥା ମାନ । ସାହୁ ଯେ ଖାତକ ବିଧାନ ।
ଏମାନ ଯେ କହଇ ଦେଖି । ସେହି ଶୂକର ସଙ୍ଗେ ଲେଖି ।

କବି ଦୀନକୃଷ୍ଣ ଯେତେ ଗାଳି ଦିଅନ୍ତୁ ପଛକେ, ଯେତେ ସତର୍କ ବାଣୀ ଶୁଣାନ୍ତୁ ପଛକେ, ଗାଁରେ ଏହି ଶ୍ରେଣୀୟ ଶ୍ରୋତା ହିଁ ବେଶୀ । ରତିଶାସ୍ତ୍ରର ଆଲୋଚନା, ଯମକ ଅନୁପ୍ରାସର ଇନ୍ଦ୍ରଜାଲ ପ୍ରତି ସେମାନଙ୍କର ଅପାର ମୋହ । ତେଣୁ କବି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କ ଦିବ୍ୟଲୀଳା ଅର୍ଥାତ୍ ରସରେ କବିତା ଲେଖି ସମସାମୟିକ ସାଧାରଣ ଜନତାଙ୍କ ନିକଟରେ ନିରାଶ ହୋଇଥିବା ଅସମ୍ଭବ ନୁହେଁ । କବି କହିଛନ୍ତି,

କଲେ ଶୃଙ୍ଗାର ରସରେ ଗୀତ
ରସଇ ନାହିଁ କାହାର ଚିତ୍ତ
ବୋଲନ୍ତି ରସ ବିଶେଷ ନୋହେତ ଯେ ।

କବିଙ୍କ ଭାଗ୍ୟକୁ ଯେଉଁ କେତେଜଣ ଗୁଣୀ ରସକଲ୍ଲୋଳର ଶ୍ରୋତା ହେବାର ସୌଭାଗ୍ୟ ପାଇଥିଲେ, ସେମାନେ ମଧ କବିଙ୍କ ମନଲାଖି ନୁହନ୍ତି । କାରଣ କେବଳ କାବ୍ୟ ଶୁଣି ମୁଣ୍ଡ ଟୁଙ୍ଗାରିଲେ ହେବନାହିଁ, କାବ୍ୟରୁ ରସଜାତ କରିବାର ଶକ୍ତି ଥିବା ଆବଶ୍ୟକ । ରସକଲ୍ଲୋଳର ଅନେକ ଶ୍ରୋତା କବିଙ୍କ ଶବ୍ଦ ଯୋଜନା,

ବର୍ଣ୍ଣନାଭଙ୍ଗୀ, ଅଳଙ୍କାର ପ୍ରୟୋଗ, ବକ୍ର ବଚନ ଓ ସର୍ବୋପରି ଦୃଷ୍ଟାନ୍ତ ପରେ ଦୃଷ୍ଟାନ୍ତର ଗଣନା ଦେଖି ବିମୁଗ୍ଧ ହୋଇଯାଉଥିଲେ । ରସାସ୍ୱାଦ କରିବାର ଶକ୍ତି ସେମାନଙ୍କର ନ ଥିଲା । ସେମାନେ ଦେବତା ଦର୍ଶନ ନ କରି ଦେଉଳର କାରୁକାର୍ଯ୍ୟ ଦେଖି ଫେରି ଯାଉଥିଲେ । ଏହିପରି ଶ୍ରୋତାମାନଙ୍କୁ ଲକ୍ଷ୍ୟ କରି ଦୀନକୃଷ୍ଣ କହିଛନ୍ତି,

କାହାରି ହୃଦ ଦ୍ରବଇ ନାହିଁ, ଜଳ ଉପଳ ପରାୟେ ହୋଇ
କେବଳ ବାହାରକୁ ତିନ୍ତିଲା ପରାଏ ଦିଶେ ଯେ ।

କାବ୍ୟ-ଶାସ୍ତ୍ର ରଚନା ସଂସ୍କୃତ ସାହିତ୍ୟର ଏକ ବିଶିଷ୍ଟ ଅଙ୍ଗ । ବହୁ ପ୍ରାଚୀନ କାଳରୁ ଏହାର ଆରମ୍ଭ । କାବ୍ୟରଚନା ହେବା ପରେ କାବ୍ୟ-ଶାସ୍ତ୍ରର ରଚନା ହୋଇଥିବା ସ୍ୱାଭାବିକ । ପ୍ରଥମେ ହୁଏତ କାବ୍ୟର ଅନୁଶୀଳନ ଓ ବିବେଚନ ପାଇଁ କାବ୍ୟ-ଶାସ୍ତ୍ର ରଚିତ ହୋଇଥିଲା । କିନ୍ତୁ ପରବର୍ତ୍ତୀ ଯୁଗରେ କାବ୍ୟ ଶାସ୍ତ୍ରକୁ ଅନୁସରଣ କରି କାବ୍ୟ ଲେଖା ହେଲା । କାବ୍ୟ ଶସ୍ତ୍ରର ପ୍ରଥମ ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ଇତିହାସ ନୀରବ । ଭରତ ମୁନିଙ୍କ ନାଟ୍ୟ-ଶାସ୍ତ୍ରହିଁ ଉପଲବ୍ଧ ଗ୍ରନ୍ଥସବୁ ମଧ୍ୟରେ ପ୍ରାଚୀନତମ । କେଉଁ କେଉଁ ଗୁଣ ଥିଲେ କବିତା ସୁନ୍ଦର ହୁଏ ? ଏ ପ୍ରଶ୍ନର ବିଚାରରେ କାବ୍ୟ-ଶାସ୍ତ୍ରର ଆଚାର୍ଯ୍ୟଗଣ ଏକମତ ନୁହନ୍ତି । କେହି କେହି ଅଳଙ୍କାରକୁ ପ୍ରାଧାନ୍ୟ ଦେଇଛନ୍ତି ତ କେହି ରସକୁ । ପୁଣି କେହି ଅଳଙ୍କାର ଓ ରସ ଉଭୟକୁ ମାନିଛନ୍ତି । ଏହି ମତବାଦସବୁ ମଧ୍ୟରୁ ଅଳଙ୍କାର, ଧ୍ୱନି, ରୀତି, ବକ୍ରୋକ୍ତି, ଔଚିତ୍ୟ ଓ ରସ ପ୍ରଧାନ । ରୀତି କାଳର କବି ଦୀନକୃଷ୍ଣ ଏସବୁ ମତବାଦ ସହ ଅପରିଚିତ ନଥିଲେ ହେଁ ବକ୍ରୋକ୍ତି ଓ ରସକୁ ପ୍ରାଧାନ୍ୟ ଦେଇଥିବା ମନେହୁଏ । ଓଡ଼ିଆ ସାହିତ୍ୟରେ କାବ୍ୟ-ସିଦ୍ଧାନ୍ତ ସମ୍ବନ୍ଧୀୟ ଏକମାତ୍ର ଗ୍ରନ୍ଥ ହେଉଛି ଉପେନ୍ଦ୍ର ଭଞ୍ଜଙ୍କ ରସ ପଞ୍ଚକ । ଉପେନ୍ଦ୍ର ଭଞ୍ଜ ଭାନୁଦତ୍ତଙ୍କ ରସତରଙ୍ଗିଣୀ, ବିଶ୍ୱନାଥ ମହାପାତ୍ରଙ୍କ ସାହିତ୍ୟ ଦର୍ପଣ, ମମ୍ମଟଙ୍କ କାବ୍ୟ-ପ୍ରକାଶ, ବାତ୍ସାୟନଙ୍କ କାମ-ଶାସ୍ତ୍ର (ସ୍ମରଶାସ୍ତ୍ର) ଓ କବିକଳ୍ପଲତା ସାହାଯ୍ୟରେ କବିତ୍ୱ ରୀତିର ବ୍ୟାଖ୍ୟା କରିଛନ୍ତି । ରସପଞ୍ଚକର ନାମକରଣରେ ରସ କଥା ନାହିଁ । ର,ସ,ପ,ଞ୍ଚ ଓ କ ବର୍ଣ୍ଣକୁ ଆଦ୍ୟରେ ରଖି ବୋଲି, ଛାନ୍ଦ, ଚଉପଦୀ, ଚଉତିଶା ଓ ଢଗ, ମାଧ୍ୟମରେ କବିତା ରଚିତ ହୋଇଥିବାରୁ ଏହାର ନାମ ରସପଞ୍ଚକ ।

ରୁଖ ବୋଲି ଛାନ୍ଦ ଚଉପଦୀ ଚଉତିଶା ଢଗ ପଞ୍ଚବିଧି ଗୀତେ ଥିବ ।

ରସପଞ୍ଚକ ବର୍ଣ୍ଣରେବର୍ଣ୍ଣନା ହେବାରୁ ରସପଞ୍ଚକ ଏ ବୋଲାଇବ ।

ଏହି ଗ୍ରନ୍ଥରେ ଆଚାର୍ଯ୍ୟ ଉପେନ୍ଦ୍ର ନାୟକ ନାୟିକା ଲକ୍ଷଣ, ରତିଧବ ଦଶଦଶା, ନବରସ, ଅଷ୍ଟ ସାତ୍ତ୍ୱିକ, ଉଦ୍ଦୀପନ, ଆଲମ୍ବନ ଓ ସଞ୍ଚାରିକାଭାବ, ଦୂତୀ ଲକ୍ଷଣ, ଆଲିଙ୍ଗନ, ଚୁମ୍ବନର ଭେଦ ପ୍ରଭୃତିର ବିଶ୍ଳେଷଣ କରିଛନ୍ତି । ଉପେନ୍ଦ୍ରଭଞ୍ଜଙ୍କ ସଦୃଶ ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ କବିମାନେ କାବ୍ୟ ରଚନା କାଳର ସଂସ୍କୃତ କାବ୍ୟାଦର୍ଶର ଆଚାର୍ଯ୍ୟମାନଙ୍କୁ ଅନୁସରଣ କରିଥିଲେ ହେଁ ଏଥିପାଇଁ ସ୍ୱତନ୍ତ୍ର ଗ୍ରନ୍ଥ ଲେଖିନାହାନ୍ତି । ସେମାନେ ନିଜ ରଚିତ କାବ୍ୟ ଗ୍ରନ୍ଥର ବୈଶିଷ୍ଟ୍ୟ ପ୍ରଦର୍ଶନ କରିବା ଛଳରେ କାବ୍ୟ-ଶାସ୍ତ୍ର ସମ୍ବନ୍ଧୀୟ ବହୁ ମୂଲ୍ୟବାନ ଉକ୍ତିର ଉଲ୍ଲେଖ କରିଛନ୍ତି । ଓଡ଼ିଆରେ ଏପ୍ରକାର ପରମ୍ପରା ଆଦିକବି ସାରଳା ଦାସଙ୍କଠାରୁ ଆରମ୍ଭ ହୋଇ ସମସ୍ତ ମଧ୍ୟକାଳୀନ କବିଙ୍କ କାବ୍ୟରେ ଅଳ୍ପ ବହୁତେ ଦେଖାଯାଏ । ଏମାନଙ୍କ ମଧ୍ୟରୁ ବଳରାମ, ଦୀନକୃଷ୍ଣ, ଉପେନ୍ଦ୍ର ଓ ଅଭିମନ୍ୟୁ ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

## (୪)
## କେତେ କହିବି ତାଙ୍କ ମିଛଫନ୍ଦା

ଓଡ଼ିଆ ସାହିତ୍ୟର ମଧ୍ୟଯୁଗରେ ସୃଷ୍ଟି ହୋଇଥିବା କାବ୍ୟ-କବିତାର ପ୍ରାଣ ହେଉଛି, ବକ୍ରୋକ୍ତି ଜୀବିତର ଲେଖକ ରାଜାନକ କୁନ୍ତକଙ୍କ ଭାଷାରେ "ବୈଦଗ୍ଧ୍ୟ ଭଙ୍ଗୀ ଭଣିତିଃ ।" ଅର୍ଥାତ୍ ଉକ୍ତି ବୈଚିତ୍ର୍ୟମୂଳକ କାବ୍ୟାର୍ଥକୁ କାବ୍ୟର ଆତ୍ମାରୂପେ ସ୍ୱୀକାର କରି ପାଠକର ମନ ମୁଗ୍ଧ କରିବା ଥିଲା ସେମାନଙ୍କର ମୂଳ ଲକ୍ଷ୍ୟ । କବି ଦୀନକୃଷ୍ଣ କବିର ଏ ପ୍ରକାର କର୍ମକୁ ନାମକରଣ କରିଛନ୍ତି ମିଛଫନ୍ଦା ଶବ୍ଦ ଦ୍ୱାରା । କବିତ୍ୱ-ଚାତୁରୀର ସୃଷ୍ଟିପାଇଁ କବିଙ୍କୁ ସତ ମିଛ କରି କହିବାକୁ ହୋଇଥାଏ । ମୁଖଶ୍ରୀକୁ ବର୍ଣ୍ଣନା କରିବାକୁ ଯାଇ କବି ସାଧାରଣତଃ କମଳ ବା କଳାକରର କଥା କୁହନ୍ତି । ବର୍ଣ୍ଣନୀୟ ବସ୍ତୁକୁ କମନୀୟରୂପେ ଏପରିକି ନୂତନଭାବରେ ପ୍ରକାଶ କରିବାର ମନୋବୃତ୍ତି ଦ୍ୱାରା ଚାଳିତ ହୋଇ କବି ନିଜ ମନର ଆଦର୍ଶଲୋକରୁ ଗୋଟିଏ ସାଦୃଶ୍ୟମୂଳକ ରୂପବସ୍ତୁ ସଂଗ୍ରହ କରନ୍ତି । ଆଳଙ୍କାରିକ ଏହାକୁ ଉପମାନ ବସ୍ତୁ କୁହନ୍ତି । ବର୍ଣ୍ଣନୀୟ ବସ୍ତୁ ବା ଉପମେୟ, ଉପମାନର ସଂଯୋଗରେ ଆଦର୍ଶାୟିତ ବାସ୍ତବରେ ପରିଣତ ହୁଏ । ସେତେବେଳେ ମୁଖ ଆଉ ଠିକ୍ ମୁଖ ହୋଇ ରହେନାହିଁ, କଳାକର ମଧ୍ୟ ପରିବର୍ତ୍ତିତ ହୋଇଯାଏ । କବି ଦୁଇଟି ବସ୍ତୁର ସୌନ୍ଦର୍ଯ୍ୟର ମିଳନରେ ଏକ ଅଜ୍ଞାତପୂର୍ବ ବାସ୍ତବର ସୃଷ୍ଟି କରନ୍ତି । ଏହି ହେଉଛି ଦୀନକୃଷ୍ଣଙ୍କ ମିଛଫନ୍ଦା ଓ ଏହାରି ଦ୍ୱାରା କବି ହୁଅନ୍ତି କବିତାର ପିତା ।

ମିଛଫନ୍ଦା, ବକ୍ରୋକ୍ତି, ଚାତୁର୍ଯ୍ୟୋକ୍ତି, ଉକ୍ତି ବୈଚିତ୍ର୍ୟ ବା କବିତ୍ୱ-ଚାତୁରୀର ସଫଳତା ପାଇଁ କବିର ଆବଶ୍ୟକ ହୁଏ ବହୁ ଉପମାନ । କବି ସେ ସବୁକୁ ନିଜ ଅନୁଭବ, ଅନୁମାନ ଓ ଅଧ୍ୟୟନ ଖୋଳି ଖୋଳି ବାହାର କରନ୍ତି । "କେ ଅଛି କାହାକୁ ଉପମା ଦେବାକୁ ମନ ଖୋଜୁଅଛି ତାହା ।" (ର.କ, ୧୯-୨୭) । ସବୁ ଉପମାନକୁ ଖୋଜିବାକୁ ପଡ଼େନାହିଁ, ଅନେକେ କବି ଉପେନ୍ଦ୍ରଙ୍କ ଭାଷାରେ ପୋଷିଲା ପକ୍ଷୀ ପ୍ରାୟେ କବିର ନିର୍ଦ୍ଦେଶକୁ ଚାହିଁ ରହିଥାନ୍ତି । ସଂସ୍କୃତ କାବ୍ୟ କବିତାରୁ ବିଶେଷ କରି କାଳିଦାସଙ୍କ ରଚନାବଳୀରୁ ଏ ସବୁ ସଂଗୃହୀତ ହୋଇ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟାବଳୀକୁ ସମୃଦ୍ଧ କରିଛି । ଦୀନକୃଷ୍ଣଙ୍କ

ରସକଲ୍ଲୋଳର ବହୁ ପଦ ଏହାର ପ୍ରମାଣ । ଉଦାହରଣ ସ୍ୱରୂପ ଗୋଟିଏ ପଦ ଉଦ୍ଧାର କରାଯାଉଛି । କୁମୁଦନନ୍ଦିନୀ ଶ୍ରୀରାଧାଙ୍କର କେଶ ବର୍ଣ୍ଣନା କରି କବି ଲେଖିଛନ୍ତି,

କଳାରେ କଜ୍ଜଳ ସୂକ୍ଷ୍ମେ ଶଇବାଳ ତରଙ୍ଗ ପ୍ରାୟେ କୁଟିଳ,
କଟିସରି ଲମ୍ବ ମହାମନୋରମ କୁସୁମ ବାସ କୁନ୍ତଳ ।

କେବଳ ଶ୍ରୀରାଧା କାହିଁକି ଯେ କୌଣସି ରୂପ ବର୍ଣ୍ଣନା କଲାବେଳେ କବି ପରମ୍ପରା ସିଦ୍ଧ ଉପମାନ ସବୁକୁ ବ୍ୟବହାର କରିବାରେ କୁଣ୍ଠାବୋଧ କରିନାହାନ୍ତି । ଅବଶ୍ୟ ବେଳେବେଳେ ଉପମାନ ପ୍ରୟୋଗ କଲାବେଳେ, କେଉଁ ଉପମାନ କାହା ପାଇଁ ଉପଯୁକ୍ତ ଓ କାହାପାଇଁ ଅନୁପଯୁକ୍ତ, ଏ ବିଚାର କବି ମନ ମଧ୍ୟରେ ତୁମୁଳ ଆନ୍ଦୋଳନ ସୃଷ୍ଟି କରିଛି । ତୁଳନା ଦେବା କଥାରୁ ନିକିତିରେ ତୁଳିବା ଦୃଶ୍ୟ କବି ମନକୁ ସ୍ପର୍ଶ କରିଛି । ନିକିତିରେ କାଚ ବି ଓଜନ ହୁଏ, କାଞ୍ଚନ ବି । ଓଜନରେ ସମାନ ହେଲେବି ମୂଲ ବେଳକୁ କାଚ କାଞ୍ଚନର ପାର୍ଥକ୍ୟ ଜଣାଯାଏ । ଶ୍ରୀକୃଷ୍ଣ ଓ ବଳରାମଙ୍କ ରୂପ ବର୍ଣ୍ଣନା କଲାବେଳେ ପରମ୍ପରାରେ ପ୍ରଚଳିତ ବହୁ ଉପମାନର ଗଣନା କବି ଏକାଦିକ୍ରମେ କରିଥିଲେ ହେଁ, ଶ୍ରୀକୃଷ୍ଣ ଓ ବଳରାମଙ୍କ ରୂପ ସୌନ୍ଦର୍ଯ୍ୟ ତୁଳନାରେ ସେସବୁ ଯେ ଅତି ତୁଚ୍ଛ କବି ସେ କଥା ଭଲଭାବେ ଜାଣିପାରିଛନ୍ତି । କବିଙ୍କ ଭାଷାରେ-

କେ ବୋଲଇ କବିବାଟ ପଡ଼ିଲା । କ୍ରମେ ବିଧାତା ତାହାକୁ ଛାଡ଼ିଲା
କରୁଥିଲେ ଯହିଁକି ଯାହା ଲକ୍ଷ୍ୟ । କାଳେ ସବୁ ସେ ଆସି ହେଲାମିଛ ।

ଏ ସବୁ ବିଚାର, ବିମର୍ଷ ସତ୍ତ୍ୱେ ପରମ୍ପରାରେ ପ୍ରଚଳିତ ଉପମାନ ସବୁ କବି ଦୀନକୃଷ୍ଣଙ୍କ ରସକଲ୍ଲୋଳର ମୁଖ୍ୟ ଆଧାର । ଆଲଙ୍କାରିକମାନେ ଉପମା ଅଳଙ୍କାରକୁ ଅର୍ଥାଳଙ୍କାରମାନଙ୍କ ମଧ୍ୟରେ ଶ୍ରେଷ୍ଠରୂପେ ଗ୍ରହଣ କରିଥାନ୍ତି । ରାଜଶେଖରଙ୍କ ମତରେ "ଆଲଙ୍କାର ଶିରୋରତ୍ନଂ ସର୍ବସ୍ୱଂ କାବ୍ୟ ସମ୍ପଦମ୍ । ଉପମା କବିବଂଶସ୍ୟ ମାତୈବେତି ମତିର୍ମମ ।" ଅର୍ଥାତ୍ ଉପମା ଅଳଙ୍କାର ସବୁ ମଧରେ ଶିରୋଭୂଷଣ ସଦୃଶ କାବ୍ୟର ସମ୍ପତ୍ତି । ଏହାପୁଣି କବିମାନଙ୍କର ମାତା ପରି । ଆଳଙ୍କାରିକ ଅପ୍ୟୟଦୀକ୍ଷିତଙ୍କ ମତରେ ଉପମା ସବୁ ଅଳଙ୍କାରର ମୂଳ । ଉପମା ଅଳଙ୍କାରର ଶ୍ରେଷ୍ଠତା ପ୍ରତିପାଦ କରି ସେ କୁହନ୍ତି, ଉପମା-ନଟୀ କାବ୍ୟରୂପୀ ରଙ୍ଗମଞ୍ଚରେ ଅନେକ ଭୂମିକା । ଭେଦରେ ବିଭିନ୍ନ ରୂପ, ଧାରଣ

କରି ସହୃଦୟ କାବ୍ୟ-ରସିକମାନଙ୍କର ମନୋରଞ୍ଜନ କରେ (ଚିତ୍ର-ମିମାଂସା-) । ରସକଲ୍ଲୋଳରୁ ଉପମା ସବୁର ବିଚାର କଲାବେଳେ ଅପ୍ୟୟଦୀକ୍ଷିତଙ୍କ ମତକୁ ହିଁ ସ୍ୱୀକାର କରାଯାଇଛି ।

କାବ୍ୟ ମଧ୍ୟରେ କବି ଉପମାନ ସବୁକୁ ନିଜର ଜ୍ଞାତସାରରେ, ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ରଖି ପ୍ରୟୋଗ କରୁଥିଲେହେଁ, ବ୍ୟବହାରର ଆବେଗ ଓ ଉନ୍ମାଦନାରେ, କବିଙ୍କ ଅଜାଣତରେ ସେଥିରେ ବହୁ ତଥ୍ୟ ଲୁଚି ରହିଯାଏ । ସେ ସବୁକୁ ବିଶ୍ଳେଷଣ କରି ଦେଖିଲେ, 'ଅନ୍ତଃପଟ ଅନ୍ତ ନୃତ୍ୟକାରୀ' ପରି କାବ୍ୟର ମୁଖ୍ୟ ବିଷୟବସ୍ତୁର ଅନ୍ତରାଳରେ କବିର ବ୍ୟକ୍ତିତ୍ୱ, ମନୋଭାବ, ସମାଜ, ପ୍ରକୃତି ଓ ପରମ୍ପରା ସହ କବିର ପରିଚୟ ଓ ଘନିଷ୍ଠତା ପ୍ରଭୃତି ସମ୍ବନ୍ଧରେ ବହୁ କଥା ଜାଣିହୁଏ । ରସକଲ୍ଲୋଳର କବି ଦୀନକୃଷ୍ଣ ମୁଖ୍ୟତଃ କୃଷ୍ଣରସରେ ବିଭୋର ଥିଲେ ହେଁ, ସମାଜର ବହୁ ଦୃଶ୍ୟ ତାଙ୍କୁ ଯେ ପ୍ରୀତି ଦାନ କରୁଥିଲା, ଏକଥା ନିଶ୍ଚିତ। ରସକଲ୍ଲୋଳର ଉପମାନ ସବୁକୁ କେନ୍ଦ୍ରକରି ଦୀନକୃଷ୍ଣଙ୍କ ହୃଦୟ ମଧ୍ୟରେ ନୃତ୍ୟ କରୁଥିବା ବିଭିନ୍ନ ବସ୍ତୁକୁ ଦେଖିବା ଏହି ପ୍ରବନ୍ଧର ଲକ୍ଷ୍ୟ । ରସକଲ୍ଲୋଳରେ ବ୍ୟବହୃତ ଉପମା ସବୁକୁ ମୁଖ୍ୟତଃ ପ୍ରକୃତି ସମ୍ବନ୍ଧୀୟ ଏ ବୃକ୍ଷ, ଲତା, ଫଳ, ପୁଷ୍ପ, ଆକାଶ, ସାଗର,ନଦୀ, ସରୋବର, ପଶୁ, ପକ୍ଷୀ, ପର୍ବତ, ମେଘ ଓ ଧାତୁ), ସାମାଜିକ, ଧର୍ମ ଶାସ୍ତ୍ରୀୟ ଓ ବିବିଧ-ଏହି ଭେଦର ବି ଭାଗ କରାଯାଇପାରେ । ଏଥିରେ ବ୍ୟବହୃତ ଉପମା ଅଳଙ୍କାରର ଦୁଇଟି ରୂପ । ଗୋଟିଏ ସଂକ୍ଷିପ୍ତ ଓ ଅନ୍ୟଟି ବିଶ୍ଳେଷଣାତ୍ମକ । କମଳମୁଖୀ, କମଳହାସ ଓ କମଳ ସୁବାସୀ ପ୍ରଭୃତି ଏହାର ସଂକ୍ଷିପ୍ତ ରୂପ । ଆଳଙ୍କାରିକ ଏହାକୁ ଲୁପ୍ତୋପମା କୁହନ୍ତି । ଏଥିରେ ଉପମାବାଚକ ଶବ୍ଦ ଓ ସାଧାରଣ ଧର୍ମ ନ ଥାଏ । ବିଶ୍ଳେଷଣାତ୍ମକ ରୂପକୁ ଆଳଙ୍କାରିକ ପୂର୍ଣ୍ଣୋପମା କୁହେ । ଏଥିରେ ଉପମାନ, ଉପମେୟ, ସାଧାରଣ ଧର୍ମ ଓ ଉପମାବାଚକ ଶବ୍ଦ ପ୍ରଭୃତି ଉପମା ଅଳଙ୍କାରର ବିଭିନ୍ନ ଅଙ୍ଗ ସ୍ପଷ୍ଟଭାବରେ ପ୍ରକାଶିତ ।

ପ୍ରକୃତି (ବୃକ୍ଷ ଓ ଲତା) :

ପୁଷ୍ପିତ, ପଲ୍ଲବିତ ଓ ଫଳିତ ବୃକ୍ଷଲତା କବି ମନକୁ ବିଶେଷ ଭାବେ ଆକୃଷ୍ଟ କରିଛି । ଋତୁ ବର୍ଣ୍ଣନା ପ୍ରସଙ୍ଗରେ କବି ବିଭିନ୍ନ ବୃକ୍ଷଲତାର ଉଲ୍ଲେଖ କରିଥିଲେ ହେଁ ଉପମାନ ରୂପେ, କଦଳୀ, କର୍କଟ, ବେଣୁ, ନଳ, ତମାଳ ଓ

କରୁଣାର ପ୍ରୟୋଗ କରିଛନ୍ତି । ନାରୀର ଜାନୁପାଇଁ ପ୍ରସିଦ୍ଧ ଉପମାନ ହେଉଛି ରମ୍ଭାବୃକ୍ଷ । ବର୍ଣ୍ଣରେ ଏହା କନକ କଦଳୀ ବୃକ୍ଷ (୭.୨୧,୧୦-୧) ସଦୃଶ ଓ ଆକାରରେ ତରୁଣ ରମ୍ଭା (୮-୧୪) ପରି । ହସ୍ତୀ କଦଳୀବନକୁ ବିନାଶ କରୁଥିବା ଅତି ପ୍ରସିଦ୍ଧ ଅଥଚ ନାରୀ ତାର ତରୁଣ ରମ୍ଭାବୃକ୍ଷ ସଦୃଶ ଜାନୁରେ ପୁରୁଷର ମନହସ୍ତୀକି ବନ୍ଧନ କରିପାରେ (୮-୧୪) । ବିବାହ ପ୍ରଭୃତି ମଙ୍ଗଳ ଅନୁଷ୍ଠାନରେ କଦଳୀବୃକ୍ଷ ରୋପଣ କରିବା ଏକ ବିଧି । ଏହି ନିୟମକୁ ମନରେ ରଖି କବି ଦୀନକୃଷ୍ଣଙ୍କ ଗୋପୀକାମାନେ 'ଜାନୁ କଦଳୀ ବୃକ୍ଷରୂପୀ' ଶ୍ରୀକୃଷ୍ଣଙ୍କ ଦର୍ଶନ ପାଇଁ ପ୍ରସ୍ତୁତ ହୋଇଛନ୍ତି । କଦଳୀ ଗଛର ଅନ୍ୟ ଗୋଟିଏ ଗୁଣ ହେଉଛି ଯେ ଏହା ଫଳିବା ପରେ ନାଶ ହୁଏ । ସମାନଧର୍ମୀ ଆଉ କେତୋଟି ବୃକ୍ଷର ନାଁ କାବ୍ୟରୁ ମିଳେ । ସେ ସବୁ ହେଉଛି କର୍କଟ, ବେଣୁ ଓ ନଳ । ମହତ ପଣ୍ଡିତମାନେ ବିବେକପଣ ତ୍ୟାଗ କରୁଥିବା ଦେଖି କବି ଏହିସବୁ ବୃକ୍ଷକୁ ତୁଳନାରେ ରଖିଛନ୍ତି । କବିଙ୍କ ଭାଷାରେ,

କର୍କଟ ବେଣୁ ନଳ କଦଳୀ ଆଦି ଫଳ ବେଳକୁ ନାଶକୁ ଭଜନ୍ତି ।
କୁଟିଳ ହେଲେ ବିହି ମହତ ପଣ୍ଡିତହିଁ ବିବେକ ପରକୁ ତେଜନ୍ତି,
ହେ କୃପାନିଧି । ୨୬-୧୪ ।

ଶ୍ରୀକୃଷ୍ଣଙ୍କ ଶରୀରର ବର୍ଣ୍ଣ ସହ ସାଦୃଶ୍ୟ ରଖିଥିବା ହେତୁ ତମାଳ ବୃକ୍ଷ ହେଉଛି ଶ୍ରୀକୃଷ୍ଣଙ୍କର ମିତ୍ର (୧୯-୨୧,୨୧-୧୪) । କୃଷ୍ଣବର୍ଣ୍ଣ କୁନ୍ତଳର ଏହା ମଧ ଉପମାନ (୧୯-୨୧) । କରୁଣା ବୃକ୍ଷରୁ କରୁଣା (ଦୟା) ଆଶା କରିବାର କଥା, ଅଥଚ ଶ୍ରୀକୃଷ୍ଣରୂପୀ କରୁଣା ବୃକ୍ଷ ଅନେକ ସମୟରେ ଅକରୁଣା ବା ନିରାଶା ମଧ ଫଳାଏ । କବି କହିଛନ୍ତି, "କରୁଣା ବୃକ୍ଷେ ଫଳାଇଲା ପ୍ରତକ୍ଷେ ନିରାଂଶ କରି ଦୁର୍ଦ୍ଦଶା" (୨୧-୪) । କବି ପ୍ରସିଦ୍ଧିରୁ କବି କଳ୍ପବୃକ୍ଷକୁ ଗ୍ରହଣ କରିଛନ୍ତି । କାମନା ପୂର୍ଣ୍ଣ କରିବା କଳ୍ପବୃକ୍ଷର ଧର୍ମ (୮-୨) । ସେଥିପାଇଁ ଶ୍ରୀକୃଷ୍ଣ ହେଉଛନ୍ତି, ତରୁଣ କଳପ ତରୁ (୨୭-୩) ବା କଳ୍ପତରୁ ଅଙ୍କୁର (୩-୨୫) । ଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଶୋଭା ପାଉଥିବା କଳାପି - କଳାପକକୁ କବି କଳ୍ପ ବୃକ୍ଷେ ନାନାରତ୍ନ ଫଳ ସହ ତୁଳନା କରିଛନ୍ତି । କର୍ମ ଫାଟିଲା ବେଳେ କଳ୍ପତରୁ ମଧ ଫଳ ଦାନ କରେ ନାହିଁ (୨୬-୧୩) । ଲତା (୮-୧୬) ବିଶେଷ କରି କନକ ଲତା ନାରୀ ଅଙ୍ଗର ପ୍ରସିଦ୍ଧ ଉପମାନ (୩-୧୧, ୮-୧୬, ୧୦-

୧୭,୧୨-୧୯, ୧୫-୨୦, ୨୦-୨, ୨୦-୨୫, ୨୪-୮) । କାମ ବନିତା ସୁରସ ଲତାପରି ରସଯୁକ୍ତା (୧୪-୧୫) । ନାରୀ ଆଖିର କଟାକ୍ଷ ମଧ୍ୟ ଲଟା ପରି ବକ୍ର (୪-୪୬) । ନାରୀର ଗମନ-ଅଙ୍ଗ "ଜଳ ଧଉତ ଲତା ବାତେ ଯେହ୍ନେ' (୩-୧୧) । କାମ କଳାବତୀ ଗୋପୀ ଚାଲିଲା ବେଳେ ନାନା ଫୁଲରେ ଶୋଭିତ କନକ ବଲ୍ଲରୀ ପରି ବିଚିତ୍ର ଦେଖାଯାଏ (୧୨-୧୯) । ନୃତ୍ୟରତା ନାରୀ କବି ଦୃଷ୍ଟିରେ କମ୍ପିତ ପବନେ କୁସୁମିତ ଲତା (୯-୧୬) ପରି । କାଳିନ୍ଦୀଜଳରେ ସ୍ନାନରତା ନାରୀ ନୀଳମଣି ସ୍ଥଳରେ କନକଲତା ପବନେ ଢ଼ଳିଲା ପରାୟେ ଶୋଭାପାଏ । କାନ୍ତ ଅଙ୍ଗରେ ସୁବେଶିନୀ କାନ୍ତାତରୁ ଉପରେ କୁସୁମିତ ଲତା ସଦୃଶ କମନୀୟ (୨୦-୩୦) । କୌଣସି ଅଭିମାନିନୀ ନାରୀ କରତଳ କପୋଳ ଦେଇ ଦୁଃଖରେ ବସିଥିବା ଦେଖି ତାର ସଖି ଲତା ବଢ଼ିବା ପାଇଁ ପାଣି ଦେବା କଥାକୁ ଦୃଷ୍ଟାନ୍ତରେ ରଖିଛି । "କି ମାନବଲ୍ଲୀ ବଢ଼ିବ ବୋଲି ଦେଉଛୁ ସଖି ପାଣି" (୧୪-୬) । ପାଣି ଶବ୍ଦର ଦୁଇ ଅର୍ଥ (ଜଳ ଓ କର)କୁ ମୂଳ କରି, ବଢ଼ିବାକୁ ସାଧାରଣ ଧର୍ମ ରୂପେ ରଖି, କବି ନାରୀର ମାନକୁ ଲତା ସହ ତୁଳନା କରିଛନ୍ତି । କୌଣସି ଗୋପୀର ଅତି ସରୁ କଟି ଉପରେ ମେରୁ ପର୍ବତଠାରୁ ଅତି ଗରୁ କୁଚ ଓ ସେଥିରେ ପୁଣି କରିବର ପରି ଚାଲି ଦେଖି ଶ୍ରୀକୃଷ୍ଣଙ୍କର ଆଶ୍ଚର୍ଯ୍ୟର ସୀମା ରହିନାହିଁ । ଗୋପୀକୁ ଏହାର ରହସ୍ୟ ପଚାରିବାରେ ଗୋପୀ କହୁଛି, "କେତେବେଳେ ଫଳ କି ଲତାକୁ ହୋୟେ ଭାରି" (୭-୧୫) । ଫଳଭାରାବନତ ଲତା ନମସ୍କାର କଲାପରି, ପବନରେ ଦୋହଲୁଥିବା କୁସୁମିତ ବଲ୍ଲରୀ ଚାମର ଢ଼ାଳିବା ସଦୃଶ ଓ ଲତାରୁ ଖସି ପଡୁଥିବା ଫୁଲ ପାଖୁଡ଼ା ପୁଷ୍ପ ବର୍ଷା କଲା ପରି କବିଙ୍କୁ ଜଣା ପଡ଼ିଛି (୨୦-୨୮,୨୯) । ତଡ଼ିତକୁ ବଳାହକ ବଲ୍ଲୀ ଓ ନାରୀର ପୁରୁଷାୟିତ କ୍ରୀଡ଼ାକୁ ଧନୁବଲ୍ଲୀ ଆକାର (୧୪-୧୩) କହିଲାବେଳେ କବି ମନ ଉପରେ ଲତାର ପ୍ରଭାବ ଅତି ସ୍ପଷ୍ଟ ।

ଫଳ ଓ ପୁଷ୍ପ :

ଫଳ ଜଗତରୁ କବି ଦୀନକୃଷ୍ଣ ରସକଲ୍ଲୋଳରେ ଅଇରାବତ (୧୧-୬୮), କଠିନ ବର୍ତ୍ତୁଳ ଶ୍ରୀଫଳ (୬-୩୧, ୭-୨୨, ୭-୨୩), କାନ୍ତିବନ୍ତ ମାତୁଳଙ୍ଗ (୭-୨୪), କୁଶଳ ରସାଳ (୭-୨୫), କଣ୍ଟକୀ ଫଳ (୮-୨୩,

୨୭-୩୫), କରକୀ (୧୨-୩୩, ୧୦-୮), ନାରିକେଳ (୨୫-୫), ଲେମ୍ବୁ (୨୫-୫), କାଇଁଥ (୩-୫୪), କୁବଳ (୭-୨୨), କମଳ (୨୭-୧୦), ତାଳ (୭-୨୫, ୬-୧୪, ୧୦-୧୩), ପଇଡ଼ ବା ପୟଃପେଟୀ (୧୬-୨୬), ବିମ୍ବ (୧୬-୧୯), ଦଧିଫଳ (୨୬-୧୧) ଓ ରସୁଣ (୨-୧୩) ପ୍ରଭୃତି ଫଳକୁ ଉପମାନ ରୂପେ ବ୍ୟବହାର କରିଛନ୍ତି । ଏଥିମଧ୍ୟରୁ କେବଳ କାମରୂପୀକୁଚର ତୁଳନା ଦେବାପାଇଁକବି ଅଇରାବତ, ଶ୍ରୀଫଳ, ମାତୁଳଙ୍ଗ, ରସାଳ, କରକୀ, କମଳ, କୁବଳ ଓ ତାଳ ପ୍ରଭୃତି ଫଳକୁ ଗ୍ରହଣ କରିଛନ୍ତି । ଅଧରର ପ୍ରସିଦ୍ଧ ଉପମାନ ହେଉଛି ବିମ୍ବ (୧୦-୯, ୧୬-୧୯, ୩୦-୧), ସୁରଙ୍ଗ ବିମ୍ବ (୨୧-୩) ବା କୀର ଚଞ୍ଚୁଘାତ ବିମ୍ବଫଳ (୨୪-୪) । ରଦନ ପାଇଁ କବି ଡାଳିମ୍ବ (୧୦-୮) ଓ ଡାଳିମ୍ବ ବୀଜ (୧୨-୩୩)କୁ ଗ୍ରହଣ କରିଛନ୍ତି । ରସୁଣର କୁତ୍ସିତ ବାସନା କୁଟିଳ, ଦୁଷ୍ଟ, ନାସ୍ତିକ, ମହାପାପୀ ଓ ଅବିବେକୀ ଲୋକଙ୍କ ମନ୍ଦ ସ୍ୱଭାବ ପରି । ନାରୀର ପ୍ରକୃତି କଣ୍ଟକୀ ଫଳ ବା ପଣସ ପରି ବାହାରେ କଣ୍ଟା ଓ ଭିତରେ ସ୍ୱାଦୁଯୁକ୍ତ । ପୟପେଟୀ ବା ପଇଡ଼ ନିଜ ହୃଦୟର ରସକୁ ନିଜେ ଅନ୍ତର ନ କଲା ପରି ନାରୀର ବାହାର କର୍କଶ ହେଲେ ବି ସେ ସମସ୍ତଙ୍କର ପ୍ରିୟ । ଗୋପୀମାନଙ୍କ ଜୀବନର ସାରସତ୍ତ୍ୱ ଶ୍ରୀକୃଷ୍ଣ ମଥୁରା ଚାଲିଗଲେ କେବଳ ଶରୀର ହିଁ ଗୋପପୁରରେ ରହିଯିବ । କବି ଦୀନକୃଷ୍ଣ ଏହାକୁ "କରୀ ଭକ୍ଷିଲା ଦଧିଫଳ ପରାୟେ ବିଧି ଆମ୍ଭର ଆକାର ରଖିବ" (୨୬-୧୧) ସହ ତୁଳନା କରିଛନ୍ତି ।

ବିଭିନ୍ନ ପ୍ରକାର ଫଳପରି ଅତସୀ, କମଳ, କୁମୁଦ, କୁନ୍ଦ, କଦମ୍ବ, କାଶ, କାନନ-ମଲ୍ଲୀକା, କେତକୀ, ଚମ୍ପକ, ତିଳ, ମଧୁଲୀ, ଶିରୀଷ ଓ ପାରିଜାତକ ପ୍ରଭୃତି ପୁଷ୍ପ କାବ୍ୟରେ ଉପମାନ ରୂପେ ବ୍ୟବହୃତ । ଫୁଲ ଭିତରେ କମଳ କବିଙ୍କର ଅତି ପ୍ରିୟ । ପ୍ରାଚୀନ ଓ ମଧ୍ୟକାଳୀନ କବିମାନଙ୍କ ପରମ୍ପରାକୁ ଅନୁସରଣ କରି କବି ଦୀନକୃଷ୍ଣ କମଳ ଓ କମଳର ଅନ୍ୟାନ୍ୟ ପର୍ଯ୍ୟାୟବାଚୀ ଶବ୍ଦ ଯଥା-ଅରବିନ୍ଦ (୪-୫, ୧୮-୨୭), ଇନ୍ଦିବର (୯-୩), କଞ୍ଜ (୪-୫, ୮-୨୬, ୯-୧୫,୧୦-୪), ପଦ୍ମ (୫-୩, ୫-୨୯, ୭-୧୫, ୮-୧୧, ୯-୮, ୧୦-୨୦,୧୬-୧୬, ୧୯-୪୩, ୨୩-୩୩, ୨୫-୧୨, ୩୧-୨୪), ପଙ୍କଜ (୨୩-୩), ଶତପତ୍ର (୧୦-୧୨) ଓ ସାରସ (୨୬-୯)

ପ୍ରଭୃତିର ପ୍ରୟୋଗ କରିଥିଲେ ହେଁ କାବ୍ୟର -କ- ନିୟମ ପାଇଁ କମଳର ବ୍ୟବହାର ସର୍ବାପେକ୍ଷା ଅଧିକ । କମଳ ଶବ୍ଦର ବହୁଳ ପ୍ରୟୋଗର ଅନ୍ୟଗୋଟିଏ କାରଣ ହେଉଛି ଯେ ଏହା ପୁରୁଷ ବା ସ୍ତ୍ରୀର କର (୪-୫, ୫-୨୯, ୯-୩, ୧୫-୨୧, ୧୬-୨୯, ୧୯-୩୩) କରପତ୍ର (୧୦-୧୨), ଚରଣ (୪-୫, ୫-୯, ୬-୬, ୯-୩, ୯-୮, ୧୦-୧୬, ୧୦-୩୨, ୧୮-୨୭, ୧୯-୪୩, ୨୫-୧୨, ୨୬-୯, ୨୭-୩୨, ୨୯-୪୩, ୩୨-୧୯), ନେତ୍ର (୧-୩, ୨-୧୭, ୪-୫, ୫-୩, ୫-୧୦, ୫-୨୫, ୫-୨୬, ୬-୧୧ ୬-୪, ୬-୧୨, ୭-୧, ୭-୧୫, ୯-୩, ୯-୧୪, ୧୦-୨, ୧୦-୩୦, ୧୧-୧୪, ୧୧-୧୬, ୧୨-୨୧, ୧୩-୧୪, ୧୫-୨୨, ୧୭-୭, ୧୭-୧୦, ୨୫-୨୭, ୨୭-୧୮, ୨୭-୨୮, ୨୭-୩୪, ୨୯-୪, ୨୯-୪୯, ୩୧-୧, ୩୧-୪, ୩୨-୯, ୩୩-୨୯), ମୁଖ (୨-୩, ୮-୨,୮-୧୧, ୯-୧୫, ୯-୧୭, ୧୦-୪, ୧୧-୫୫, ୧୫-୧୮, ୩୦-୧୨, ୩୧-୨୪ ଓ ନଖ (୧୦-୧୨, ୧୦-୧୬) ପ୍ରଭୃତି ପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ପାଇଁ ଅନ୍ୟତମ ପ୍ରସିଦ୍ଧ ଉପମାନ । କମଳ ପରି କଳାକର (ଚନ୍ଦ୍ର) ମଧ କବିଙ୍କର ଅତି ପ୍ରିୟ । ଅଥଚ କବି ପ୍ରସିଦ୍ଧିରେ ଚନ୍ଦ୍ର କେବଳ ମୁଖ, କପୋଳ ଓ କପାଳ ପାଇଁ ପ୍ରଯୁକ୍ତ । ଅନ୍ୟାନ୍ୟ ଅଙ୍ଗ ପ୍ରତ୍ୟଙ୍ଗ ବର୍ଣ୍ଣନା କରିବାପାଇଁ ଏହା ଅଚଳ । କମଳର ସୁବାସ, ସୌନ୍ଦର୍ଯ୍ୟ, ନିର୍ମଳତା ଓ ସର୍ବୋପରି ପୁରୁଷ ବା ନାରୀର ବିଭିନ୍ନ ଅଙ୍ଗ ସହ ଏହାର ସାଦୃଶ୍ୟ (କବି ପ୍ରସିଦ୍ଧିରେ) କବିଙ୍କୁ ଏହି ପୁଷ୍ପ ପ୍ରତି ବିଶେଷ ଭାବେ ଆକୃଷ୍ଟ କରି, କାବ୍ୟ ମଧ୍ୟରେ ଏହାର ଏକ ସ୍ୱତନ୍ତ୍ର ସ୍ଥାନ ସ୍ଥିର କରିପାରିଛି । କେବଳ କମଳ ନୁହେଁ, କମଳ ସହ ସଂପୃକ୍ତ ବହୁ ଦୃଶ୍ୟ କବିଙ୍କ ମନକୁ କମଳ ପ୍ରତି ଆକୃଷ୍ଟ କରିଛି । ଶ୍ରୀକୃଷ୍ଣଙ୍କ ମୁଖମଣ୍ଡଳ ଉପରେ ଝୁଲି ପଡ଼ିଥିବା ଅଳକାକୁ ଦେଖି କବିଙ୍କର 'କମଳେ ଯେମନ୍ତ ଭ୍ରମରମାଳେ' (୫-୨) ବା 'କମଳ ଶୋଭା ଯେହ୍ନେ ଶଇବାଳେ' (୫-୨୪) ମନେ ପଡ଼ିଛି । ଶ୍ରୀକୃଷ୍ଣଙ୍କ ଅପାଙ୍ଗସ୍ପର୍ଶୀ କଳାଡୋଳାର ଚଳନ କବି ଦୃଷ୍ଟିରେ 'କମଳେ, ଭୃଙ୍ଗ ଖେଳିଲା ପ୍ରାୟେ' (୫-୨୪) । ଶ୍ରୀକୃଷ୍ଣଙ୍କ ଦୁଇ କର୍ଣ୍ଣରେ ଶୋଭା ପାଉଥିବା ମକରକୁଣ୍ଡଳକୁ ଦେଖି କବି "କମଳ ଉଭୟପାଶେ ସୁଖୋଦୟ ଯୁଗଳ ମିତ୍ର କି ଖେଳନ୍ତି" (୬-୨୧)ର କଳ୍ପନା କରିଛନ୍ତି । ଗୋପୀମାନଙ୍କୁ

ଆନନ୍ଦ ଦାନ କରୁଥିବା ଶ୍ରୀକୃଷ୍ଣ 'କମଳ କୁମୁଦ ବନକୁ ପ୍ରମୁଦ କରୁଥିବା ପୁଷ୍ପବନ୍ତ' (୮-୩୧) ସଦୃଶ । ଏହା ବ୍ୟତୀତ କରୀ ମର୍ଦ୍ଦିତ ପଦ୍ମ (୧୪-୩୦) ବା ପଦ୍ମଲତା (୨୪-୧), କରିଣୀର ପଦ୍ମ ଧରିବା (୧୦-୨୧), କମଳ ଲାଗି ଲାଗି ହୋଇ ବିଞ୍ଚି ହୋଇଯିବା (୨୦-୨୭), ସ୍ଥଳରେ କମଳ ପ୍ରଫୁଲ୍ଲିତ ହେବା (୨୦-୨୭), କନକ କମଳ (୨୩-୯) ଓ କନକ ଲତାରେ ପ୍ରସ୍ଫୁଟିତ କମଳ (୮-୧୬) ପ୍ରଭୃତି ଦୃଶ୍ୟ କବି କଳ୍ପନାରେ ସ୍ଥାନ ପାଇଛି ।

କେହି କେହି କମଳ ଓ ସୂର୍ଯ୍ୟର ପ୍ରୀତିକୁ ରାଧାକୃଷ୍ଣଙ୍କ ଅଭେଦ୍ୟ ପ୍ରୀତିସହ ତୁଳନା କରିଥାନ୍ତି । ଅଥଚ ରାଧାକୃଷ୍ଣଙ୍କ ପ୍ରୀତି କୋଟି କୋଟି କଳ୍ପ ପରେ ଅକ୍ଷୁର୍ଣ୍ଣ ଥିଲାବେଳେ କମଳ ଓ ସୂର୍ଯ୍ୟର ପ୍ରୀତି କ୍ଷଣିକ । କମଳ ଓ ସୂର୍ଯ୍ୟପ୍ରୀତିର ଦୁର୍ବଳତାକୁ ଲକ୍ଷ୍ୟ କରି କବି ଲେଖିଛନ୍ତି ।

କମଳ ସୂର୍ଯ୍ୟ ପ୍ରୀତି ନୋହଇ କହି ।
କମଳକୁ ଛାଡ଼ିଲେ ପକାଇ ଦହିରେ ।
କୁକର୍ମ କରିବାରେ ଏହି କୁଶଳ ।
କାନ୍ତ ଆଗେ ମାତଇ ଘେନି ଭ୍ରସଳରେ । ୨୨-୧୧ ।

ପ୍ରକୃତିର ପୁଷ୍ପୋଦ୍ୟାନରୁ କମଳ ବ୍ୟତୀତ କବି ନାୟକ ବା ନାୟିକାର ନାସାର ମଞ୍ଜୁଳତା ବର୍ଣ୍ଣନା କରିବାପାଇଁ ତିଳ (୧୦-୭), ସୁରଙ୍ଗ ଅଧରପାଇଁ ବନ୍ଧୁଲୀ (୯-୧୭, ୩୦-୧), ରଦନ ପାଇଁ କୁନ୍ଦ (୮-୬, ୧୦-୮, ୧୯-୨୫, ୨୦-୩୨, ୩୦-୧) ବା କୁନ୍ଦକଳି (୯-୧୭, ୧୨-୧୦, ୧୫-୧୩), ନାରୀର କୁଚ ପାଇଁ କଦମ୍ବ କୋରକ (୭-୨୨), ଶ୍ରୀକୃଷ୍ଣଙ୍କ ଅଙ୍ଗର ବର୍ଣ୍ଣ ପାଇଁ ଅତସୀ (୩-୪୭), ଶ୍ରୀରାମଙ୍କ ଅଙ୍ଗର ବର୍ଣ୍ଣ ପାଇଁ କୁନ୍ଦ (୩-୪୯, ୨୫-୧୪), କୁମୁଦ (୩-୪୯) ବା କଇରବ (୨୫-୧୪) ଓ କାଶ (୩-୪୯, ୨୫-୧୪), ଗୋପୀଙ୍କ ଅଙ୍ଗର ବର୍ଣ୍ଣପାଇଁ କେତକୀ (୮-୮, ୧୦-୧୦, ୧୫-୧୨, ୧୯-୨୪) ଓ ଚମ୍ପକ (୧୬-୧୯) ଏବଂ ଶରୀରର କୋମଳତା ପାଇଁ ଶିରୀଷ (୧୦-୧୦), କାନ୍ତି ପାଇଁ କେତକୀ ଓ ଅଙ୍ଗ ପୁଲକତାର ବର୍ଣ୍ଣନା କରିବାପାଇଁ କଦମ୍ବ ଫୁଲକୁ ଚୟନ କରି କାବ୍ୟକୁ ଆହୁରି ସୁନ୍ଦର କରିଛନ୍ତି । କମଳ ଓ ସୂର୍ଯ୍ୟର ପ୍ରୀତି ପରି କୁମୁଦ ଓ ଚନ୍ଦ୍ରର ପ୍ରୀତି କବିଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ଓ ଗୋପୀଙ୍କ ପ୍ରୀତିର ଅନ୍ୟ ଗୋଟିଏ ତୁଳନା । ନାରୀରୂପୀ କନକଲତାରେ

ବିଭିନ୍ନ ଜାତୀୟ ପୁଷ୍ପ ପ୍ରସ୍ଫୁଟିତ ହୋଇ ଚିତ୍ରକୁ ମଧ ବଳି ପଡ଼ିଛି। କବିଙ୍କ ଭାଷାରେ-

କନକ ଲତାରେ କମଳ କୋଳରେ ବିକାଶେ ବେନି ଇନ୍ଦୀବର ;
କୁନ୍ଦକଳି ସଙ୍ଗେ ଫୁଟିଅଛି ରଙ୍ଗେ ବନ୍ଧୁ ଜୀବକ ମନୋହର !
କମଳା, କୋକନଦରେ ଗନ୍ଧଫଳୀ
କି କରି ବିଧାତା କରିଛି ଏ ଲତା ଚିତ୍ରକୁ ପଡ଼ିଅଛି ବଳି । ୮-୧୬ ।

ବିଭିନ୍ନ ପ୍ରକାର ପୁଷ୍ପ ପରି କୁସୁମ ସମାଜ ସମୂହ ଭାବରେ କବିଙ୍କୁ ମୁଗ୍ଧ କରିଛି । ନାୟକ ବା ନାୟିକାର କରଜ କୁସୁମ ପରି କାନ୍ତିଯୁକ୍ତ (୧୦-୧୨) ଓ ହାସ କୁସୁମ ପରି (୧୯-୨୪) ବା ପୁଷ୍ପ ବୃଷ୍ଟି (୬-୩୦) ହେଲାପରି ସୁନ୍ଦର । ଲତାରୁ ଫୁଲ ପାଖୁଡ଼ା ଖସି ପଡ଼ିବା ବେଳେ କବିଙ୍କୁ କୁସୁମ ବରଷିଲା ପରାୟେ (୨୦-୨୮) ଦେଖା ଦେଇଛି । କୁସୁମ ଓ ମଧୁକରର ପ୍ରୀତି କବି ଦୃଷ୍ଟିରେ ଗୋପୀ ଓ ଶ୍ରୀକୃଷ୍ଣଙ୍କ ପ୍ରୀତିର ସର୍ବଶ୍ରେଷ୍ଠ ଉଦାହରଣ । କଠିନ କାଠକୁ କାଟି ପକାଇବା କୁସୁମଳିଟ ଫୁଲ ପାଖରେ ବଶ ହୁଏ (୭-୩୦) । ତାରି ପାଖରେ ସବୁବେଳେ ସଞ୍ଚାର କରୁଥାଏ (୧୧-୯୨) । ଭାବରେ ତାକୁ ଉପେକ୍ଷି ପାରେ ନାହିଁ (୨୫-୧୩) । ଶ୍ରୀକୃଷ୍ଣ ମଧ ପ୍ରତାପୀ ଅସୁରମାନଙ୍କୁ ବଧ କଲାବେଳେ ପ୍ରଚଣ୍ଡ ରୂପ ଧାରଣ କରୁଥିଲେ ହେଁ, ଗୋପୀମାନଙ୍କ ନିକଟରେ କିଙ୍କର ପରି । କୁସୁମ ଓ ମଧୁକରର ପ୍ରୀତିରୁ ମଧୁକରର ଚଞ୍ଚଳତା କବି ଲକ୍ଷ୍ୟ କରିଛନ୍ତି । ଏ ଫୁଲରୁ ସେ ଫୁଲକୁ ଯିବା ତାର ପ୍ରକୃତି, (୮-୧୯) । ଦକ୍ଷିଣ ନାୟକ ଶ୍ରୀକୃଷ୍ଣ ମଧ୍ୟ ଗୋପପୁରର ଗୋପାଙ୍ଗନାମାନଙ୍କୁ କୁସୁମକୁ ଅଳି କେଳି କଲା ପ୍ରାୟେ (୩୨-୨୧) ଭୋଗ କରୁଥିଲେ । ତେବେ ବି ଜଣଙ୍କ ପରେ ଜଣଙ୍କୁ ଛାଡ଼ିବା ଥିଲା ତାଙ୍କର ପ୍ରକୃତି । 'କୁସୁମ ଚୁମ୍ବିଲା ଭୃଙ୍ଗ ପ୍ରାୟେ ଭଲା ଚୁମ୍ବିଲା ମାତ୍ରେ ଛାଡ଼ିଲା' । (୨୧-୫, ୨୧-୯)

ଗୋପୀମାନଙ୍କୁ କୁସୁମ ସହ ତୁଳନା କରିବା ବା ଶ୍ରୀକୃଷ୍ଣଙ୍କୁ ମଧୁକର କହିବାରେ ହୁଏତ ନୂତନତା ନାହିଁ, କିନ୍ତୁ ରସକଲ୍ଲୋଳ କାବ୍ୟରେ ସମୂହ ପୃଷ୍ଠଭୂମି ଉପରେ ଗୋପୀ କୁସୁମମାନଙ୍କୁ ବିଚାର କଲେ ଦୀନକୃଷ୍ଣଙ୍କ ପ୍ରଶଂସନୀୟ ମୌଳିକତା ଅତି ସ୍ପଷ୍ଟ ଭାବରେ ଜଣାପଡ଼େ । ବୈଷ୍ଣବ ପୂର୍ବାଚାର୍ଯ୍ୟମାନଙ୍କ ମତରେ ଗୋପୀମାନେ ଶ୍ରୀକୃଷ୍ଣଙ୍କ ପରକୀୟା ନାରୀ । ଦୀନକୃଷ୍ଣ ମଧ୍ୟ ଏକଥା

ସ୍ୱୀକାର କରିଛନ୍ତି । ଶ୍ରୀକୃଷ୍ଣଙ୍କ ବାଳରୂପ ଦର୍ଶନରେ ମୁଗ୍ଧ ହୋଇଥିବା ଗୋପୀମାନଙ୍କ ଉକ୍ତିରୁ ଏକଥା ଜଣାପଡ଼େ । କୌଣସି ଗୋପୀ କହିଛି, "କୁଳବତୀ କୁଳବତୀ ନୋହିବେ । କୁଳଟା ହୋଇ ବନେ ବିହରିବେ ।" (୫ -୨୦) ବା ଅନ୍ୟ ଗୋପୀର ଉକ୍ତି ହେଉଛି, "କପଟେ ହୋଇଛି ମାନବ ରୂପ । କରିବ ପତିବ୍ରତା ବ୍ରତ ଲୋପ ।" (୫-୨୧) । କାବ୍ୟର ଏସବୁ ପଂକ୍ତିରୁ ଗୋପୀମାନଙ୍କର ସ୍ୱାମୀ ଥିବା ଅନୁମାନ କରାଯାଇ ପାରୁଥିଲେ ହେଁ କବି ତଥାକଥିତ ସ୍ୱାମୀମାନଙ୍କୁ କାବ୍ୟରେ କୌଣସି ସ୍ଥାନ ଦେଇ ନାହାନ୍ତି । ଶୀତଋତୁରେ ଶ୍ରୀକୃଷ୍ଣ ପୁରରୁ ପୁରକୁ ଗଲାବେଳେ ସେମାନଙ୍କର ଦେଖା ନାହିଁ । ଗ୍ରୀଷ୍ମଋତୁର ଜଳକ୍ରୀଡ଼ାରେ ଓ ଶରତ କାଳର ରାସରେ ମଧ ସେମାନଙ୍କର ପତ୍ତା ମିଳେ ନାହିଁ । ରାଧାକୃଷ୍ଣଙ୍କ ମିଳନ ମଧ ସ୍ୱାମୀ ସ୍ତ୍ରୀର ମିଳନ । ରାଧାଙ୍କ ସ୍ୱାମୀ ସଂପୂର୍ଣ୍ଣଭାବେ କାବ୍ୟରୁ ହଜି ଯାଇଛି । ଶ୍ରୀକୃଷ୍ଣଙ୍କ ସହ ଗୋପୀମାନେ ଅତି ସ୍ୱାଧୀନ ମନରେ ମିଳିଛନ୍ତି । ସାମାଜିକ ବାଧାର ସୂଚନା କାବ୍ୟରେ ଅତି କ୍ଷୀଣ । ନ ଥିବା ପରି ଜଣାପଡ଼େ । ଫଳରେ ବାମମାର୍ଗ ଦ୍ୱାରା ପ୍ରଭାବିତ ପରକୀୟା ପ୍ରାଣ ବୈଷ୍ଣବ ସାହିତ୍ୟ କବି ଦୀନକୃଷ୍ଣଙ୍କ ରସକଲ୍ଲୋଳର ମୂଳ ଉପାଦାନ ହୋଇ ଥିଲେ ହେଁ ଉତ୍କଳୀୟ ସଂସ୍କୃତିର ସଂସର୍ଗରେ ଏହା ରୂପାନ୍ତରିତ ହୋଇଛି । ଯେପରି ମନେ ହେଉଛି କବି ଗୋପୀମାନଙ୍କୁ ପରକୀୟା ରୂପେ ଚିତ୍ରଣ କରିବା ପାଇଁ ସାହସ କରି ପାରିନାହାନ୍ତି । ସେମାନେ ଶ୍ରୀକୃଷ୍ଣଙ୍କୁ ମାନସିକ ପତିରୂପେ ବରଣ କରିନେବା ପରେ ସମସ୍ତ ସାମାଜିକ ବାଧା ତିରୋହିତ ହୋଇଯାଇଛି । ଦୀନକୃଷ୍ଣଙ୍କ କୁସୁମ ଉପମାନ ଏହି ମନୋଭାବର ପ୍ରତୀକ ।

ତୁଳନାରେ ସୁରଦାସଙ୍କ କୁସୁମ ଉପମାନ ଏପରିକି ଦୀନକୃଷ୍ଣଙ୍କ କମଳ ଉପମାନକୁ ଗ୍ରହଣ କରାଯାଇପାରେ । ସୁରଦାସଙ୍କ କୁସୁମ ହେଉଛି କୁଳଟାତ୍ୱର ପ୍ରତୀକ । କୁଳଟା ନାରୀପରି ଏହା ବହୁ ଭ୍ରମରଙ୍କୁ ଆକୃଷ୍ଟ କରେ । ସୁରଦାସଙ୍କ ଗୋପୀମାନେ କୁବ୍‌ଜାକୁ କୁଳଟା କହିବାପାଇଁ କୁସୁମ ଶବ୍ଦର ପ୍ରୟୋଗ କରିଛନ୍ତି । "ତୁମ ଜାନତ ହମହୁଁ ୱୈସୀ ହୈ ଜୈସେ କୁସୁମ ତିହାରେ, ଘରୀ ପହର ସବକୋ ବିଲସାୱତ ଜେତେ ଆୱତ କାରେ ।" ଦୀନକୃଷ୍ଣଙ୍କ କୁସୁମ ଉପମାନ ଏହିଠାରୁ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଶ୍ରୀକୃଷ୍ଣ ମଧୁକରପରି ଗୋଟିଏ ଫୁଲକୁ ଛାଡ଼ି ଆଉ ଗୋଟିଏ ଫୁଲକୁ ଯାଉଥିଲେ ହେଁ, ଫୁଲର ଅନ୍ୟ ଉପାୟ ନାହିଁ । ଶ୍ରୀକୃଷ୍ଣ ହିଁ

ତାର ଏକମାତ୍ର ମଧୁକର । ସେଇଥିପାଇଁ ସେ କମଳ ଓ ସୂର୍ଯ୍ୟର ପ୍ରୀତିକୁ ଆଦର୍ଶ ରୂପେ ଗ୍ରହଣ କରିପାରିନାହିଁ । ସୂର୍ଯ୍ୟଙ୍କ ଉପସ୍ଥିତିରେ କମଳ ଭ୍ରମର ସହ କ୍ରୀଡ଼ା କରୁଥିବା ଦେଖି ଦୀନକୃଷ୍ଣଙ୍କ ରାଧା ଶଙ୍କିତା । ଯେଉଁ କୁସୁମ ଶବ୍ଦ ପ୍ରୟୋଗ କରି ସୁରଦାସ କୁବ୍‌ଜାକୁ କୁଳଟା ନାରୀରେ ପରିଣତ କରିଛନ୍ତି, ସେହି କୁସୁମ ଶବ୍ଦ ବ୍ୟବହାରରେ ଦୀନକୃଷ୍ଣଙ୍କ ଗୋପୀମାନେ ଏକନିଷ୍ଠତା ଗୁଣରେ ବିଭୂଷିତ ହୋଇଛନ୍ତି । କେବଳ ଗୋଟିଏ ଶବ୍ଦର ପ୍ରୟୋଗରେ ଦୀନକୃଷ୍ଣଙ୍କ ରସକଲ୍ଲୋଳ ସମସ୍ତ ବୈଷ୍ଣବ ସାହିତ୍ୟର ପରମ୍ପରାରୁ ନିଜକୁ ମୁକ୍ତ କରି ନୂତନ ଆଲୋକରେ ଆଲୋକିତ ହୋଇଛି । ଉପମାନ ମାଧ୍ୟମରେ ବହୁ ପଶୁ, ପକ୍ଷୀ କାବ୍ୟରେ ପ୍ରବେଶ ଲାଭ କରିଛନ୍ତି । ପଶୁମାନଙ୍କ ମଧ୍ୟରେ କରିବର କବିଙ୍କର ଅତି ପ୍ରିୟ, ନାରୀର ଗତି ଗଜପତି ଗତି (୩-୬, ୪-୧୧, ୬-୨୮, ୭-୧୪, ୯-୧୭, ୯-୨୧, ୧୨-୯, ୧୨-୨୧, ୧୪-୯, ୧୯-୩୯, ୨୬-୨୧, ୩୦-୨, ୩୧-୧୧) ପରି ମନ୍ଥର, ନାରୀର ସ୍ତନ କରୀ କୁମ୍ଭ (୭-୧୩, ୭-୨୪, ୯-୧୭, ୧୦-୧୩, ୧୨-୧୦, ୧୩-୧୫, ୧୫-୧୩, ୨୪-୫ , ୨୭-୬, ୩୧-୮) ସଦୃଶ କର୍କଶ । ଶ୍ରୀକୃଷ୍ଣଙ୍କ କରର ସୌନ୍ଦର୍ଯ୍ୟ କଲଭର କର ଶୋଭାକୁ (୬-୬, ୬-୮) ଧିକ୍‌କାର କରେ । ଶିଶୁ ଶ୍ରୀକୃଷ୍ଣ କଲଭ ଭଳି (୫-୪) ଝୁଲି ଝୁଲି ଚାଲନ୍ତି । ଏହା ବ୍ୟତୀତ କରିଣୀର ପଦ୍ମ ଧରିବା (୧୦-୨୫), ପଦ୍ମ ଫୁଲରେ କରୀକୁ ମାରିବା (୩୦-୧୭), କରୀବରର ସ୍ନାନ (୨୧-୨୦), କରୀମର୍ଦ୍ଦିତ ପଦ୍ମ ବନ (୧୪-୩୦, ୨୧-୨୧, ୨୪-୧), କରୀର ଇକ୍ଷୁରସ ପାନ (୯-୨୩), ଓ କରିକୃତ ଇକ୍ଷୁଦଣ୍ଡ ଭଙ୍ଗ (୨୭-୩୫) ପ୍ରଭୃତି କରିବରର ବିଭିନ୍ନ କାର୍ଯ୍ୟ କବିଙ୍କ ଉପମାନ ଭଣ୍ଡାରକୁ ସମୃଦ୍ଧ କରିଛି । ନାରୀର ସରୁ କଟି ଉପରେ ଗରୁ ସ୍ତନ ଯୁଗଳକୁ ଦେଖି କବି କେଶରୀ ଉପରେ କରିବରର କଳ୍ପନା (୭-୧୮) କରିଛନ୍ତି । କରିବର ପରେ କୁରଙ୍ଗର ସ୍ଥାନ । କୁରଙ୍ଗର ନୟନ (୭-୧୩, ୮-୫, ୯-୧୮, ୧୪-୫, ୧୫-୨୪, ୧୫-୩୮, ୧୬-୧୬, ୧୯-୩୧, ୩୦-୧୩), କୁରଙ୍ଗର ଚଞ୍ଚଳତା (୧୦-୫, ୧୫-୨୬), ଓ କେଶରୀ ଭୟତ୍ରସ୍ତା ଚକିତା କୁରଙ୍ଗୀ (୧୪-୩୧, ୨୪-୨) କବି କଳ୍ପନାରେ ବାରମ୍ବାର ସ୍ଥାନ ପାଇଛି । କେଶରୀ କଟିର କୃଶତା (୩-୧୫, ୭-୩୬, ୯-୧୭, ୧୦-୧୪, ୧୫-୧୩, ୨୫-୧୬, ୩୦-୧୬),

କେଶରୀର କରିବର ବଧ (୨୮-୨୮), ତୁରଙ୍ଗର ଚଞ୍ଚଳତା (୧୪-୮), ସଂଗ୍ରାମଭୂମି ଅଶ୍ୱର ନୃତ୍ୟ (୧୫-୧), କୋଳ ବା ଘୁଷୁରୀର ଲତା ତାଡ଼ିବା (୨୧-୫), ମର୍କଟର ପଇଡ଼ ଖୋଲା (୧୬-୨୬) ଓ ସର୍ପର ପ୍ରବଳ ଘାତରୁ ଆତ୍ମରକ୍ଷା କରୁଥିବା ନକୁଳ (୨୮-୧୬), କବି ଦୃଷ୍ଟିକୁ ବେଳେ ବେଳେ ଆକୃଷ୍ଟ କରିଛନ୍ତି ।

ନାଗ, ମଣ୍ଡୁକ, କଚ୍ଛପ ଓ ମାଟିମାର୍ଜ୍ଜାର ଜାତୀୟ ପ୍ରାଣୀମାନଙ୍କ ମଧ୍ୟରୁ କବିଙ୍କ ପାଖରେ ନାଗର ଆଦର ବେଶୀ । ପଦ୍ମତୋଳା ଗୀତ ଶ୍ରବଣ କରି ନାଗ ଶ୍ରୀକୃଷ୍ଣଙ୍କ ନାମ ଗାନରେ ଭୋଳ ହେଉଥିବା ରସିକ ଭକ୍ତ ପରି ନୃତ୍ୟ କରେ (୭-୩୧) । ଅଥଚ ମାଟିମାର୍ଜ୍ଜାର ଉପରେ ପଦ୍ମତୋଳା ଗୀତର କୌଣସି ପ୍ରଭାବ ପଡ଼େନାହିଁ । ନାଗ ମଧ୍ୟରେ କଳାନାଗ ଅତି ଭୟଙ୍କର । କ୍ଷୀରପାନ କରାଇଲେ ଗରଳ ଆହୁରି ପ୍ରବଳ ହୁଏ । କୁଟିଳ ବା ବିରକ୍ତ ହେଲେ ଲୋକଙ୍କୁ ଦଂଶନ କରି ବିକଳ କରେ (୨୧-୧୦) । ସର୍ପବିଷ ହରଣ କରିବା ପାଇଁ କଥାପ୍ରସଙ୍ଗ ବା ବିଷବୈଦ୍ୟର ଆବଶ୍ୟକ ହେଲା ପରି କାଳସର୍ପର ବିଷ ବିନାଶ ପାଇଁ କୃଷ୍ଣକଥାହିଁ ଏକମାତ୍ର ପୀୟୁଷ (୩-୬୨, ୧୬-୨୧), ନାଗର ରୂପରେ ଶ୍ରୀକୃଷ୍ଣ ହେଉଛନ୍ତି ନାଗ ପରି (୨୧-୧୦) ବିରହିଣୀ ଗୋପୀମାନଙ୍କର ଦୀର୍ଘଶ୍ୱାସ କୁଣ୍ଡଳୀର ନିଶ୍ୱାସ ପରି (୩୧-୬), ଗଳାରେ ଥିବା ଫୁଲମାଳ ଫଣି ମଣି ସମାନ (୩୧-୩), ଓ ସେମାନଙ୍କର କୁଟିଳ କୁନ୍ତଳ ବେଣୀ କୃଷ୍ଣବର୍ଣ୍ଣର ସର୍ପିଣୀ ସଦୃଶ (୧୮-୯), କୃଷ୍ଣ କଥା ଶ୍ରବଣରେ ବୋଧ ନ ହେଉଥିବା ଅରସିକମାନଙ୍କ ଆକ୍ରମଣକୁ କବି ମହାଫଣୀର ଦଂଶନ ସହ ତୁଳନା କରିଛନ୍ତି (୧୬-୨୮) । ଶ୍ରମକ୍ଳାନ୍ତା ନାରୀର କାଞ୍ଚୁଲି ବାହାର କରିବା ଦୃଶ୍ୟ କବି ଦୃଷ୍ଟିରେ "କୁଣ୍ଡଳୀ ପରାୟେ କେ ନିଜ ଇଚ୍ଛୟେ କାଞ୍ଚୁଲି କରେ ବାହାର" (୧୯-୫) । କମଠ ତାର କୋଷ ପାଳନ ନ କରୁଥିବା ହେତୁ (୨୧-୧୩, ୨୬-୧୧), ଓ କର୍କଶ ପୃଷ୍ଠ ପାଇଁ (୨୬-୨) ପ୍ରସିଦ୍ଧ । କୃଷ୍ଣ ଓ ଗୋପୀମାନଙ୍କ ଘେନାଘେନି ଭାବକୁ ଗ୍ରହଣ କରି ପାରୁ ନ ଥିବା କଠୋର ରସିକମାନେ କମଳ ନିକଟରେ ବାସ କରୁଥିବା ମଣ୍ଡୁକ ପରି (୭-୩୧) । ରସକଲ୍ଲୋଳରେ ପଶୁ ଅପେକ୍ଷା ପକ୍ଷୀ ଓ ପତଙ୍ଗର ଉଲ୍ଲେଖ ଉପମାନ ରୂପରେ ବେଶୀ । ପକ୍ଷୀସମାଜ ମଧ୍ୟରୁ କବି ହଂସ, କଳହଂସ, କାକ, କେକୀ, କପୋତ, କୋକିଳ, କୁରରୀ, କ୍ରୌଞ୍ଚ, ଖଞ୍ଜନ, ଚାତକ, ଚକୋରୀ,

ଚକ୍ରବାକ, ଜଳକରଟ, ଡାହୁକ ଓ ସଞ୍ଚାଣ ପ୍ରଭୃତି ପକ୍ଷୀକୁ ଗ୍ରହଣ କରିଛନ୍ତି । ହଂସ ବା କଳହଂସର ଗମନ (୮-୧, ୨୪-୮), ସ୍ୱନ (୩-୧୬, ୮-୧, ୧୫-୧୭, ୧୮-୨୭) ଓ ମାନସ ସରୋବରରେ କ୍ରୀଡ଼ା (୧୪-୧୪, ୧୮-୮), କାକକୁ ଡରି ପଳାଉଥିବା କାକବଲ୍ଲୁରୀ (୧୪-୨୮), କାକ ପୋଷିତ କୋକିଳ (୨୧-୯, ୨୬-୫, ୩୨-୨୧, ୩୩-୧୧), ବୋଇତରେ ଯାଉଥିବା କାକ (୧୬-୨୬) ଓ କାକର କୁଳ ତ୍ୟାଗ (୩୩-୧୧), କେକୀର ନୃତ୍ୟ (୬-୧୫, ୧୬-୧୦), କଳାପ (୧୬-୮), ଡାକ (୧୬-୮), ଓ ମେଘ ଦର୍ଶନରେ ଆନନ୍ଦିତ ହେଉଥିବା ମହାମତ୍ତ ମୟୁରୀ (୧୭-୨୦), କପୋତର କଣ୍ଠନାଦ (୨୩-୧୨, ୩୦-୧୬), କୋକିଳର କଣ୍ଠସ୍ୱନ (୩-୫୭, ୫-୩, ୮-୨୨, ୯-୧୮, ୧୦-୧୧, ୧୫-୧୩, ୨୦-୩୨, ୨୩-୯, ୩୧-୯), ବର୍ଣ୍ଣ (୩୩-୧୨), ବସନ୍ତ କାଳରେ କୋକିଳର ଆନନ୍ଦ (୨୩-୨୬) ଓ ଘନ ଋତୁରେ ତାର ନୀରବତା (୨୫-୨୩), କ୍ରନ୍ଦନଶୀଳ କୁରରୀ ପକ୍ଷୀ (୧୪-୭, ୨୧-୪, ୨୬-୧୧), କ୍ରୌଞ୍ଚର କଣ୍ଠସ୍ୱର (୨୦-୫, ୨୩-୨୮), ଖଞ୍ଜନ ପକ୍ଷୀର ବର୍ଣ୍ଣ (୧୯-୨୯, ୧୯-୩୨) ଓ ନୃତ୍ୟ (୧୮-୧୮), ଚାତକର ବାରିଦରୁ ବାରି ପାନ (୧୪-୪, ୧୬-୯), ମେଘ ପ୍ରତି ଆଶା (୨୦-୨୧), ମେଘର ଉଦୟରେ ଆନନ୍ଦ (୨୧-୨୪), ଶରତକାଳୀନ ଦଶା (୨୩-୧୫) ଓ ମେଘ ବିନା ମୃତ୍ୟୁ (୨୬-୧୮), ଚକୋରର ଅମୃତ (୬-୨୫) ବା କିରଣ ଅମୃତ ପାନ (୧୭-୨୧), କଳାନିଧି ଶୋଭା ଦର୍ଶନରେ ଆନନ୍ଦ (୧୩-୨୪), ଚନ୍ଦ୍ରମା ଆଶାରେ ଜୀବନଧାରଣ (୧୯-୪), ଚନ୍ଦ୍ରମା ବିନା ମୃତ୍ୟୁ (୨୬-୧୮), ଓ ରଜନୀରେ ଉତ୍ସାହ (୨୭-୧୨); ଚକ୍ରବାକ ଓ ଚକ୍ରବାକୀର ରାତ୍ରି କାଳରେ ବିଚ୍ଛେଦ (୨୨-୨୮, ୩୩-୨୫), ଓ କୋକ ମିଥୁନର ଏକ ସ୍ଥାନରେ ବସିବା ଦୃଶ୍ୟ (୧୫-୧୭, ୨୭-୩୭, ୨୩-୩୪, ୨୨-୪୬), ଜଳ କରଟର ବୁଡ଼ିବା ଠାଣି (୧୫-୨୦), ଡାହୁକର ଡାକ (୧୬-୮) ଓ ସଞ୍ଚାଣର ଲକ୍ଷ୍ୟ (୨୪-୧୨) କବିଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିବା ଜଣାପଡ଼େ । କରଗତ କୀର ଓ ପଢ଼ାଶାରୀ ପ୍ରଭୃତିର ଉଲ୍ଲେଖରୁ ସେ ସମୟରେ ଲୋକେ କାନନରୁ କୀର ଆଣି (୩୨-୨୦, ୩୩-୨୬) ପିଞ୍ଜରାରେ ରଖି ପାଳିବା ଓ କୃଷ୍ଣନାମ ଶିଖାଇବା (୨୧-୨୪), ଓ ପଢ଼ାଇବା (୩୧-୧) ରୀତି ସ୍ପଷ୍ଟ । ଅଧରର ଉପମାନ ରୂପେ କୀର ଦଂଶନ ବିମ୍ବଫଳକୁ (୧୪-୩୦) କବି ଗ୍ରହଣ କରିଛନ୍ତି ।

ପଶୁ ଓ ପକ୍ଷୀ ପରି କୁମ୍ଭକାର କୀଟ (୪-୨୯, ୧୯-୩୮, ୨୮-୩୪), ଖଦ୍ୟୋତ (୨୫-୬), ମଶକ (୧୪-୨୩), ବୁଢ଼ିଆଣୀ (୬-୩୦) ଓ ଭ୍ରମର (୧-୨, ୬-୧୫, ୭-୩୦, ୮-୯, ୯-୨୨, ୧୧-୫୮, ୧୧-୬୨, ୧୪-୧୪, ୧୬-୧୫, ୧୮-୯, ୧୯-୫, ୨୫-୧୧) ପ୍ରଭୃତି ପତଙ୍ଗ କବିର ଅନୁଭବୀ ଦୃଷ୍ଟିକୁ ଏଡିପାରି ନାହାନ୍ତି । ଶ୍ରୀକୃଷ୍ଣଙ୍କ ପ୍ରେମରେ ନିଜକୁ ହଜାଇ ଦେଇଥିବା ଗୋପୀମାନଙ୍କୁ କବି ପତଙ୍ଗ ସହ ତୁଳନା କରିଛନ୍ତି । ଅନଳ ଦେଖି ପତଙ୍ଗ ସବୁ ସେଥିପ୍ରତି ଆକୃଷ୍ଟ ହୁଅନ୍ତି ଓ ପ୍ରାଣତ୍ୟାଗ କରିଥାନ୍ତି (୨୩-୩୨)। ଶ୍ରୀକୃଷ୍ଣଙ୍କ ରୂପାନଳ ଗୋପୀମାନଙ୍କୁ ପତଙ୍ଗ ପରି ବିବେକଶୂନ୍ୟ କରି ଦେଇଛି । ସେମାନେ ଜାତି, ପତି, କୁଳ ତ୍ୟାଗ କରି ଶ୍ରୀକୃଷ୍ଣଙ୍କ ସହ ମିଶିବା ପାଇଁ ବ୍ୟାକୁଳ ହୋଇଛନ୍ତି (୧୭-୨୭) । କୁମ୍ଭକାର କୀଟ ଅନ୍ୟ ପୋକକୁ ମାରି ମାଟି ବସାରେ ରଖି ନିଜ ରୂପ ଦେଲା ପରି କୃପାନିଧିଙ୍କ କୃପାବଳରେ ଅସମ୍ଭବ କଥା ସମ୍ଭବ ହୁଏ (୪-୨୯) । ନାରୀର କଟାକ୍ଷ ମଧ ସେହିପରି ଶକ୍ତିଶାଳୀ । ତାହା ମାରିପାରେ, ତାରି ବି ପାରେ । ଜୟ ଅଜୟ ତାରି ଅଧୀନ (୧୯-୩୮) । ନନ୍ଦଚାଟ ମଧ କୁମ୍ଭକାରକୀଟ ପ୍ରାୟେ ମାରଇ ପୁଣି ତାରଇ (୨୮-୩୪) । ସୂର୍ଯ୍ୟ ସମ୍ମୁଖରେ ଖଦ୍ୟୋତ ଶ୍ରେଣୀର ଜ୍ୟୋତି ନିଷ୍ପ୍ରଭ (୨୫-୬) । ଧୂପ ଦେଖି ମଶକ ପଳାଇଲା ପରି ରସିକ ରାତି ପାହି ଯିବାରୁ ପଳାଇ ଯାଏ (୧୪-୨୩)। ଗୋପୀମାନଙ୍କ କାମଦଶା ଲୁତା ସୂତା ପରି ଅସରନ୍ତି (୬-୩୩) । ଭ୍ରମର ନିଜର ବର୍ଣ୍ଣ, 'ଫୁଲ ପରେ ଫୁଲ ଭୋଗ' ପାଇଁ ପ୍ରସିଦ୍ଧ । ନଦୀ, ସାଗର, ସରୋବର ଓ ବିଭିନ୍ନ ପର୍ବତକୁ କବି ଉପମାନ ରୂପେ କାବ୍ୟରେ ବ୍ୟବହାର କରିଛନ୍ତି । କବି ଦୃଷ୍ଟିରେ କାମ ହେଉଛି ନଦୀ ପରି (୮-୨୨, ୧୧-୬୬, ୧୫-୧୪, ୨୦-୯) । ନଦୀ ପାର ହେବାକୁ ଭେଳା ବା ନୌକା ଆବଶ୍ୟକ ଥିଲେ ବି ନଦୀ ପାର ହୋଇଯିବା ପରେ ସମସ୍ତେ ନୌକାକୁ ହେଳା କରିଥାନ୍ତି (୨୦-୯) । ଶ୍ରୀକୃଷ୍ଣ ତାଙ୍କ କାମ-ତଟିନୀ-ଭେଳା ଗୋପୀମାନଙ୍କୁ ଗୋପପୁରରେ ଛାଡ଼ି ମଥୁରା ଚାଲିଯିବାରୁ କବିଙ୍କୁ ନଦୀ ଓ ଭେଳା ଦୃଷ୍ଟାନ୍ତ ଦେଖା ଦେଇଛି । ନଦୀ ମଧରେ ଗଙ୍ଗା ଓ ଯମୁନା ପ୍ରସିଦ୍ଧ । ଗଙ୍ଗାନଦୀର ଜଳ ହେଉଛି ଶୁକ୍ଳ ବର୍ଣ୍ଣ ଓ ଯମୁନା ଜଳର ରଙ୍ଗ କୃଷ୍ଣ । ଏହି ଦୁଇ ନଦୀର ସଙ୍ଗମସ୍ଥଳ ହିନ୍ଦୁ ମତରେ ଅତି ପବିତ୍ର । ଏଠାରେ ସ୍ନାନ କଲେ ପାପ ଦୂର ହୁଏ । ଗୋପପୁରରେ ଗୋରା

ବଳରାମ ଓ କଳା ଶ୍ରୀକୃଷ୍ଣଙ୍କ ମିଳନକୁ କବି ଗଙ୍ଗା ଓ ଯମୁନାର ମିଳନ ସଙ୍ଗେ ତୁଳନା କରିଛନ୍ତି । (୨-୧୯, ୨୫-୧୫) । କାତ୍ୟାୟନୀର ଅଧା ଧଳା ଓ ଅଧା କଳା କେଶ କବିଙ୍କୁ ଗଙ୍ଗାଯମୁନା ଚାମର ପ୍ରାୟ ଦେଖା ଦେଇଛି (୪-୪୩) । ବଳରାମଙ୍କ ବର୍ଣ୍ଣ (୩-୪୯) ଓ ମୋତିହାରର (୭-୩୩) ତୁଳନା ପାଇଁ କବି ଗଙ୍ଗାନଦୀର ନୀରକୁ ସ୍ମରଣ କରିଛନ୍ତି । 'କ୍ରତୁଭୂଜ ସରିତ ସେ ଉଚ୍ଛୁଳେ' ପଂକ୍ତିରେ ଗଙ୍ଗା ନଦୀର ଜଳ ବୃଦ୍ଧି ପାଉଥିବା କଥାକୁ ଲକ୍ଷ୍ୟ କରାଯାଇଛି (୩-୨୦, ୨୫-୧୫) । 'କୃଷ୍ଣ ଗଙ୍ଗା ଆଣି ବେଗେ ଦିଅ' (୩୨-୩୫) ଉକ୍ତିରୁ ଭଗୀରଥଙ୍କର ଗଙ୍ଗା ଆଣିଥିବା ସୂଚିତ । ଏହା ବ୍ୟତୀତ ଜଳ (୧୬-୮), ସ୍ୱଚ୍ଛଜଳ (୮-୨୦), ଜଳଧାର (୨୩-୧୫), ଜଳ ଆଘାତରେ ବନ୍ଧ ଭାଙ୍ଗିବା ଦୃଶ୍ୟ (୫-୧୭) କବିଙ୍କ କଳ୍ପନାକୁ ପରିପୁଷ୍ଟ କରିଛି । କବି ଦୃଷ୍ଟିରେ ସୁଖ (୨୩-୧୭) ଓ ଦୁଃଖ (୩-୬୫) ଉଭୟ ସରିତ ପରି ।

ସରିତ ପରି ସାଗର ରସକଲ୍ଲୋଳର ଏକ ବିଶିଷ୍ଟ ଉପମାନ । ଏହାର ବିରାଟତା ଓ ଜନମନଲୋଭାର ଶୋଭା (୬-୨୬) କବି ମନକୁ ଆକୃଷ୍ଟକରିଛି । ସାଗରର ଥଳ, କୂଳ ନ ପାଇଲାପରି ଭଗବାନଙ୍କ କୃପା ମଧ୍ୟ ଅସୀମ । ସେଥିପାଇଁ କବି ଭଗବାନଙ୍କୁ କୃପାସିନ୍ଧୁ (୨-୪), କୃପାସାଗର, କୃପା ସରିତପତି (୧୬ -୧୮), କରୁଣାଜଳଧି (୮-୭) ଓ କରୁଣା ସମୁଦ୍ର (୩୩-୧୫) ନାମରେ ଡାକିଛନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କ ମହିମା ସମୁଦ୍ର ତରଙ୍ଗ ପରି (୫-୩୧) । କିନ୍ତୁ ଶ୍ରୀକୃଷ୍ଣଙ୍କ ମହିମା କଳନା କରିବା ଏକାବେଳେକେ ଅସମ୍ଭବ । ସ୍ନେହ, (୨୩-୧୭, ୨୫-୧୧), ସୁଖ (୧୬-୧୧) ସଙ୍ଗ (୨୬-୧୨) ଓ କାମ (୨୧-୧୧) ପ୍ରଭୃତି ମାନବୀୟ ଗୁଣ ସାଗର ପରି ବିରାଟ । ସାଗର ପରି ଭବସାଗର ପାରହେବା (୮-୩୦, ୨୩-୧୭) ଓ କାମ ସାଗରର ଲହରୀ ପାର ପାଇବା (୧୪-୩୫) ମଧ୍ୟ ଅତି ଦୁସ୍ତର । ପୁରୁଷଙ୍କ ହୃଦୟ ସାଗର ପରି ଅତି ଗଭୀର ତଥା ଅସ୍ଥିର (୨୨-୧୨) । ଗୋପୀମାନଙ୍କ କେଶସାଗରର ଲହରୀ ପରି କୁଟିଳ (୧୦-୩) ଓ ସେମାନଙ୍କର ନୟନ ତରଙ୍ଗ ପରି ଚଞ୍ଚଳ (୧୫-୩୮) । ଶ୍ରୀରାମଙ୍କ ବର୍ଣ୍ଣ ସାଗର ଫେନ ପରି (୩-୫୦, ୨୫-୧୪) ଶୁକ୍ଳ । ସାଗର ବକ୍ଷରେ କୌଣସି ବସ୍ତୁ ନିକ୍ଷେପ କଲେ, ସେ ତାହାକୁ ତଟ ଦେଶରେ କଚାଡ଼ି ଦିଏ । ପୁରୀ ସମୁଦ୍ରକୂଳରେ ପ୍ରତିଦିନ ଘଟୁଥିବା

ଏହି ଦୃଶ୍ୟ କବିଙ୍କୁ ପ୍ରଭାବିତ କରିଥିବା ମନେହୁଏ । ଗୋପୀମାନଙ୍କୁ ନିରାଶ କରିଥିବା ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ୟକରି କବି କୁହନ୍ତି- 'ସମୁଦ୍ର ପରାୟେ କୂଳରେ କିପାଁ କଚାଡ଼ିଲ', (୨୧-୩) । ଭଗବାନଙ୍କୁ ଭକ୍ତମାନେ ବିଭିନ୍ନ ଭାବରେ ଆରାଧନା କରିଥାନ୍ତି ଓ ଶେଷରେ ତାଙ୍କଠାରେ ଅତ୍ମସମର୍ପଣ କରନ୍ତି । କବି ଏହାକୁ ସାଗରର ସଙ୍ଗ ପାଇବା ପାଇଁ ବହୁ ମାର୍ଗରେ ଯାଉଥିବା ଓ ସାଗର ସଙ୍ଗ ପାଇବା ପରେ ଅଙ୍ଗ ସ୍ଥିରକରି ଶାନ୍ତଭାବ ଧାରଣ କରୁଥିବା ନଦୀ ସହ ତୁଳନା କରିଛନ୍ତି (୧୭-୧୯)। କବି ଉପେନ୍ଦ୍ରଙ୍କ ମତରେ ମଧ ସାଗର ଓ ନଦୀର ମିଳନ, ପ୍ରେମିକ ଓ ପ୍ରେମିକା ମିଳନର ଆଦର୍ଶ । କାରଣ ସାଗର ଓ ନଦୀର ମିଳନରେ ଦୁହିଁଙ୍କର ସ୍ୱତନ୍ତ୍ର ସତ୍ତା ଲୋପ ପାଇ ଏକାକାର ହୋଇଯାଏ । ବିଭିନ୍ନ ସାଗର ମଧ୍ୟରୁ କବି କ୍ଷୀରସାଗରର ନାମୋଲ୍ଲେଖ କରିଥିବାରୁ ସେ କ୍ଷୀରସାଗରକୁ ବିଶେଷ ମହତ୍ତ୍ୱ ଦେଉଥିବା ଅନୁମିତ ହୁଏ । କବିଙ୍କ ରସକଲ୍ଲୋଳ କ୍ଷୀରସାଗର ସଦୃଶ (୩୪-୨୪) । କ୍ଷୀରସାଗରକୁ ମନ୍ଥନ କଲେ ଅମୃତ ଜାତ ହୁଏ ଓ ରସକଲ୍ଲୋଳକୁ ମନ୍ଥନ କଲେ ଜାତ ହୁଏ ରସ । ସାଗର ଓ ତରଙ୍ଗିଣୀ ପରି ସରୋବର ମଧ କାମର ଉପମାନ । ଗୋପୀର ଅଙ୍ଗ ହେଉଛି କାମ ସରୋବର ପରି ସ୍ୱଚ୍ଛ ଜଳ । ଶୈବାଳ,ପଦ୍ମ, କୁମୁଦ, ଚକ୍ରବାକ ଓ ଶଫରୀ ଯୁକ୍ତ ହୋଇ ସରୋବର ସକଳ ଜନ ମନୋହାରୀ ହେଲାପରି ଗୋପୀମାନଙ୍କ ଅଙ୍ଗର ଶୋଭା । ଗ୍ରୀଷ୍ମତାପରୁ ରକ୍ଷା ପାଇବା ପାଇଁ ଲୋକମାନେ ସରୋବରରେ ସ୍ନାନ ଓ ଜଳକ୍ରୀଡ଼ା କଲାପରି ଶ୍ରୀକୃଷ୍ଣ କାମ ସନ୍ତାପ ଦୂର କରିବା ପାଇଁ ଗୋପୀମାନଙ୍କ ଅଙ୍ଗ ସରୋବରର ସାହାଯ୍ୟ ପ୍ରାର୍ଥନା କରିଛନ୍ତି (୮-୨୦) ।

ବିଭିନ୍ନ ପର୍ବତ ମଧ୍ୟରୁ କବି ମେରୁ, କୈଳାସ, ନୀଳାଚଳ ଓ ଅସ୍ତଗିରିକୁ ଉପମାନ ରୂପେ ବ୍ୟବହାର କରିଛନ୍ତି । କବିପ୍ରସିଦ୍ଧିକୁ ଅନୁସରଣକରି କବି ନାରୀ ମାନଙ୍କ କୁଚକୁ ପର୍ବତ (୯-୨୩, ୧୬-୬, ୧୮-୨୫), ଓ କନକ ଗିରି (୨୩-୨୪) ସହ ତୁଳନା କରିଛନ୍ତି । ଶ୍ରୀକୃଷ୍ଣ କଳା ପର୍ବତ (୨୦-୩୩) ପରି ଶୋଭା ପାଉଥିବା ବେଳେ ତାଙ୍କ ସ୍କନ୍ଧ ଦେଶରେ ଥିବା ଗୋପୀ କନକ ଶୃଙ୍ଗ (୨୦-୩୩)ର ଆକାର ଧାରଣ କରିଛି । ଶ୍ରୀରାମଙ୍କ ବର୍ଣ୍ଣର ତୁଳନା ପାଇଁ କବି ଶମ୍ଭୁ ପର୍ବତ (୩-୪୯, ୨୫-୧୪)କୁ ସ୍ମରଣ କରିଛନ୍ତି । ଶ୍ରୀରାମଙ୍କ କଟିତଟରେ ଶୋଭା ପାଉଥିବା ନୀଳ ପଟନି କାଛ 'କଇଳାସେ ନୀଳ ମେଘ' (୨୫-୧୪)

ସଦୃଶ । କାଳୀୟ ସର୍ପ ଉପରେ ଶ୍ରୀକୃଷ୍ଣ 'କଜ୍ଜ୍ୱଳ ପର୍ବତେ କଳାମେଘ' (୯-୪) ପ୍ରାୟେ । ସୂର୍ଯ୍ୟ ମେରୁ ପର୍ବତକୁ ନ ଛାଡ଼ିଲା ପରି (୨୬-୨୪) ଶ୍ରୀକୃଷ୍ଣଙ୍କ ମନ ସର୍ବଦା ଗୋପୀମାନଙ୍କଠାରେ ସମର୍ପିତ । କବି ସ୍ତ୍ରୀଠାରୁ ଦୂରରେ ଥିବା ପୁରୁଷର ହୃଦୟକୁ ପାଷାଣ ସଙ୍ଗେ (୧୩-୨୬ ) ତୁଳନା କଲାବେଳେ ନିରାଶା ଭାବକୁ ଅସ୍ତଗିରି (୨୬-୧୦) ଓ କଷ୍ଟକୁ ମହୀଧର (୧-୨୧) କହିଛନ୍ତି । ଅକର୍ମଶିଳାରୁ ନୀର ନ ଝରିଲା ପରି (୭-୩୧) କୃଷ୍ଣ କଥା ଶ୍ରବଣରେ କଠୋର ରସିକମାନଙ୍କର ହୃଦୟ ରସାପ୍ଲୁତ ହୁଏନାହିଁ ।

ଧରଣୀ ପୃଷ୍ଠର ବିଭିନ୍ନ ଶୋଭା କବି ଚିତ୍ତକୁ ମୁଗ୍ଧ କଲାପରି ଆକାଶରେ ଥିବା ଚନ୍ଦ୍ର, ତାରକା, ଗ୍ରହଗଣ, ସୂର୍ଯ୍ୟ, ରାହୁ, ଇନ୍ଦ୍ରଧନୁ, ବିଭିନ୍ନ ବର୍ଣ୍ଣର ମେଘ ଓ ବିଜୁଳୀ କବି ଦୃଷ୍ଟିକୁ ଆକୃଷ୍ଟ କରିଛି । କବିଙ୍କ ମତରେ ଆକାଶ କେବଳ ଆଖିରେ ଦେଖିହୁଏ । 'ଆକାଶ ପରାଏ ପ୍ରକାଶ ନୟନେ ମାତ୍ର ଦେଖିବାକୁ', (୧୨-୧) । ଆକାଶ କୁସୁମର ରସ ପାନ କରି ନ ପାରିଲା ପରି କାମକୁ ଖୋଜିଆଣି ଦେବା ଅସମ୍ଭବ । କାନନରେ କେକୀ କଳାପ ପରି ଗଗନରେ ଇନ୍ଦ୍ରଧନୁର ଶୋଭା (୨୩-୧୬) । ଆକାଶର ଶୋଭା ସମ୍ଭାର ମଧ୍ୟରୁ ଚନ୍ଦ୍ର ହେଉଛି କବିଙ୍କର ଅତି ପ୍ରିୟ । ମୁଖ (୧-୧, ୩-୧, ୩-୪୪, ୬-୪, ୭-୧୦, ୮-୧୧, ୮-୧୪, ୮-୧୫, ୧୦-୪, ୧୦-୧୦, ୧୧-୭୧, ୧୩-୭, ୧୪-୫, ୧୭-୨୧, ୧୭-୨୮, ୨୧-୮, ୨୩-୩୩, ୨୫-୧୪, ୨୬-୧, ୩୦-୬, ୩୦-୧୫, ୩୧-୯, ୩୧-୧୭ , ୩୪-୩୧), ହାସ (୮-୧୯, ୧୫-୧୪, ୨୦-୬), ଚିବୁକ (୮-୨୮) ଓ କପାଳ (୬-୨୦)ର ଉପମାନ ରୂପେ ଏହାର ବହୁଳ ପ୍ରୟୋଗ । କପାଳକୁ କଳାକର ଅର୍ଦ୍ଧ (୬-୨୦) କହିବା ପରି ନଖ କ୍ଷତ (୭-୩୪), କିଂଶୁକ କୁସୁମ (୧୨-୨୫) ଓ କୋରକିତ ଅଗସ୍ତିଦ୍ରୁମକୁ କବି ଅର୍ଦ୍ଧଇନ୍ଦୁ ସଙ୍ଗେ ତୁଳନା କରିଛନ୍ତି । ଶ୍ରୀରାମଙ୍କ ଶରୀରର ରଙ୍ଗ ପରି ମଧ ଏହାର ବର୍ଣ୍ଣ (୩-୫୦, ୨୫-୧୪) । ଶୁକ୍ଳ ପକ୍ଷରେ କଳାକରର କଳା ଯେପରି ବୃଦ୍ଧିପାଏ (୫-୨) କୃଷ୍ଣ ପକ୍ଷରେ ଏହା ସେହିପରି କୃଶତା (୩୧-୧) ଲାଭ କରେ ! କଳାକରର କଳା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଅନ୍ଧାର ଦୂର ହେଲାପରି (୨-୧, ୪-୫୨, ୫୩, ୬-୧) ଶ୍ରୀକୃଷ୍ଣଙ୍କ ମହିମା ପାପକୁ ବିନାଶ କରେ । ପୂର୍ଣ୍ଣମୀ ଦିନ ରାତ୍ରିରେ ଚନ୍ଦ୍ରକୁ କେତୁ ଗ୍ରାସ (୧୮-

୨୦) କରେ । ରାହୁ କବଳରୁ ଧୀରେ ଧୀରେ ମୁକ୍ତି ଲାଭ କରୁଥିବା ଚନ୍ଦ୍ର (୩-୧୨, ୧୩) ଗୋପୀ କବରୀରୁ ଫୁଲ ଖସିବା ପରି ଶୋଭାପାଏ ।. ଶ୍ରୀକୃଷ୍ଣଙ୍କ ଚାରିପାଖରେ ଠିଆ ହୋଇଥିବା ଗୋପୀମାନଙ୍କୁ ଦେଖି କଳାକର ପାଖରେ ଶୋଭା ପାଉଥିବା ଚନ୍ଦ୍ର (୩-୨୯, ୩୦) କବିଙ୍କର ଯେପରି ମନେ ପଡ଼ିଛି, କବରୀରୁ ଫୁଲ ଖସିବା ଦେଖି କବି କଳା ମେଘରୁ ବାହାରି ଆସୁଥିବା ଚନ୍ଦ୍ର କଥା (୩-୧୪, ୨୭-୩୧) ସେହିପରି ଭାବୁଛନ୍ତି । ପୁଣି ସୁଧାଲେପିତ ପୁରରେ ଶୋଭା ପାଉଥିବା ରମଣୀ କବିଙ୍କୁ ଶ୍ୱେତ ମେଘରୁ ବାହାରି ଆସୁଥିବା କଳାନିଧି (୨୭-୧୨)ର ଦୃଶ୍ୟ ମନେ ପକାଇ ଦେଇଛି ।

କୁମୁଦ ସହ କଳାକରର ସମ୍ପର୍କ କୃଷ୍ଣ ଓ ଗୋପୀ ପ୍ରୀତିର ଉଦାହରଣ ରୂପେ କବି ବାରମ୍ବାର (୬-୩୪, ୨୦-୧୦, ୨୫-୨୨) ବ୍ୟବହାର କରିଥିଲେ ହେଁ, ଶ୍ରୀକୃଷ୍ଣଙ୍କ କୁବ୍ଜା ପୁର ପ୍ରବେଶ ପ୍ରସଙ୍ଗ ଶୁଣି ଗୋପୀମାନଙ୍କ ପକ୍ଷରେ ଏହି ଉପମାନ ଅସହ୍ୟ ହୋଇ ପଡ଼ିଛି । ସେମାନେ ଚନ୍ଦ୍ର ଓ କୁମୁଦ ମଧ୍ୟରେ ଥିବା ପ୍ରୀତିକୁ ଆଦର୍ଶ ପ୍ରୀତି ରୂପେ ଗ୍ରହଣ କରି ପାରିନାହାନ୍ତି । ସେମାନେ କହିଛନ୍ତି, 'କଇରବ କାନ୍ତ ବୋଲଇ ଯେମନ୍ତ ଚନ୍ଦ୍ର ତାରା କରେ ଭୋଗ' ସେହିପରି କେଶବକୁ ସମସ୍ତେ ଗୋପୀନାଥ କହୁଥିଲେ ହେଁ, ସେ କୁବୁଜାର ମଧ୍ୟ ରସିକ (୩୩-୨୪) । ପୂର୍ଣ୍ଣମୀ ଚନ୍ଦ୍ର, ଅର୍ଦ୍ଧଚନ୍ଦ୍ର ଓ ସୂର୍ଯ୍ୟଙ୍କର ଅସ୍ତ ସମୟରେ ଉଇଁ ଆସୁଥିବା ଦ୍ୱିତୀୟାଚନ୍ଦ୍ର ("କରମାଳୀ ଅସ୍ତକାଳେ ଯେମନ୍ତ ନଭୋମଣ୍ଡଳେ ଶୁକ୍ଳ ଦ୍ୱିତୀୟା ଚନ୍ଦ୍ରମା ଶୋଭାପାଏ ସେ" ୩୧-୧୪) ଓ ଶରତକାଳୀନ ଚନ୍ଦ୍ର (୧୫-୨୮) କବି କଳ୍ପନାକୁ ପରିପୁଷ୍ଟ କଲାପରି ଗ୍ରହଗଣ (୬-୨୫), ନକ୍ଷତ୍ର ପନ୍ତି ବା (୧୩-୮, ୨୭-୪୦) ଚନ୍ଦ୍ରମଣ୍ଡଳ ପରିବେଷ୍ଟିତ (୧୭-୩୨) କଳାକର କବିଙ୍କୁ ପ୍ରଭାବିତ କରିଛି । ଗୋପୀମାନଙ୍କ ସ୍ୱଭାବ ସୁନ୍ଦର ମୁଖ ଦର୍ଶନରେ କବି ଯେପରି କଳଙ୍କ ରହିତ କଳାକର (୭-୧୨, ୧୩-୧, ୧୫-୩୯)ର କଳ୍ପନା କରିଛନ୍ତି, ସେହିପରି ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ପ୍ରଶଂସା ଶୁଣି ଚନ୍ଦ୍ର କୋଳରେ କଳଙ୍କ କଥା ଭାବିଛନ୍ତି । କବିଙ୍କ ଭାଷାରେ,

କଳାନିଧି ଅମୃତ ଶରୀର ହୋଇ
କଳଙ୍କକୁ କୋଳରେ ସ୍ନେହେ ବସାଇ ଯେ ।
ତରନ୍ତି ନାହିଁ ଆନ ହେଲେ ଲକ୍ଷଣ ।
କହି ନୁହଇ ପ୍ରଭୁମାନଙ୍କୁ ଗୁଣ ହେ । ୨୦-୨୦

ଶ୍ରୀକୃଷ୍ଣ ନାସାରେ ଶୁକ୍ର ତାରା ପରି ଶୋଭା ପାଉଥିବା ମୋତିକୁ ଦେଖି କବି ଚନ୍ଦ୍ର କୋଳରେ ରୋହିଣୀ ବାମା (୨୮-୩), ଓ କଣ୍ଠରେ ନକ୍ଷତ୍ରମାଳା ଓ ବକ୍ଷରେ କୌସ୍ତୁଭମଣିକୁ ଦେଖି ନୀଳମଣି ନିର୍ମିତ ସ୍ଥଳଭାଗ ଉପରେ ରମଣୀମାନଙ୍କ ସହ କ୍ରୀଡ଼ା କରୁଥିବା ନିଶାମଣିଙ୍କର କଳ୍ପନା କରିଛନ୍ତି (୨୮-୫)। କଳାକରରେ କଳାକର ମଣି ତରଳିଯାଏ, କିନ୍ତୁ ଅକର୍ମ ଶିଳାରୁ ନୀର ସ୍ରବେ ନାହିଁ,(୭-୩୧)। ସେହିପରି ଶ୍ରୀକୃଷ୍ଣଙ୍କ କଥା ଶ୍ରବଣ କରି ରସିକ ଜନ ହିଁ ମୁଗ୍ଧ ହୁଏ, ଅରସିକ ଏହାର ରସ ବୁଝେ ନାହିଁ । ଚନ୍ଦ୍ର କିରଣରେ ଚନ୍ଦ୍ରକାନ୍ତ ମଣି ପରି ଶ୍ରୀକୃଷ୍ଣଙ୍କ ଦର୍ଶନରେ ରସିକିନୀ କୁବ୍‌ଜାର ଦେହ ଦ୍ରବିଯାଇ ଅଥୟ ହେଲା । (୨୯-୪୨) ଚନ୍ଦ୍ର କିରଣରେ ରଜନୀ ପ୍ରଫୁଲ୍ଲିତ ହେଲାପରି ଶ୍ରୀକୃଷ୍ଣଙ୍କ ଉପସ୍ଥିତିରେ କୁବୁଜା (୨୯-୪୩) ଓ ଗୋପୀମାନେ ଆନନ୍ଦିତ ହୋଇଛନ୍ତି । ଚନ୍ଦ୍ର ନିଜର ରମଣୀୟ ଶୋଭା ପରି ସନ୍ତାପହର (୧୦-୧୮) ଓ ଶୀତଳତା, (୩୧-୧୨) ଗୁଣ ପାଇଁ ମଧ୍ୟ ପ୍ରସିଦ୍ଧ । ଏହା ଗୋପୀ ଶରୀରର ଶୀତଳତାର ଉପମାନ । ଶ୍ରୀକୃଷ୍ଣ ଓ ରାଧାଙ୍କର ମିଳନ ଚନ୍ଦ୍ରକର ଅର୍ଦ୍ଧ ଅର୍ଦ୍ଧକ ଛାଇ ପରି' ଶୋଭା ପାଇଛି । (୨୦-୩)

ଅନ୍ୟାନ୍ୟ ବହୁ ଉପମାନ ପରି ମେଘ ନିଜର ବର୍ଣ୍ଣ ପାଇଁ କବିଙ୍କ ଦ୍ୱାରା ଆଦୃତ । କଳାମେଘ ଶ୍ରୀକୃଷ୍ଣଙ୍କ ବର୍ଣ୍ଣର ପ୍ରସିଦ୍ଧ ଉପମାନ (୨-୫, ୩-୨୯, ୩୦, ୩-୪୬. ୪୭. ୪-୩୩. ୫-୨୫. ୬-୨୨. ୭-୮, ୯-୪, ୯-୧୩, ୧୩-୬, ୨୦-୨, ୨୦-୨୫, ୨୩-୯, ୨୩-୧୫) । ଶ୍ରୀକୃଷ୍ଣଙ୍କ ରୂପବର୍ଣ୍ଣନା କଲାବେଳେ କବି କଳାମେଘକୁ ବାରମ୍ବାର ସ୍ମରଣ କରିଥିଲେ ହେଁ ମେରୁଶୃଙ୍ଗ (୪-୩୩) କଇଳାସ (୨୫-୧୪) ଓ କଜ୍ଜ୍ୱଳ ପର୍ବତ (୯-୪) ଉପରେ କଳାମେଘର ଶୋଭା, ଚନ୍ଦ୍ର ପାଶରେ ଥିବା କଳାମେଘ (୩-୨୯, ୩୦) ବା କଳାମେଘରୁ ବାହାରି ଆସୁଥିବା ଚନ୍ଦ୍ର (୩-୧୪, ୨୭-୩୧), କଳାମେଘ କୋଳରେ (୨-୫ , ୯-୧୯, ୨୦-୨, ୨୩-୯) ବା ଆଗରେ (୨୦-୨୫) ଉଦେ ହୋଇଥିବା ବିଜୁଳି, କଳାମେଘ କୋଳରେ ଥିବା ଇନ୍ଦ୍ରଧନୁ (୬-୧୯, ୨୮-୧), ଓ କାଳିକା କୋଳରେ ଉଡ଼ିଯାଉଥିବା ନାଦରହିତ ବଳାକା (୬-୨୨) ପ୍ରଭୃତି ବର୍ଷାକାଳର ବହୁ ଦୃଶ୍ୟ କବି ଦୃଷ୍ଟିକୁ ଆକୃଷ୍ଟ କରିଛନ୍ତି । କାଳିକାର ଉଦୟରେ ଚାତକର ଆନନ୍ଦ ଓ ଯଶଲାଭ (୨୦-୨୧, ୩୧-୨), ମହାମତ୍ତ ମୟୂରୀର ନୃତ୍ୟ (୧୭-୨୦, ୨୩-୨) ଓ କୋକିଳର ମୂକତା

(୨୫-୨୩, ୩୪-୮) ପ୍ରଭୃତି କବି ପ୍ରସିଦ୍ଧି କବି ଦୀନକୃଷ୍ଣଙ୍କ ଉପମାନ ଭଣ୍ଡାରକୁ ସମୃଦ୍ଧ କରିଛି । ଏହା ବ୍ୟତୀତ ବର୍ଷାକାଳରେ କଳାମେଘ ଦ୍ୱାରା ଆଚ୍ଛାଦିତ ହେଉଥିବା ସୂର୍ଯ୍ୟ (୮-୨୭), ଓ ତାରକା କବିଙ୍କୁ ବେଳେବେଳେ ଭାବାବିଷ୍ଟ କରିଛି । କଳାମେଘ ପରି ଲୋହିତ ମେଘ ଓ ଶରଦକାଳୀନ ଶୁକ୍ଳ ମେଘ କବିଙ୍କୁ ମୁଗ୍‌ଧ କରିଛି । ଶ୍ରୀରାମଙ୍କ ବର୍ଣ୍ଣର ତୁଳନା କବି ଶରଦ ମେଘ (୨୭-୩) ସହ କରିଛନ୍ତି । ଗୌରବର୍ଣ୍ଣା ଗୋପୀ କଣ୍ଠରେ ଗଜମୋତି ହାରକୁ ଦେଖି କବି ଲୋହିତ ମେଘ ପାଖରେ ବିରାଜିତ ହୋଇଥିବା ତାରକାଶ୍ରେଣୀ (୧୮-୨୪)ର କଳ୍ପନା କରିଛନ୍ତି । ବର୍ଷାକାଳର ଅନ୍ୟାନ୍ୟ ଦୃଶ୍ୟ ମଧ୍ୟରୁ ବର୍ଷାର ଅଗଣିତ ଧାରା (୫-୩୧, ୭-୯, ୮-୩୦, ୩୪-୯), ବତାସ (୨୬-୧୨), ବିଜୁଳିର ଆଲୋକ, ପଥୁକୀମାନଙ୍କୁ ଭୟଭୀତ କରୁଥିବା ଘଡ଼ଘଡ଼ିର ପ୍ରଚଣ୍ଡ ନିର୍ଘୋଷ (୭-୯, ୧୬-୧୦), ପ୍ରଥମେ କଠିନ ଓ ପରେ ଦ୍ରବୀଭୂତ ହେଉଥିବା କରକା (୮-୨୪)ର ଉଲ୍ଲେଖ ମିଳେ । ଘନରସର ଅଭାବରେ ନଦୀ ଜଳ କୃଶ ହେଲାପରି କାନ୍ତ ବିହୀନେ ବିରହିଣୀକୁଳ (୧୫-୨) ଶୋଭା ପାଆନ୍ତି । ବର୍ଷାକାଳୀନ ପୁଷ୍ପ ମଧ୍ୟରୁ କଦମ୍ବକୁ କବି ବିରହିଣୀ ନାୟିକାର ରୋମ ଉଦ୍‌ଗମ (୩୪-୭) ସହ ତୁଳନା କରିଛନ୍ତି । ବର୍ଷାକାଳ ପରି ଶୀତଋତୁର ପ୍ରବଳ ଶୈତ୍ୟ (୩୪-୭) ଓ ହେମନ୍ତ ଋତୁର କାକର (୩୩- ୧୧) ଉପମାନ ଭାବରେ କାବ୍ୟରେ ସ୍ଥାନ ପାଇଛି ।

ଉପମାନ ନିର୍ବାଚନ ପାଇଁ ସମାଜ ହେଉଛି କବିଙ୍କର ମୁଖ୍ୟ ଲୀଳାକ୍ଷେତ୍ର । ବିଭିନ୍ନ ଶ୍ରେଣୀୟ ବ୍ୟକ୍ତିଙ୍କର ସମାଗମରେ ସମାଜ ଗଢ଼ି ଉଠେ । ରସକଲ୍ଲୋଳର ଉପମାନ ମାଧ୍ୟମରେ ସମାଜରେ ଯେଉଁମାନଙ୍କ ସହ ସାକ୍ଷାତ ହୁଏ, ସେମାନେ ହେଉଛନ୍ତି, ମହାରାଜା (୭-୨୮), ମୂର୍ଖ (୯-୧୩), ଗୁଆଁର (୯-୧୩), କିଙ୍କର (୧୨-୫, ୨୦-୩୨), ଦରିଦ୍ର (୩୩-୨, ୨୩-୧ଏ ୩୧-୨୨), ବଡ଼ଲୋକ (୪-୩୦), ବଧିର ଭାଟ (୧୬-୨୬), କୟେବାର (୩୨-୧୯), ବ୍ରହ୍ମଧ୍ୟାନୀ ଯୋଗୀ (୧୫-୧୭, ୧୫-୫), କୁଟିଳ, ଦୁଷ୍ଟ, ନାସ୍ତିକ, ମହାପାପୀ ଅବିବେକ (୨-୧୩), ପୁଣି ଭକ୍ତ (୧୬-୯), ପୁଣ୍ୟଜନ (୨୧-୧୫), ଗୁଣୀପଟଳ (୨୧-୩୦) ଓ ରସିକ (୩୪-୨୮), ସାହୁ ଓ ଖାତକ (୩୦-୧୮) । ସମସ୍ତେ ନିଜ ନିଜ ଗୁଣ ପାଇଁ ସମାଜରେ ପରିଚିତ । ମହାରାଜା କର୍କଶ ଓ ତେଜସ୍ୱୀ ହେଲେ ପ୍ରଜା ଖଜଣା ଗଣ୍ଡାକ ଦେଇ ନିଶ୍ଚିନ୍ତ ରହିପାରେ ।

କବି ଦୀନକୃଷ୍ଣ ଏହିପରି ଜଣେ ମହାରାଜାଙ୍କୁ ନିଜର ପ୍ରଭୁ ରୂପେ ପାଇବା ପାଇଁ କାମନା କରିଛନ୍ତି ।

କର୍କଶ ତେଜସ୍ୱୀ ଏ ସହଜ ମହାରାଜା ।
କେବଳ ଏହାଙ୍କ ତଳେ ହେବି ମୁଁ ପରଜା
କର ଦେଇ ନିଶ୍ଚିନ୍ତରେ କରିଥିବି ସେବା
କିଛି ମାଗୁନାହିଁ ମୋର ଏତେହେଁ କହିବା (୭-୨୮)

କର୍କଶ ତେଜସ୍ୱୀ ମହାରାଜାଙ୍କର କେତୋଟି ବିଶିଷ୍ଟ ଗୁଣ ମଧ୍ୟ କବିଙ୍କୁ ଉପମାନ ଯୋଗାଇବାରେ ସାହାଯ୍ୟ କରିଛି । ଏପରି ରାଜାର ଅଭିଷେକରେ ପୃଥିବୀ ଆନନ୍ଦିତ ହୁଏ । ଲୋକମାନେ ସନ୍ତୋଷ ଲାଭ କରନ୍ତି । ଦୁଷ୍ଟମାନଙ୍କର ପ୍ରତାପ କମ ହୁଏ । ଦରିଦ୍ରମାନଙ୍କର ଦୁଃଖ ଦୂର ହୁଏ । ବ୍ୟଭିଚାରୀ ଓ ଚୋରମାନେ ଭୟଭୀତ ହୁଅନ୍ତି (୧୩-୨୧) । ରାଜା ସମାଜର ହିତ ସାଧନ କରୁଥିଲେ ହେଁ ଅନେକ ସମୟରେ ସେମାନଙ୍କ ଅତ୍ୟାଚାର ଅସହ୍ୟ ହୋଇପଡ଼େ । ଏକଥାକୁ ଲକ୍ଷ୍ୟ କରି କବି କହିଛନ୍ତି ଯେ ନୃପତି ଅନେକ ସମୟରେ ଅଗ୍ନି ପରି ଅନୀତି ମଧ୍ୟ କରିଥାଏ (୨୧-୬) । ସେତେବେଳେ ସେ ନିଜ ଆଶ୍ରୟରେ ଥିବା ଲୋକମାନଙ୍କୁ ଜାଳିଦିଏ । ନୃପତିର ମନ ଖୁସି କରିବା ପାଇଁ ରଙ୍ଗଭୂମିରେ ଗୀତ ଓ ନୃତ୍ୟ କରୁଥିବା ନର୍ତ୍ତକୀ ଉପମାନ ଭାବରେ କବି ଦୃଷ୍ଟିକୁ ଆକୃଷ୍ଟ କରିଛି (୩୪-୧୦) ।

ଦୀନକୃଷ୍ଣଙ୍କ ମତରେ ବଡ଼ଲୋକର ଅର୍ଥ, ଧନୀ ନୁହେଁ ମହନୀୟ । ପ୍ରକୃତ ବଡ଼ଲୋକ ଜୀବ ବିନିମୟରେ ନିଜର ଟେକ ବା ବଡ଼ିମା ରଖେ ଓ ପରର ଉପକାର କରେ (୪-୩୧) । ଦରିଦ୍ର କୋଟିନିଧି ବା (୩-୨, ୨୩-୧) କୋଟିସୁବର୍ଣ୍ଣ ପାଇ (୩୧-୨୨) ଆନନ୍ଦିତ ହେବା ପରଂପରାନୁସୃତ । କୁଟୁମ୍ବୀ, ଦୀନଜନ ମନ ସାଂସାରିକ ଜଞ୍ଜାଳରେ ସନ୍ତାପିତ ହେଉଥିବା ସଂସାରର ଏକ ସାଧାରଣ ଅନୁଭବ (୧୫-୨) । କିଙ୍କର ମହାଭୟ କରି ମାଲିକର ବଶ ହୁଏ (୧୨-୫) ଓ ପଦତଳେ ଶରଣ ପଶେ । ଏପରିକି ଅନେକ ସମୟରେ ନିଜର ପ୍ରଭୁଙ୍କୁ କାନ୍ଧରେ ବସାଇ ନେବା ପାଇଁ ଆପତ୍ତି କରେନାହିଁ (୨୦-୩୩) । ସେତେବେଳର ସାହୁକାରମାନେ ଗୁଣେ ଦେଇ ଖାତକୁ ଠାରୁ ଦୁଇଗଣ ଆଦାୟ କରୁଥିବା ଚଳଣିକୁ ଲକ୍ଷ୍ୟ କରି କବି ତାକୁ ଉପମାନ ରୂପେ ବ୍ୟବହାର କରିଛନ୍ତି (୩୦-୨୫, ୩୪-୨୭) । ଏହା ବ୍ୟତୀତ ଗତାଗତି ସ୍ଥିର ବେଳେ ଏକାକୀ

ଯାଉଥିବା ପଥିକକୁ କରବାଳରେ ଖଣ୍ଡ ଖଣ୍ଡ କରି ହତ୍ୟା କରୁଥିବା ଗୁଆଁରମାନେ ମଧ୍ୟ କବି ଦୃଷ୍ଟିକୁ ଏଡ଼ି ପାରିନାହାନ୍ତି । ସମାଜରେ ଲାଞ୍ଛିତ ଓ ଅପମାନିତ ବ୍ୟକ୍ତି ନିଜକୁ ଅପଦାର୍ଥ ଭାବେ । କାହାରି ଆଗରେ ଛିଡ଼ା ହେବାର ସାହସ ତାର ନଥାଏ । ସେତେବେଳେ ସେ ନିଜର କୃପାଣରେ ନିଜର ଜୀବନ ନେଇଥାଏ । (୧୬-୧୭) । ବିପତ୍ତି ବେଳରେ ମଧ ଲୋକମାନେ ଛାତିରେ କାତି ମାରି ଆତ୍ମହତ୍ୟା କରିଥାନ୍ତି । (୧୬-୨୯) । କବିଙ୍କ ସମସାମୟିକ ସମାଜରେ ଧନ ଦେଇ ଲୋକ କିଣିବା ପ୍ରଥା ଥିବା ପରି ଜଣାପଡ଼େ । କିଣିଲା ପ୍ରାଣୀ କେବଳ କୋମଳ ବାଣୀରେ କୃତାର୍ଥ ହୁଏ (୧୬-୧୩) । କବିଙ୍କ ଉକ୍ତିରୁ କିଣା ଲୋକଙ୍କ ପ୍ରତି ଭଲ ବ୍ୟବହାର ନ ହେଉଥିବା ଅନୁମାନ କରାଯାଇପାରେ । କବି ଦୀନକୃଷ୍ଣଙ୍କ ବ୍ୟବହୃତ ଉପମାନ ମଧ୍ୟରୁ ବହୁ ବ୍ୟବସାୟ ତଥା ଜାତିର ସନ୍ଧାନ ମିଳେ । କଥାପ୍ରସଙ୍ଗ ବା କେଳାର ବ୍ୟବସାୟ ହେଉଛି ସାପବିଷ ଝାଡ଼ିବା (୧୬-୭) ଓ ନାଗଧ୍ୱନି ସ୍ୱରଦ୍ୱାରା ବା ପଦ୍ମତୋଳା ଗୀତ ବୋଲି (୭-୩୧, ୩୨୦) ସାପ ନଚେଇବା । ଏମାନେ ନିଜର ସ୍ତ୍ରୀକୁ ଜୀବିକା ଅର୍ଜନର ମୁଖ୍ୟ ସାଧନ ରୂପେ ବ୍ୟବହାର କରୁଥିଲେ ହେଁ ସେମାନଙ୍କ ପ୍ରତି ନିର୍ଦ୍ଦୟ ହୋଇଥାନ୍ତି (୩-୨୫) । କରତ ଦ୍ୱାରା ଶଙ୍ଖ କାଟି ବିଭିନ୍ନ ମୂର୍ତ୍ତି ତିଆରି କରିବା ହେଉଛି, ଶଙ୍ଖାରିମାନଙ୍କ ଜୀବିକା (୨୧-୨୫) । ଐନ୍ଦ୍ରଜାଲିକମାନେ କୁହୁକ ବଳରେ କରାଟରୁ ରୂପା ନୀଳା ପ୍ରତିମା ବାହାର କରି ନାଟ କରନ୍ତି (୨୭-୫) । ବ୍ୟାଧ, ଜୀବଜନ୍ତୁ, ବ୍ୟାଧ ହାତରେ ଧରା ପଡ଼ିଥିବା ଶୁଆ, ଖଞ୍ଜନ ଓ କୁରଙ୍ଗୀର ଦୈନ୍ୟ ଦଶା ପ୍ରତି କବିଙ୍କର ସହାନୁଭୂତି ଅତି ସ୍ପଷ୍ଟ । କୁରାଳ ବା କୁମ୍ଭକାର ଚକ ବୁଲେଇ କୁମ୍ଭ ନିର୍ମାଣ କରେ । କୁମ୍ଭାରର ଚକ ଘୁରିବାକୁ ମନ ଘୂରିବା ସହ ତୁଳନା ଦିଆଯାଇଛି । ଚିତ୍ରକାରଙ୍କ ଚିତ୍ରପଟରେ ଚିତ୍ର ପ୍ରତିମା ଅଙ୍କନ କରି (୨୯-୨୮) ଓ ମାଳାକାର ମାଳାଗୁନ୍ଥି ନିଜ ନିଜର ଜୀବିକା ନିର୍ବାହ କରନ୍ତି । କାଞ୍ଚନକୁ କାଇଞ୍ଚ ସହ ନିକିତିରେ ତୁଳି ମୁଲବେଳକୁ ବଳି ପଡୁଥିବା ଉକ୍ତିରୁ ସୁନା ବ୍ୟବସାୟୀ ବଣିଆମାନଙ୍କୁ ସହଜରେ ଚିହ୍ନି ହୁଏ ।

କୃଷି କରି ଜୀବିକା ନିର୍ବାହ କରୁଥିବା କୃଷକ ବା କୃଷିକାରମାନଙ୍କ ସମ୍ବନ୍ଧରେ କବି ନିଜର ଅନୁଭବକୁ କାବ୍ୟର ବିଭିନ୍ନ ସ୍ଥାନରେ ଉପମାନରୂପେ ବ୍ୟବହାର କରିଛନ୍ତି । କୃଷିକାରମାନେ ବର୍ଷା ହେଲେ ଆନନ୍ଦ ମନରେ ଲଙ୍ଗଳରେ ଫାଳ ଯୋଚି ପ୍ରସ୍ତୁତ ହୋଇଯାନ୍ତି । କୃଷି ଲାଭଜନକ ବ୍ୟବସାୟ ନ ଥିଲା ।

ସେଥି ପାଇଁ କବି କହିଛନ୍ତି - କୃଷିରେ (ଭୂମି ଚିରିବା) କେବଳ କାୟକ୍ଳେଶ ଓ ଶ୍ରମ ଲାଭ ହୁଏ । ଜୀବଜନ୍ତୁଙ୍କ ଦାଉରୁ ଫସଲକୁ ରକ୍ଷା କରିବାପାଇଁ ଲୋକେ ଚାରିପଟେ ବାଡ଼ ଦେଉଥିଲେ । ବୋଇତରେ ଦେଶ ବିଦେଶକୁ ଯାଇ ବାଣିଜ୍ୟ କରିବା ଥିଲା ସେ କାଳର ଅନ୍ତିମ ଅବଲମ୍ବନ । ବିଭିନ୍ନ ବ୍ୟବସାୟରେ ପେଟ ନ ପୂରିଲେ ଲୋକମାନେ କଷ୍ଟରୁ ତରିବାପାଇଁ ବୋଇତକୁ ସିନ୍ଧୁରେ ମେଲି ବାଣିଜ୍ୟ କରିବାକୁ ଯାଉଥିଲେ । ବଣିଜାରମାନଙ୍କର କୁଳ, ଶୀଳ, ବେଭାର ପ୍ରତି ବିଚାର ନ ଥିଲା । ବୋଇତ ସବୁ ଅଝାଳିଦ୍ୱାରା ଚଳୁଥିଲା । ବୋଇତରେ ବାଣିଜ୍ୟ କରି ଲୋକେ ସୁଖରେ କାଳାତିପାତ କରୁଥିଲେ ହେଁ, ଅନେକ ସମୟରେ ଝଡ଼, ବତାସରେ ବୋଇତ ସବୁ ନଷ୍ଟ ହୋଇଯାଇ ବେଭାରୀମାନଙ୍କୁ ଦୁଃଖ ଦେଉଥିଲା । କବି ସମାଜରେ ଥିବା କୃପଣମାନଙ୍କ କଥା ବାରମ୍ବାର ଉଲ୍ଲେଖ କରି ସେମାନଙ୍କ ପ୍ରତି ନିଜର ତଥା ସମାଜର ଦୃଷ୍ଟିକୋଣ ପ୍ରକାଶ କରିଛନ୍ତି । କୃପଣ ଅଜସ୍ର ଧନ ସଞ୍ଚୟ କରେ କିନ୍ତୁ ନିଜର ଲୋକ (ସେବକ)ମାନଙ୍କୁ କଷ୍ଟଦିଏ ; କୃପଣ ସାମନ୍ତ ନିକଟରେ ଲୋଭୀ ସେବକର ଦୂରବସ୍ଥା ଅକଥନୀୟ । କୃପଣ ଦେବା ପାଇଁ ଯେତିକି କୁଣ୍ଠିତ ଲୋଭୀ ନେବାପାଇଁ ସେତିକି ବ୍ୟଗ୍ର । କୃପଣ ବ୍ୟକ୍ତି ନିଜର ସଞ୍ଚିତ ଧନ ଭୋଗ କରି ନ ପାରିଲେ ସମସ୍ତେ ଖୁସି ହୁଅନ୍ତି । ମନୋରଞ୍ଜନର ବିଭିନ୍ନ ସାଧନ ମଧ୍ୟରୁ କବି 'ଅନ୍ତପଟ ଅନ୍ତନୃତ୍ୟକାରୀ' (୮-୧୧), କୁଟୁଣୀ ପ୍ରତିମା (୧୪-୨୯), ସାପୁଆକେଳାର ନାଗ ଧ୍ୱନି ସ୍ୱର (୭-୧୨), ପଦ୍ମତୋଳା ଗୀତ, ଇନ୍ଦ୍ରଜାଲିର କୁହୁକ (୨୭-୪), କନ୍ଦୁକ କ୍ରୀଡ଼ା (୭-୨୩), ସାରଣୀ କପର୍ଦ୍ଦିକଦ୍ୟୁତ (୨୨-୨୩), ଓ ନୃତ୍ୟ (୩-୧୯)କୁ ଉପମାନ ରୂପେ ବ୍ୟବହାର କରିଛନ୍ତି । ନୃତ୍ୟ ପାଇଁ ସଙ୍ଗୀତମନ୍ଦିର ବା ରଙ୍ଗଭୂମିଥାଏ । ନର୍ତ୍ତକୀସବୁ ସୁବେଶ ହୋଇ ଦୋହଲି ଦୋହଲି, ଗୀତ ଗାଇ, ମର୍ଦ୍ଦଳର ବାଦ୍ୟ ତାଳରେ ନୃତ୍ୟକରି ସର୍ବଜନ ମନ ମୁଗ୍ଧ କରନ୍ତି । ନର୍ତ୍ତକୀର ଘୂରି ଘୂରି ନୃତ୍ୟ କରିବାକୁ ଭ୍ରମରୀ କୁହାଯାଏ ଓ ସେଥିରୁ ତାହାର କୁଶଳତା ଜଣାପଡ଼େ । ନାଟମନ୍ଦିରରେ ନଟ ଆନନ୍ଦ ମନରେ ପ୍ରବେଶ କରେ ଓ ଅଭିନୟ ସାରି ଅଦୃଶ୍ୟ ହୋଇଯାଏ । ନାଟ ଓ ସଙ୍ଗୀତର ସହାୟକ ରୂପେ ବୀଣା, ବଂଶୀ ଓ ମର୍ଦ୍ଦଳ ପ୍ରଭୃତିର ଉଲ୍ଲେଖ କବି ପ୍ରସଙ୍ଗକ୍ରମେ କରିଛନ୍ତି ।

ଉପମାନ ମାଧ୍ୟମରେ ରସକଲ୍ଲୋଳର ସଂଗ୍ରାମ ଦୃଶ୍ୟ ଅତି ମନୋହର ଓ ଜୀବନ୍ତ । ସମର ସମୟରେ ବୀର ଡାକ ଶୁଭେ ଓ ସମରବାଦ୍ୟ ବାଜିଉଠେ ।

ବିଶିଖ ଘାତରେ ଅଙ୍ଗଭେଦ ଆରମ୍ଭ ହୁଏ, ଯୋଦ୍ଧାମାନେ କ୍ରମେ ରଣମତ୍ତା ହୋଇ ନିଜର ଯୋଗ୍ୟତା (ପରାକ୍ରମ) ଦେଖାଇବାକୁ କାଣ୍ଡପରେ କାଣ୍ଡ ପ୍ରୟୋଗ କରି ପ୍ରତିପକ୍ଷକୁ ଜ୍ଞାନଶୂନ୍ୟ କରି ଦିଅନ୍ତି । ଚେତନା ଫେରି ପାଇ ପ୍ରତିପକ୍ଷ ବୀର ପ୍ରତିଶୋଧ ନିଏ । ଯୁଦ୍ଧବେଳେ ଯୋଦ୍ଧାମାନେ ବିଭିନ୍ନ ପ୍ରକାର ଶବ୍ଦ (ହୁଙ୍କାର) କରିଥାନ୍ତି । କୋଦଣ୍ଡରେ ହାବୋଡ଼ା କାଣ୍ଡ ସନ୍ଧି ଉପ୍ରୋଧ ନ ରଖି ବିନ୍ଧିଲେ ଅପର ପକ୍ଷର ଲୋକେ ଜୀବନ ରକ୍ଷାପାଇଁ ପର୍ବତ କନ୍ଦରରେ ଆଶ୍ରୟ ନେଇଥାନ୍ତି (୧୬-୬) । ଅସ୍ତ୍ରଶସ୍ତ୍ର ତ୍ୟାଗ କରି ମଲ୍ଲମାନେ ଅନେକ ସମୟରେ ମଲ୍ଲ ଯୁଦ୍ଧ ଆରମ୍ଭ କରନ୍ତି । କବି ମଲ୍ଲଯୁଦ୍ଧର ଦୃଶ୍ୟକୁ ଭିଡ଼ନ୍ତି, ଜଡନ୍ତି ଓ କରାଘାତେ ପୀଡ଼ନ୍ତି ପ୍ରଭୃତି ଶବ୍ଦ ଦ୍ୱାରା ପ୍ରକାଶ କରିଛନ୍ତି । ବେଳେ ବେଳେ ଯୋଦ୍ଧା ପରାସ୍ତ ହୋଇ ମଧ୍ୟ ପୁଣି ଯୁଦ୍ଧ କରିବାକୁ ଆସିଥାଏ । ବିଜୟୀ ଯୋଦ୍ଧାମନେ ଯୁଦ୍ଧପରେ ନିଜର ଯୋଗ୍ୟତା କ୍ରମରେ ଅଳଙ୍କାର, ହାର, ବସ୍ତ୍ର, କୁଣ୍ଡଳ, କର୍ପୂର ଓ ତାମ୍ବୂଳ ପ୍ରଭୃତି ଉପହାର ପାଇଥାନ୍ତି । ଯୁଦ୍ଧ କ୍ଷେତ୍ରରେ ଆଗଭର ନ ହୋଇ ପଛରେ ରହିବା ଯୋଦ୍ଧାମାନେ ଅପମାନିତ ହୁଅନ୍ତି ଓ ଦଣ୍ଡସ୍ୱରୂପ ବନ୍ଦୀ ହୋଇଥାନ୍ତି । ପରାସ୍ତ ହୋଇଥିବା ଯୋଦ୍ଧାମାନଙ୍କ ମଧ୍ୟରୁ ଅନେକ ଲାଜରେ ନିଜକୁ ଅପଦାର୍ଥ ଭାବି, କାହାରି ଆଗରେ ଠିଆ ହେବାର ସାହସ ଲୋପ କରି, ନିଜ କୃପାଣରେ ନିଜର ଜୀବନ ନେଇ ଥାନ୍ତି । ଅସ୍ତ୍ରଶସ୍ତ୍ର ମଧରୁ କବି କାଣ୍ଡ, କୋଦଣ୍ଡ, କରବାଳ, କରବାଳ-ପୁଞ୍ଜୀକରପାଶ, କୁନ୍ତ ଓ ବିଶିଖର ଉଲ୍ଲେଖ ଉପମାନ ରୂପେ କରିଛନ୍ତି । ସଂଗ୍ରାମ କାଳରେ ବ୍ୟବହୃତ ହେଉଥିବା ରଥ ରସକଲ୍ଲୋଳର ଅନ୍ୟ ଗୋଟିଏ ବିଶିଷ୍ଟ ଉପମାନ । କବିଙ୍କ ପ୍ରୟୋଗରୁ ଦିଗବିଜେ ରଥ ସମ୍ବନ୍ଧରେ ବହୁକଥା ଜଣାଯାଏ । ଦିଗବିଜେ ରଥର ଚକ୍ର ଉତ୍ତମ ଅମ୍ବର ଦ୍ୱାରା ସୁଶୋଭିତ ହୁଏ । କୃଷ୍ଣବର୍ଣ୍ଣ ପତାକା ଓ ବାଜେଣୀ ଦ୍ୱାରା ବିମଣ୍ଡିତ ହୁଏ । ପତାକା ଉଡ଼ି ମନନେତ୍ର ବଶ କରେ (୮-୧୭) । ଯୁଦ୍ଧରେ ଜୟକରି ଫେରିଲେ ବିଜୟ-ପତାକା ଉଡ଼େ (୮-୨୩) । ରହୁବରରେ ରଥୀମାନେ ସଞ୍ଚାର କରି ନାନାବନ୍ଧରେ ସମର କରିଥାନ୍ତି । ସଂଗ୍ରାମ କାଳରେ ବ୍ୟବହୃତ ହେଉଥିବା ଅଶ୍ୱ ସବୁକୁ ମଧ୍ୟ କବି ଉପମାନରୂପେ ଗ୍ରହଣ କରିଛନ୍ତି । ତତଲା ବାଲିରେ ପାଦ ପକେଇ ଗଲାବେଳେ ପଥିକ 'ସଂଗ୍ରାମଭୂମି ଅଶ୍ୱମତ' (୧୪-୧) ଗତି କରେ । ଶ୍ରୀକୃଷ୍ଣଙ୍କ ରଥର ଶିରୋଦେଶରେ ଥିବା କପିବର ମଧ କାବ୍ୟର ଅନ୍ୟ ଏକ ଉପମାନ । କବି ଏହାକୁ ପରଂପରାରୁ ଗ୍ରହଣ କରିଛନ୍ତି ।

ସମାଜରେ ପ୍ରଚଳିତ ବହୁ ଧାର୍ମିକ ପରମ୍ପରା କାବ୍ୟରେ ଉପମାନରୂପେ ସ୍ଥାନ ପାଇଛି । ବଡ଼ଭୀ ପୁରରୁ ଜଳାକପାଟି ଦେଇ ଶ୍ରୀକୃଷ୍ଣଙ୍କୁ ଦେଖୁଥିବା ରତନବେଶୀ ମଥୁରା ନାରୀମାନେ କବି ଦୃଷ୍ଟିରେ କାର୍ତ୍ତିକ ମାସର ଆକାଶ ଦୀପ ସଦୃଶ (୨୭-୧୧) । କୌଣସି ନାରୀର କଣ୍ଠହାର ସୂତ୍ରରୁ ଗୋଟି ଗୋଟି ହୋଇ ଖସି ପଡୁଥିବା ମୁକ୍ତାକୁ ଦେଖି ଶିବଙ୍କ ମସ୍ତକ ଉପରେ ବିନ୍ଦୁ ବିନ୍ଦୁ ହୋଇ ପଡୁଥିବା ବସୁନ୍ଧରା ନୀର କଥା କବିଙ୍କର ମନେ ପଡ଼ିଛି । କବି କହିଛନ୍ତି, "କାହା କଣ୍ଠହାର ସୂତ୍ରରୁ ବାହାର ହୋଇ ଗୋଟି ଗୋଟି ଖସେ । କୃତ୍ତିବାସ ଶିର ବସୁନ୍ଧରା ନୀର ମଣ୍ଡିଲା ପରାୟେ ଦିଶେ" (୨୪-୧୦) । ନାରୀର ଦୋହଲି ଦୋହଲି ଚାଲିବାକୁ କବି ଜଗନ୍ନାଥଙ୍କ ପହଣ୍ଡି ବିଜେ ସହ ତୁଳନା କରିଛନ୍ତି (୩-୧୭) (୨୦-୨୯) । ଗୁଣ୍ଡିଚା ଯାତ ଓଡ଼ିଆମାନଙ୍କର ଅତି ପ୍ରିୟ ପର୍ବ । ଏହି ଯାତ୍ରା ଦେଖିବା ପାଇଁ ଲୋକମାନେ ଚାହିଁ ଚାହୁଁ ଜମା ହୋଇଯାନ୍ତି । ଶ୍ରୀକୃଷ୍ଣଙ୍କ ଦର୍ଶନ ପାଇଁ ଜମା ହେଉଥିବା ମଥୁରାବାସୀମାନଙ୍କୁ ଦେଖି କବି ଗୁଣ୍ଡିଚାଯାତ ବେଳର କଥାକୁ ତୁଳନାରେ ରଖିଛନ୍ତି (୨୫-୨୬) । ସୂର୍ଯ୍ୟଙ୍କୁ ରାହୁଗ୍ରାସ କଲେ ଓଡ଼ିଆ ଘରେ କେତେଗୁଡ଼ିଏ ନିୟମ ପାଳନ କରିବାକୁ ହୁଏ । ଲୋକମାନେ ଜଳରେ ସ୍ନାନ କରନ୍ତି । ବ୍ରାହ୍ମଣମାନଙ୍କ ଡାକରେ ପୁରୀ ଦାଣ୍ଡ ପୂରିଉଠେ । ଲୋକେ ବ୍ରାହ୍ମଣମାନଙ୍କୁ ଅଜସ୍ର ଧନ ଦାନ କରିଥାନ୍ତି । ସାଧାରଣ ବ୍ୟବହାର୍ଯ୍ୟ ପଦାର୍ଥଗୁଡ଼ିକ ମଧ୍ୟରୁ କବି କଳଶ (୧୧-୭୧, ୨୬-୨୦) କଙ୍କତିକା (୪-୪୪), କମ୍ବୁ (୨୫-୧୪), କୁମ୍ଭ (୧୦-୧୩), (୨୭-୬), (୭-୧୩), (୩୧-୮), କନ୍ଦୁକ (୭-୨୩), ଫରୁଆ (୭-୨୫), କରପତ୍ର (କରତ) (୧୦-୧୨), (୨୧-୨୫), ଦର୍ପଣ (୧୫-୩୮), ଘଣ୍ଟି (୧୭-୧୫), ଗୁପତି (୧୮-୧୯), ତୁମ୍ବୀ (୭-୨୬), ନିକିତି (୩-୫୩), କରବାଳ (୧୮-୧୬), ଶାଣ, ବାଣ (୬-୨୭), କାଚଘଟ (୮-୧୨), ପ୍ରତିଚକ୍ଷୁ (୮-୧୨), ନିଶାର (୧୧-୫ ୮), ପଲଙ୍କ (୧୧-୨୬), ଓ ପାଦୁକା (୨୫-୧୭) ପ୍ରଭୃତିକୁ ଉପମାନରୂପେ ବ୍ୟବହାର କରିଛନ୍ତି । ରସକଲ୍ଲୋଳର 'କମନୀୟ କୃଷ୍ଣ କଥା ପ୍ରସଙ୍ଗ' ସହ କବି ନିଜ ଜୀବନର କେତୋଟି ପ୍ରସିଦ୍ଧ ମୁହୂର୍ତ୍ତକୁ ପାଞ୍ଚୋଟି ଉପମାନ ମାଧ୍ୟମରେ ପ୍ରକାଶ କରିବାପାଇଁ ଚେଷ୍ଟା କରିଛନ୍ତି । କବିଙ୍କର ଆରାଧ୍ୟ ଦେବତା ଶ୍ରୀକୃଷ୍ଣ ସମସ୍ତ ଲୋକକୁ ଅମୃତ ଦାନକରି ରକ୍ଷା କରୁଥିଲେ ହେଁ,

କବିଙ୍କୁ କପଟ କରିଛନ୍ତି । ପୋଡ଼ା ପେଟ ପାଇଁ କବିଙ୍କୁ ଅନେକ ରୂପ ଧାରଣ କରିବାକୁ ହୋଇଛି । କବି କହିଛନ୍ତି,

କେତେବେଳେ ବୋହିତେ ଗଲା କରଟ ହେ ।
କେତେବେଳେରେ ମୂର୍ଖ ନାୟକ ଚାଟ ହୋ
କେତେବେଳେରେ ଅଦୃଶ୍ୟ-ନଟ,
କେତେବେଳେରେ ବଧିରଭାଟ,
କେତେବେଳେରେ ପଇଡ଼ ଖୋଳା ମୁଠି ମର୍କଟହେ ।

ଉପମାଗୁଡ଼ିକ ସମବେତ କଣ୍ଠରେ କବିଙ୍କର ବିଷାଦ ମଳିନ ମୁଖ, ଅଶ୍ରୁସିକ୍ତ ନୟନ ଓ ଅତୃପ୍ତ ଜୀବନକୁ ଧ୍ୱନିତ କରୁଥିଲେ ହେଁ, ପ୍ରତ୍ୟେକ ଉପମାର ସ୍ୱତନ୍ତ୍ର ମୂଲ୍ୟ ତଥା ଇତିହାସ ରହିଛି । ଏହି ଦୃଷ୍ଟାନ୍ତଗୁଡ଼ିକ କବି ଜୀବନର ଗୋଟିଏ ଅନୁଭବ କିମ୍ବା ପାଞ୍ଚୋଟି ଅସଂଲଗ୍ନ ମୁହୂର୍ତ୍ତ କିମ୍ବା କବି ଜୀବନର ଧାରାବାହିକ ଇତିହାସ, ସେକଥା ଠିକ୍ ଭାବରେ କହିହେଉନାହିଁ, ତେବେ ଏଥିରୁ କବି ଜୀବନର ଯେଉଁ ଚିତ୍ର ମିଳେ, ତାହା ଅତି ମୂଲ୍ୟବାନ୍ ।

'ବୋହିତେ ଗଲା କରଟ' ଏହି ଉପମାନମାଳାର ପ୍ରଥମ ଉପମାନ । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି କଲ୍ଲୋଳ-କୌମୁଦୀରେ ଏହାର ବ୍ୟାଖ୍ୟା କରି କୁହନ୍ତି ଯେ କବି ଜାହାଜରେ କାକ ଗଲାପରି ସେ ଯେପରି ଚଳିବା ବୁଲିବା ଥାନ ନ ଦେଖି ନିଶ୍ଚଳ ହୋଇଥାଏ ସେହିପରି କେତେବେଳେ କିଂକର୍ତ୍ତବ୍ୟବିମୂଢ଼ (କଣ କରିବି ବିଚାରଶୂନ୍ୟ) ହୋଇଥାନ୍ତି । କବି ଦୀନକୃଷ୍ଣ ଏହି ଉପମାନଟିକୁ ପରମ୍ପରାରୁ ଗ୍ରହଣ କରିଛନ୍ତି । ଓଡ଼ିଆ, ହିନ୍ଦୀ ଓ ଅପଭ୍ରଂଶ ସାହିତ୍ୟରେ ଏହାର ବ୍ୟବହାର ଦେଖିବାକୁ ମିଳିଥାଏ । ବଳରାମ ଦାସ ଶ୍ରୀମଦ୍‌ଭଗବଦ୍ ଗୀତାର ଷଷ୍ଠ ଅଧ୍ୟାୟରେ ଏହି ଉପମାନକୁ ନିମ୍ନ ଭାବରେ ପ୍ରୟୋଗ କରିଛନ୍ତି । କବିଙ୍କ ଭାଷାରେ-

ଏମନ୍ତ ଲୋକକୁ ଯୋଗ ପରାପତ ହୋଇ
ଯେତେବେଳେ ଚିତ୍ତଗୋଟି ଚଞ୍ଚଳ ନୁହଇ
ବୋଇତରେ କାକ ପ୍ରାୟ ଚିତ୍ତ ହେବ ସ୍ଥିର
ନିର୍ବାତ ଦୀପ ପ୍ରାୟ ମନର ବେଭାର
ଆତ୍ମାକୁ ଘେନି ଆନନ୍ଦ ବିଷୟେ ଉଦାସ
ତେତେବେଳେ ଯୋଗ ଆସି ହୁଏ ପରବେଶ

ଯେଉଁ ଠାବ ପାଇ ଆନ ଠାବକୁ ନ ଯାଇ ।
ବୁଦ୍ଧି ଯେବେ ତେହ୍ନେ କରି ସ୍ଥିର ହୋଇଥାଇ ।

ବଳରାମ ଦାସଙ୍କ ପ୍ରୟୋଗରୁ ବୋଇତରେ କାକର ସ୍ଥିରତା ହିଁ ସୂଚିତ । ଅପଭ୍ରଂଶ ସାହିତ୍ୟର ଅନ୍ୟତମ କବି ସରହପାଙ୍କ କବିତାରେ ଏହି ଦୃଷ୍ଟାନ୍ତର ପ୍ରୟୋଗ ମିଳେ । ପଂକ୍ତିଟି ହେଉଛି,

ବିସଅ ବିସୁଦ୍ଧେଂ ଣଉ ରମଇ
କେବଳ ସୁଣ୍ଣେ ଚରେଇ ।
ଉଡ୍‌ଡ୍ରୀ ବୋହିଅ-କାଉ ଜିମୁ
ପଲୁଟିଅ ତହ ବି ପଡ଼େଇ ।

ଅର୍ଥାତ୍ ବୋଇତରେ ଯାଇଥିବା କାକ ଶୂନ୍ୟରେ ଉଡ଼ି ଉଡ଼ି ପୁଣି ବୋଇତକୁ ଫେରିଆସେ । ସେହିପରି ମନ ବାରମ୍ବାର ବିଷୟମୁଖୀ ହୋଇଥାଏ । ସରହପାଙ୍କ ପ୍ରୟୋଗରେ କାକର ସ୍ଥିରତା ଅପେକ୍ଷା ବାରମ୍ବାର ବୋଇତକୁ ଫେରି ଆସୁଥିବା କଥା ବିଶେଷ ଭାବରେ ପ୍ରକାଶିତ । ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ କବି ସୁରଦାସ ଏହି ଦୃଷ୍ଟାନ୍ତଟିକୁ ବାରମ୍ବାର ବ୍ୟବହାର କରିଛନ୍ତି ।

(କ) ଥକିତ ସିନ୍ଧୁ ନୌକାକେ ଖଗ
ଜ୍ୟୋଁ ଫିରିଫିରି ଫେରି ଓ୍ୱହେ ଗୁନ ଗାଓ୍ୱତ
(ଖ) ଭଟକି ଫିରୟୋ ବୋହିତ କେ ଖଗ ଜ୍ୟୌଁ
ପୁନି ଫିରି ହରି ଚପ ଆୟେ ।
ଥକିତ ସିନ୍ଧୁ ନୌକାକେ ଖଗ ଜ୍ୟୌଁ
ଫିରି ଫିରି ଜୋଇ ଖଗ ଗାବତି ।(ଭ୍ରମର ଗୀତ, ୨୧୩)

ଏହି ଦୁଇଟିଯାକ ପ୍ରୟୋଗରେ ମଧ ପକ୍ଷୀ ଏଣେତେଣେ ବୁଲି ପୁଣି ସେହି ନୌକାକୁ ଫେରିଆସିବା ଚିତ୍ର ସନ୍ନିବେଶିତ । ଏହା ସରହପାଙ୍କର ସମଧର୍ମୀ । ସୁରଦାସଙ୍କ ଅନ୍ୟ ଗୋଟିଏ ପ୍ରୟୋଗରୁ ଏହି ଦୃଷ୍ଟାନ୍ତର ଆଉ ଗୋଟିଏ ରୂପ ଦେଖିବାକୁ ମିଳେ । ପଂକ୍ତିଟି ହେଉଛି,

ଜଲଧି ଥକିତ ଜନୁ କାଗ ପୋତ କୌ କୂଲ ନ କବହୁଁ ଆୟୌ ରୀ
ନା ଜାନୌଂ କିହି ଅଂଗ ମଗନ ମନ, ଚାହିଁ ରହୀ ନହଂ ପାୟୌ ରୀ ।

ଅର୍ଥାତ୍ ଯେପରି ଜାହାଜର ପକ୍ଷୀ ସମୁଦ୍ରରେ ପଶି କୂଳ ପାଏ ନାହିଁ, ସେହିପରି ଦର୍ଶକର ମନ ଶ୍ରୀକୃଷ୍ଣଙ୍କ ଅଙ୍ଗ ଶୋଭାରେ ନିମଜ୍ଜିତ ହୋଇ ନିଜେ ନିଜକୁ

ଭୁଲିଗଲା । ପୂର୍ବୋକ୍ତ ଉଦାହରଣ ଦୁଇଟି ଠାରୁ ଏହା ସ୍ୱତନ୍ତ୍ର । ଏଥିରେ ପକ୍ଷୀ ସମୁଦ୍ରର ପଶି କୂଳ କିନାରା ନପାଇ ନିଜକୁ ଭୁଲିଯିବା ଭାବନା ସ୍ପଷ୍ଟ ।

ଉପରେ ପ୍ରଦତ୍ତ ହୋଇଥିବା ଉଦାହରଣ ସବୁରୁ ଜଣାପଡୁଛି ଯେ 'ବୋହିତେ ଗଲା କରଟ' ଉପମାନଟି ଗୋଟିଏ ଅର୍ଥରେ ପ୍ରଯୁକ୍ତ ନୁହେଁ । ଏହା ମନର ସ୍ଥିରତା, ବାରମ୍ବାର ବିଷୟମୁଖୀ ହେଉଥିବା ତଥା କୂଳ କିନାରା ନ ପାଇ ନିଜକୁ ଭୁଲି ଯାଉଥିବା ଅବସ୍ଥାର ଉପମାନ । ଏଥିରୁ କବି ଦୀନକୃଷ୍ଣ କେଉଁ ଅର୍ଥକୁ ମନରେ ରଖି 'ବୋହିତେ ଗଲା କରଟ' ପଂକ୍ତିଟି ଲେଖିଥିଲେ କହିବା କଷ୍ଟ । ତେବେ ପୂର୍ବ ପଂକ୍ତିରୁ କବି ଏହି ଉପମାନକୁ ବାରମ୍ବାର ଭକ୍ତି ମାର୍ଗ ଛାଡ଼ି, ସାଂସାରିକ ଜଞ୍ଜାଳରେ ପଶି ପୁଣି ଭକ୍ତି ମାର୍ଗକୁ ଫେରିଆସିଥିବା ଅର୍ଥରେ ବ୍ୟବହାର କଲାପରି ଜଣାପଡୁଛି । ଏଥିରେ ମନର ସ୍ଥିରତା ନାହିଁ କି କିଂକର୍ତ୍ତବ୍ୟ-ବିମୂଢ଼ତା ନାହିଁ କିମ୍ବା ନିଜକୁ ଭୁଲିଯିବା ପ୍ରଶ୍ନ ମଧ ଉଠୁନାହିଁ । କବି କହିଛନ୍ତି ।

କାହିକି ମୋତେ ସଂସାର ଲଟ,
ମଧ୍ୟରେ ପ୍ରଭୁ କଲ ସଂଘଟ,
କିକେଁନକଲ ଚରଣପଦ୍ମ କୁସୁମଲିଟ ହେ ।
କିପାଁ ଛାଡ଼ନ୍ତି ଭଗତି ବାଟ,
ଆନନ୍ଦ ହୋଇ କରନ୍ତି ନାଟ,
ଏବେ ଅନେକ ରୂପ କଲାନି ଏ ପୋଡ଼ା ପେଟ ହେ ।

ଏଥିରୁ ଜଣାପଡୁଛି ଯେ କବି ଭଗତି ମାର୍ଗ ଛାଡ଼ି ବାରମ୍ବାର ସାଂସାରିକ ଜଞ୍ଜାଳକୁ ଫେରି ଆସୁଥିବା ମନ ପାଇଁ 'ବୋହିତେ ଗଲା' କରଟ ଉପମାନଟିକୁ ବ୍ୟବହାର କରିଛନ୍ତି ।

କବି ଜୀବନକୁ ପ୍ରଦୀପ୍ତ କରୁଥିବା ଦ୍ୱିତୀୟ ଉପମାନ ହେଉଛି 'ମୂର୍ଖ ନାୟକ ଚାଟ' । କଲ୍ଲୋଳ କୌମୁଦୀରେ ନାୟକ ଶବ୍ଦକୁ ପ୍ରଭୁ ଅର୍ଥରେ ଓ ଚାଟ ଶବ୍ଦକୁ ଭୃତ୍ୟ ଅର୍ଥରେ ଗ୍ରହଣ କରାଯାଇଛି । ନାୟକ ବା କୃପାକଲା ଲୋକ ମୂର୍ଖ ହେଲେ ସେବକକୁ ଘୋର ଅପମାନ ଓ ତିରସ୍କାର ସହିବାକୁ ହୁଏ । ସେଥିରେ ସେବକ ଯଦି ଗୁଣବନ୍ତ ହୁଏ ଓ ଗୁଣ ଦେଖାଇ ଅନାଦୃତ ହୁଏ ତାର ଦୁଃଖ ଆହୁରି ବଢ଼ିଯାଏ । କବି ଦୀନକୃଷ୍ଣ ଏହିପରି ଜଣେ ଗୁଣବନ୍ତ ସେବକ ଓ ସେ ଯାହାଙ୍କ ଆଶ୍ରୟରେ ରହି ଜୀବନ ଅତିବାହିତ କରୁଥିଲେ, ସେ ବୋଧହୁଏ

କବିଙ୍କ ମୂର୍ଖ ନାୟକ । ନାୟକ ଓ ଚାଟ ଶବ୍ଦର ଅନ୍ୟ କେତୋଟି ଅର୍ଥ ଓଡ଼ିଆରେ ପ୍ରଚଳିତ । ଚାଟ ଶବ୍ଦର ପ୍ରଚଳିତ ଅର୍ଥ ହେଉଛି, ଛାତ୍ର ବା ଶିଷ୍ୟ । ଏଇଥିରୁ ହୋଇଛି, ଚାଟଶାଳୀ । ନାୟକ ଶବ୍ଦ ସେହିପରି ନାହାକ ବା ଅବଧାନ ଅର୍ଥରେ ବ୍ୟବହୃତ ହୁଏ । ନାୟକ ବା ଶିକ୍ଷକ ମୂର୍ଖ ହେଲେ ଚାଟର ଶିକ୍ଷା ଅପୂର୍ଣ୍ଣ ରହିଯାଏ । ଚାଟଶବ୍ଦର ଅନ୍ୟ ଗୋଟିଏ ଅର୍ଥ ହେଉଛି ଅନିୟମିତ ସେନା । ଦରକାର ପଡ଼ିଲେ ଯୁଦ୍ଧ କରିବାକୁ ଯେଉଁମାନେ ଆସୁଥିଲେ ଅର୍ଥାତ୍ ଯାହାଙ୍କୁ 'Irregulars' କୁହାଯାଏ, ସେମାନଙ୍କୁ ଚାଟ କୁହାଯାଉଥିଲା । ଅଭିଲେଖରୁ ମିଳୁଥିବା ସୈନ୍ୟବିଭାଗର ପଦବୀରେ ନାୟକ ଅନ୍ୟତମ । ଦରକାର ପଡ଼ିଲେ ଯୁଦ୍ଧ କରିବାକୁ ଆସୁଥିବା ସେନାମାନେ ନିଶ୍ଚିତ ଭାବେ ନିୟମିତ ସେନା ଅର୍ଥାତ୍ ଭଟ ମାନଙ୍କଠାରୁ ସାମରିକ ଶିକ୍ଷାରେ ନିପୁଣ ହୋଇ ନ ଥିବେ । ଏପରି ସେମାନେ ସୁଶିକ୍ଷିତ ନାୟକର ନିର୍ଦ୍ଦେଶର କାର୍ଯ୍ୟ କଲେ ହୁଏତ କିଛି କରିପାରିବେ କିନ୍ତୁ ଏମାନଙ୍କର ନାୟକ ମୂର୍ଖ ହେଲେ ଯୁଦ୍ଧକ୍ଷେତ୍ରରେ ଅପଯଶ ପାଇବା ନିଶ୍ଚିତ । ଚାଟ ଶବ୍ଦର 'ଚେଟ' ପାଠ ଗ୍ରହଣ କଲେ ନାୟକ ଶବ୍ଦ ନାଟକର ପ୍ରଧାନ ପାତ୍ର ଅର୍ଥରେ ବ୍ୟବହୃତ ହୋଇ ପାରିବ । ନାଟକରେ ଚେଟ, ବିଟ, ବିଦୂଷକ ଓ ଭାଟ ଶ୍ରେଣୀୟ ପାତ୍ର ନାୟକକୁ ନାୟିକା ସହ ମିଳନ କରାଇବାରେ ସାହାଯ୍ୟ କରନ୍ତି । ନାୟକ ମୂର୍ଖ ହେଲେ ଚେଟର ସଙ୍କେତ ବୁଝି ପାରିବାକୁ ଅକ୍ଷମ ହୁଏ, ଫଳରେ ଚେଟର ସମସ୍ତ ଚେଷ୍ଟା ବିଫଳ ହୋଇଥାଏ । ଏସବୁ ଅର୍ଥ ମଧ୍ୟରୁ ମୂର୍ଖ ନାୟକ ଚାଟର ପ୍ରଭୁ ଓ ଭୃତ୍ୟ ଅର୍ଥ ବିଶେଷ ସମୀଚୀନ ବୋଧହୁଏ । କାରଣ କାବ୍ୟ ମଧ୍ୟରେ ଏପରି ଅନେକ ପଦ ମିଳେ ଯେଉଁଥିରୁକି ମୂର୍ଖ ନାୟକ ଚାଟର ପ୍ରଭୁ ଅର୍ଥ ସମର୍ଥିତ ହୋଇଥାଏ । କବି କହିଛନ୍ତି,

କୁମତି ଗୁଆଁର ଆଗେ ଗୁଣବନ୍ତ ଅନୁରାଗେ
ଗୁଣ ଦେଖାଇ ଯେମନ୍ତେ ହୋଏ ଦହି ସେ, (ର.କ.୩୧-୧୭)

ଅନ୍ୟସ୍ଥଳରେ ଅଛି,

କୃଷ୍ଣ ଆଶ୍ରେ କରି ସୁବିଦ୍ୟା ଆଚରି ପାଷଣ୍ଡକୁ ଯାହା ସ୍ତୁତି
କୃଷ୍ଣଦାସ କହେ କିଛି ଭଲ ନୋହେ କେବଳ ଛାତିକି କାତି ।(ର.କ. ୨୪-୩୦)

ପୁଣି, କବି ଯା କରେ ମୂର୍ଖଙ୍କୁ ସ୍ତୁତି, ଏଥିରୁ ବଡ଼ ନାହିଁ ବିପତ୍ତି
ଏଥିକି ପ୍ରତି ଛାତିରେକାତି ମାରିବା ଭଲ ହେ ।(ର.କ. ୧୬-୨୧)

ମୂର୍ଖଙ୍କୁ  ସ୍ତୁତି କରିବାଠାରୁ ବିପତ୍ତି ଆଉ ନାହିଁ । କବି ଏକଥା ଜୀବନରେ ବାରମ୍ବାର ଅନୁଭବ କରିଥିଲେ ହେଁ, ଅନେକ ସମୟରେ ପେଟପାଇଁ କବିଙ୍କୁ ବହୁ ଅପ୍ରିୟ କାମ ଅନିଚ୍ଛାସତ୍ତ୍ୱେ କରିବାକୁ ହୋଇଥିଲା । ସେଥିପାଇଁ କବି କହିଛନ୍ତି,

ଏତେବଡ଼ ପ୍ରଭୁ ଥାଇଁ ଥାଇଁ ଦୀନକୃଷ୍ଣ ଏମନ୍ତ ମୂରୁଖ
ଅତ୍ୟନ୍ତ ସଂସାର ବିଷୟରେ ପଡ଼ି ପାଉଥାଇ ମହାଦୁଃଖ ।
ଶବର ଯେମନ୍ତ ଗଜମୋତି ଛାଡ଼ି ପକ୍ୱ ବଦରୀକି ଆଶେ
ମକ୍ଷିକା ଯଥା ଦୁର୍ବାସନାବଶରୁ ଦୁର୍ବାସନା ଦ୍ରବ୍ୟେ ବସେ ।
ପେଟଛାର ପାଇଁ ଅନାୟତ୍ତ ହୋଇ  ଦୁସହ କଥା ସହଇ
ଅସ୍ତୁତି ପାତ୍ରକୁ ନାନା ସ୍ତୁତି କରି ଲଘୁ ହୋଇ ପଡ଼ିଥାଇ ।(ଜ.ଛା.୧୦, ୬୯-୭୧)

ରସକଲ୍ଲୋଳରେ କବିଙ୍କ ଜୀବନକୁ ରୂପବନ୍ତ କରି ପ୍ରକାଶ କରିବା ପାଇଁ 'ଅଦୃଶ୍ୟ ନଟ' ଅନ୍ୟ ଗୋଟିଏ ଉପମାନ । 'କେତେବେଳେରେ ଅଦୃଶ୍ୟ ନଟ' ପଂକ୍ତିରେ କବି ସମୟ ସମୟରେ ଅଦୃଶ୍ୟ ନଟପରି ଜୀବନ  ନିର୍ବାହ କରୁଥିବା ସୂଚିତ । ନଟ ଶବ୍ଦର ବିଭିନ୍ନ ଅର୍ଥ ଅଛି । ନାଟକରୂପକାଦିରେ ଅନୁକାର୍ଯ୍ୟ ବା ଐତିହାସିକ ଚରିତ୍ରର ରୂପ ଧାରଣ କରି ସେମାନଙ୍କର ଅବସ୍ଥାନ ଅନୁକରଣ କରୁଥିବା ବ୍ୟକ୍ତିକୁ ନଟ କୁହାଯାଏ । ନଟର କାର୍ଯ୍ୟ ହେଲା ଅଭିନୟ । ରଙ୍ଗଶାଳାର ବ୍ୟବସ୍ଥାପକ ସୂତ୍ରଧର ତଥା ବସ୍ତୁ ସ୍ଥାପନା କରୁଥିବା ସ୍ଥାପକ ମଧ ନଟ ନାମରେ ପରିଚିତ । ସୂତ୍ରଧର ନାଟ୍ୟର ସମସ୍ତ ବିଧାନ ଓ ରୀତିରେ ପାରଂଗମ ହୋଇଥିବା ହେତୁ ସେ କେବଳ ନଟ ନୁହେଁ, ପ୍ରଧାନ ନଟ । ଏହା ବ୍ୟତୀତ ନଟ ହେଉଛି, ଏକ ପ୍ରକାର ଜାତି । ଏମାନେ ଦୀନକୃଷ୍ଣଙ୍କ ଜାୟାଜୀବ ପରି, ବାଉଁଶ ଉପରେ ବୁଲି, ଦଉଡ଼ି ଉପରେ ଚାଲି ଓ ବିଭିନ୍ନ ପ୍ରକାର  ଆଙ୍ଗିକ ବ୍ୟାୟାମ ପ୍ରଦର୍ଶନ କରି ସେମାନେ ଜୀବିକା ନିର୍ବାହ କରନ୍ତି । ଅଭିନେତା ଭାବରେ ନଟକୁ ବହୁ ବିଭିନ୍ନ ରୂପ ଧାରଣ କରି ଅଭିନୟ କରିବାକୁ ହୋଇଥାଏ । ସେ କେତେବେଳେ କୃଷ୍ଣ ରୂପରେ ରଙ୍ଗମଞ୍ଚକୁ ଆସେ ତ କେତେବେଳେ ରାମ ରୂପରେ । ଅଥଚ ସେ କୃଷ୍ଣ ନୁହେଁ କି ରାମ ନୁହେଁ । ତୁଳସୀ ଦାସ ନଟର କାର୍ଯ୍ୟ ବର୍ଣ୍ଣନା କରି ଲେଖିଛନ୍ତି,

ଜଥା ଅନେକ ବେଷ ଧରି ନୃତ୍ୟ କରଇ ନଟ କୋଇ ।
ସୋଇ ସୋଇ ଭାବ ଦେଖାବଇ ଆପୁନ ହୋଇ ନ କୋଇ ।

ରାମ ଚରିତ ମାନି, ୭-୭୨ (ଖ)

ଦୀନକୃଷ୍ଣ  ନଟ ଶବ୍ଦକୁ ନର୍ତ୍ତକ ଅର୍ଥରେ ବ୍ୟବହାର କରିଛନ୍ତି, "କଳେ ନଟବର ପରାଯେ ତାଣ୍ଡବ ଶ୍ରୀରଙ୍ଗ ଶ୍ରୀଅଙ୍ଗ ଭଙ୍ଗିଲେ", ନାଟ ମନ୍ଦିରରେ ନଟ ଆନନ୍ଦ ମନରେ ପ୍ରବେ କରେ । "କୃଷ୍ଣ ଆନନ୍ଦରେ ପ୍ରବେଶ ହୋଇଲେ ନଟ ଯେହ୍ନେ ନାଟ ମନ୍ଦିରେ ।" ନୃତ୍ୟ ଓ ଗୀତ ଦ୍ୱାରା ନୃପତି ଓ ଅନ୍ୟାନ୍ୟ ଦର୍ଶକ (ସର୍ବଜନ)ମାନଙ୍କୁ ମୋହିବା ଓ ସୁଖ ଦେବା ନଟର କାର୍ଯ୍ୟ । 'କେତେବେଳରେ ଅଦୃଶ୍ୟ ନଟ ପଂକ୍ତି'କୁ ବ୍ୟାଖ୍ୟା କରି ରସକଲ୍ଲୋଳର ଟୀକାକାର କହିଛନ୍ତି, ନଟ ଯେପରି ରଙ୍ଗମଞ୍ଚରୁ ଅଦୃଶ୍ୟ ହୁଏ, ସେହିପରି ସମୟ ସମୟରେ ନିରୁଦ୍ଦେଶ୍ୟ ହେବାକୁ ପଡ଼େ । ଏହି ଅର୍ଥରେ କବିଙ୍କର ମୂଳଭାବ  ବଦଳି ଯାଇଛି । ଦୀନକୃଷ୍ଣ ଅଦୃଶ୍ୟ ନଟରୁ ନଟରେ ରୂପାନ୍ତରିତ ହୋଇଛନ୍ତି ଓ ନଟର ରଙ୍ଗମଞ୍ଚରୁ ଅଦୃଶ୍ୟ ହୋଇଯିବା ଅବସ୍ଥା ସହ ତାଙ୍କର ତୁଳନା ହୋଇଛି । କିନ୍ତୁ ପଂକ୍ତିଟିର ପ୍ରକୃତ ଅର୍ଥ ତାହା ନୁହେଁ । ନଟର ଅଦୃଶ୍ୟ ହେବା ଓ ଅଦୃଶ୍ୟ ନଟ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ଅଛି । ରଙ୍ଗମଞ୍ଚରେ ଅଭିନୟ  ସାରି, ପରଦାର ଅନ୍ତରାଳକୁ ଚାଲି ଯାଇଥିବା ନଟକୁ ଅଦୃଶ୍ୟ ନଟ କହିଲା ପରି, ରଙ୍ଗମଞ୍ଚକୁ ନ ଆସିଥିବା ବା ନେପଥ୍ୟରୁ ନାଟକରେ ଅଂଶ ଗ୍ରହଣ କରୁଥିବା ଚରିତ୍ରକୁ ଅଦୃଶ୍ୟ ନଟ କୁହାଯାଇପାରେ । ତେଣୁ ଅଦୃଶ୍ୟ ନଟର ଅର୍ଥ ହେଉଛି, ରଙ୍ଗମଞ୍ଚରେ ଦେଖାଯାଉ ନଥିବା ଅର୍ଥାତ୍ ପରଦାର ଅନ୍ତରାଳରେ ଥିବା ନଟ ।

ରସକଲ୍ଲୋଳରେ 'ଅଦୃଶ୍ୟ ନଟ' ପରି ଆଉ ଗୋଟିଏ ଉପମାନ ହେଉଛି, 'ଅନ୍ତପଟ ଅନ୍ତ ନୃତ୍ୟକାରୀ' । ଦୀନକୃଷ୍ଣ ଏହି ଉପମାନକୁ ରସକଲ୍ଲୋଳରେ ଥରେ ଓ ଦୃଷ୍ଟାନ୍ତ  ଚଉତିଶାରେ ଥରେ ଏହିପରି ଦୁଇଥର ବ୍ୟବହାର କରିଛନ୍ତି । କଲ୍ଲୋଳ କୌମୁଦୀ (ପୃ. ୨୪) ରେ ଏହାର ଅର୍ଥ ହେଉଛି, ଯବନିକା (ପରଦା) ମଧ୍ୟରେ ନୃତ୍ୟ କରାଏ ଯେ, ଐରି ଗଉଡ଼ । ଐରି ଗଉଡ଼ ଯେପରି ପରଦା ଭିତରେ ରହି ଗୋପଲୀଳା କୁଣ୍ଢାଇ ନଚାଇ ମନ ହରଣ କରେ ସେହିପରି ତୁମ୍ଭର ମୁଖ ବସ୍ତ୍ର ମଧ୍ୟରେ ରହି ସୁଖ ପ୍ରଦାନ  କରୁଅଛି । 'ନୃତ୍ୟକାରୀ'ର ଅର୍ଥ 'ନୃତ୍ୟ କରେ ଯେ' ନ କରି 'ନୃତ୍ୟ କରାଏ ଯେ' କରିବା ଫଳରେ ଅନ୍ତପଟ ଅନ୍ତ ନୃତ୍ୟକାରୀର ଅର୍ଥ ଅନର୍ଥରେ ପରିଣତ ହୋଇଛି ଓ ଐରି ଗଉଡ଼, ଗୋପଲୀଳା କୁଣ୍ଢାଇ ଇତ୍ୟାଦି ଅବାଞ୍ଛିତ ଭାବେ ପହଞ୍ଚି ଦୃଷ୍ଟାନ୍ତଟିକୁ ଅଯଥା କ୍ଲିଷ୍ଟ ଓ ଭାରାକ୍ରାନ୍ତ କରିଛନ୍ତି । ଓଡ଼ିଆରେ ରକ୍ଷାକାରୀ, ଭିକ୍ଷାକାରୀ ପ୍ରଭୃତି ଶବ୍ଦ ପରି 'ନୃତ୍ୟକାରୀ'

ଶବ୍ଦ । ନୃତ୍ୟ-କାରକ ଶବ୍ଦର ଏହା ଅନ୍ୟରୂପ, ଏହାର ଅର୍ଥ ହେଉଛି, ନର୍ତ୍ତକ । ନୃତ୍ୟକାରୀ ଶବ୍ଦକୁ ଏହାର ପ୍ରକୃତ ଅର୍ଥ ନର୍ତ୍ତକ କରିଦେବା ପରେ 'ଅନ୍ତପଟ-ଅନ୍ତ-ନୃତ୍ୟକାରୀ' ପରଦାର ଅନ୍ତରାଳରେ ଥିବା ନର୍ତ୍ତକ ବା ନଟକୁ ବୁଝାଏ । ନଟ ମଧ୍ୟ ଅଦୃଶ୍ୟ ହେଲାବେଳେ ରଙ୍ଗମଞ୍ଚ ଛାଡ଼ି ନିରୁଦ୍ଦେଶ୍ୟ ହୋଇଯାଏ ନାହିଁ, ପରଦା ଅନ୍ତରାଳରେ ଥାଏ, ତେଣୁ 'ଅଦୃଶ୍ୟ ନଟ'ର ଅନ୍ୟ ପ୍ରୟୋଗ ହେଉଛି, 'ଅନ୍ତପଟ ଅନ୍ତ ନୃତ୍ୟକାରୀ' । କୌଣସି ହେମଗୋରୀ ସୁନ୍ଦରୀ ଗୋପୀ ଶ୍ରୀକୃଷ୍ଣଙ୍କୁ ଦେଖି ଲାଜରେ ନିଜ ମୁଖକୁ ବସ୍ତ୍ର ଦ୍ୱାରା ଆବୃତ କରିଦେଇଛି । ଗୋପୀର ଏହି କାର୍ଯ୍ୟ ଦ୍ୱାରା ତାର ମୁଖ ହୁଏତ ଲୁଚି ଯାଇଛି କିନ୍ତୁ ତାର ଆଖିର ଚଳନ ଓ ହସ ହସ ମୁଖର ସୌନ୍ଦର୍ଯ୍ୟ ଶ୍ରୀକୃଷ୍ଣଙ୍କୁ ଅଛପା ରହିନାହିଁ । ଶ୍ରୀକୃଷ୍ଣ କହିଛନ୍ତି,

କଉଁ କାମିନୀ ଯାମିନୀକର - ମୁଖୀ ସଉଦାମିନୀ ହେମଗୋରୀ;
କିଅଁତ ଲାଜରେ ବାସ ଦେଇ ଶିରେ ସଧୀରେ ଗମନ୍ତେ ସୁନ୍ଦରୀ ।
କୋମଳେ, କହନ୍ତି ତାଙ୍କୁ ପଦ୍ମମୁଖି,
କେତେବେଳେ ଅନ୍ତପଟ ଅନ୍ତ ନୃତ୍ୟକାରୀ କି ନଦିଅଇ ସୁଖ । (୮-୧୧)
କାଚଘଟ-ଜଳ ଦିଶେ ଜ୍ୱଳ ଜ୍ୱଳ ପ୍ରତିଚକ୍ଷୁରେ ବର୍ଣ୍ଣ ପ୍ରାୟେ,
ଜଳେ ଝୀନବାସ ଅନ୍ତର ପ୍ରକାଶ ହୋଇଛି ଚମ୍ପାଫୁଲ ପ୍ରାୟେ ।
କମଳା, କାନନ ଅନ୍ତର କୁସୁମ,
କେବଳ ନ ଦେଖିଲେ ହେଁ ସୁବାସରୁ ବନ୍ଧି ହୁଅଇ ମନୋରମ । (୮-୧୨)

କାନନ -କୁସୁମର ସୁବାସ ପରି, ଚମ୍ପାଫୁଲର ସୌନ୍ଦର୍ଯ୍ୟ ପରି, କାଚଘଟ ସ୍ଥିତ ଜଳ ପରି ଓ ଚଷମାରେ ଦେଖୁଥିବା ବର୍ଣ୍ଣ ବା ଅକ୍ଷର ପରି, ଗୋପୀର ମନ୍ଦହାସ, ନୟନର କଟାକ୍ଷ, ବସ୍ତ୍ର ଆବରଣ ତଳୁ ସ୍ପଷ୍ଟଭାବେ ପ୍ରତିଭାତ ହେଉଥିଲା । ସେହିପରି ନୃତ୍ୟକାରୀ ଅନ୍ତପଟର ଅନ୍ତରାଳରୁ ଦର୍ଶକମାନଙ୍କୁ ସୁଖଦାନ କରିଥାଏ । ଦୃଷ୍ଟାନ୍ତ ଚଉତିଶାରେ ଥିବା ଉଦାହରଣରେ ମଧ୍ୟ ଅନ୍ତପଟ- ଅନ୍ତ- ନୃତ୍ୟକାରୀ ଦର୍ଶକବର୍ଗଙ୍କୁ ଉତ୍କଣ୍ଠିତ ଓ ଉଦଗ୍ରୀବ କରି ରଖୁଥିବା ଓ ଆନନ୍ଦ ବିଚରଣ କରୁଥିବା କୁହାଯାଇଛି । କବିଙ୍କ ଭାଷାରେ,

ଅନ୍ତପଟ-ଅନ୍ତ-ନୃତ୍ୟକାରୀ ପ୍ରାୟେ ହୋଇ
ନୟନ ମନକୁ ଉଛାହା କରିଛି ଦର୍ଶନ ସୁଖ ନ ଦେଇ ।

ଲାଜବତୀ ସୁନ୍ଦରୀର ଅନ୍ୟ ଗୋଟିଏ ବର୍ଣ୍ଣନା ରସକଲ୍ଲୋଳରୁ ପାଠ ନ କଲେ ଦୀନକୃଷ୍ଣଙ୍କ କଳ୍ପନା ପରିପୂର୍ଣ୍ଣ ରୂପରେ ପ୍ରକାଶ ପାଏ ନାହିଁ ।

କରେ ବାସମୁଖ ମୁଖେ ଦେଇ ମୁଖ ତଳକୁ କଲା ଲାଜବତୀ
କଥା କହି କରି କଉଁ ସୁଖଶିରୀ ଦିଅନ୍ତା କହ ହେ ସୁମତି ।
କିଞ୍ଚିତ, କରି କଲା ଯା କୋଣ ଦୃଷ୍ଟି ।
କୃଷ୍ଣ ହୃଦୟ-ଧଇର୍ଯ୍ୟ-କୁଞ୍ଜକୁ ସେ ହେଲା ନୀହାର ବାରବୃଷ୍ଟି ।(୮-୮)

କବିଙ୍କ ପ୍ରୟୋଗରୁ କବି ଜୀବନକୁ ବିଚାର କଲେ ଜଣାଯାଏ ଯେ, କବି ଅଦୃଶ୍ୟ ନଟ ପରଦାର ଅନ୍ତରାଳରେ ରହିଲା ପରି ଉତ୍କଳର କୌଣସି ଏକ ଅଜ୍ଞାତ ପଲ୍ଲୀରେ ଜୀବନ ଯାପନ କରୁଥିଲେ । ଆନନ୍ଦ ମନରେ ରଙ୍ଗମଞ୍ଚରେ ପ୍ରବେଶ କରି ଅଭିନୟ ଦ୍ୱାରା ଦର୍ଶକମାନଙ୍କୁ ମୁଗ୍ଧ କରିବାର ସୌଭାଗ୍ୟ ତାଙ୍କର ନ ଥିଲା । ତେବେବି ତାଙ୍କ କାବ୍ୟାବଳୀର ମାଧୁର୍ଯ୍ୟ ଦ୍ୱାରା ସେ ରସଜ୍ଞ, ସହୃଦୟ ସାମାଜିକମାନଙ୍କୁ ଅଦୃଶ୍ୟ ନଟପରି ଆନନ୍ଦ ବିଭୋର କରି ରଖିଥିଲେ । କେବଳ ଜୀବିତାବସ୍ଥାରେ ନୁହେଁ, ତିରୋଧାନର ବହୁପରେ କବି ଦୀନକୃଷ୍ଣଙ୍କ ଗୁଣମୁଗ୍ଧ ସୁଚିତ୍ର ରାମାୟଣର କବି ହରିହର ଲେଖିଛନ୍ତି,

କବିଚନ୍ଦ୍ର ଗୁଣମଣି କୃଷ୍ଣ ଦାସ ଗୀତ,
ଥାଉଁ ଥାଉଁ ଏ ଗୀତରେ ରସିବ କି ଚିତ୍ତ ହେ ।

ଅଦୃଶ୍ୟ ନଟକୁ ଅଦୃଶ୍ୟ ବା ଅନ୍ଧ ବ୍ୟକ୍ତି ସମ୍ମୁଖରେ ନୃତ୍ୟ କରୁଥିବା ନଟ ଅର୍ଥରେ ଗ୍ରହଣ କରାଯାଇପାରେ । ସଂସ୍କୃତରେ ଗୋଟିଏ କଥା ଅଛି ।

"ଅନ୍ଧସ୍ୟ ଦୀପ ବଧିରସ୍ୟ ଗୀତଂ ।" ଦୀନକୃଷ୍ଣ ରସକଲ୍ଲୋଳରେ ଏହାକୁ 'କାଲ ନୃପେ ଭାଟ ଅନ୍ଧ ଅଗ୍ରେ ନାଟ' ରୂପେ ବ୍ୟବହାର କରିଛନ୍ତି । ପ୍ରସଙ୍ଗଟି ହେଉଛି, କୌଣସି ଗୋପୀ ଶ୍ରୀକୃଷ୍ଣଙ୍କୁ କଥା ନ କହି କଟାକ୍ଷେ ନ ଚାହିଁ ଚାଲି ଯାଇଛି । ଶ୍ରୀକୃଷ୍ଣଙ୍କ ନିକଟରେ ଗୋପୀ ହେଉଛି, କରୁଣା ଜଳଧି ପରି । ଜଳଧି ପାଖରୁ ତୃଷାର୍ତ୍ତ ବ୍ୟକ୍ତି ନିରାଶରେ ଫେରିବା ପରି, କାଲ ନୃପ ସମ୍ମୁଖରେ ଭାଟର ସ୍ତୁତି ପାଠ, ଅନ୍ଧ ଆଗରେ ନଟର ନାଟ, ବ୍ୟର୍ଥତାରେ ପରିଣତ ହୁଏ । କବି କହିଛନ୍ତି,

କିଶୋରି, କାହାକୁ କରିବି ଗୁହାରୀ,
କାଲ ନୃପେ ଭାଟ ଅନ୍ଧ ଅଗ୍ରେ ନାଟ ପ୍ରାୟେ ମରୁଛି ଝୁରିଝୁରି ।

ଶ୍ରୀକୃଷ୍ଣଙ୍କ ସଦୃଶ ଦୀନକୃଷ୍ଣଙ୍କ ଜୀବନର ବହୁ ଉଦ୍ୟମ କରୁଣା ଜଳଧିଙ୍କ ପାଖରେ ବ୍ୟର୍ଥ ହୋଇଛି । ଶ୍ରୀକୃଷ୍ଣଙ୍କଠାରେ ଆତ୍ମସମର୍ପଣ କରିଥିବା କବିଙ୍କୁ ଶ୍ରୀକୃଷ୍ଣଙ୍କ ଲୀଳାସ୍ଥାନ ନୀଳାଚଳରେ ରହିବାକୁ ଠାବ ମିଳିନାହିଁ । କରୁଣା ଜଳଧିଙ୍କର

ଅକରୁଣା ଭକ୍ତକବିଙ୍କୁ ବ୍ୟଥିତ କରିଛି । କବି 'କାଳ ବଳୟେ କାହାରି ଆୟତ୍ତ ନୁହଇ' କହି ଭାଗ୍ୟକୁ ଆଦରି ରହିଛନ୍ତି । କବିଙ୍କ ଅଦୃଶ୍ୟ ନଟ ଉପମାନରେ ଅଦୃଷ୍ଟର ଏହି ମର୍ମନ୍ତୁଦ ପରିହାସ ରୂପାୟିତ ହୋଇଥିବା ଅସମ୍ଭବ ନୁହେଁ । କବି କହିଛନ୍ତି,

କରିଥିଲା ଆଶ ସେ କ୍ଷେତ୍ରେ ନିବାସ କରିବାକୁ ଦୀନକୃଷ୍ଣ ।
କି ଅଭାଗ୍ୟଁ ତହିଁ ନ ପାରିଲା ରହି ପ୍ରଭୁ ନୋହିଲେ ସତୃଷ୍ଣ ।
କର୍ମେ ଥିଲା ଯାହା ଭୋଗ କଲା ତାହା କେ ତାହା କରିବ ଆନ ।
କରମ କରତା କଇବଲ୍ୟ ଦାତା ଯେବେ ନୋହିଲେ ପ୍ରସନ୍ନ ।
କଣ୍ଠରେ ଭୂଷଣ କରି ତାଙ୍କ ଗୁଣ ଗାଉଥାଇ ନାମମାନ ।
କୃପଣ ଗୁଆଁର କୁବୁଦ୍ଧିକି ଦାନ ମାଗି ପାଉଥାଇ ମାନ ।
କରେ ଚିନ୍ତାମଣି ପାଇ କରି ଆଣି ନ ରହିଲା ମୋର କିଛି ।
କରଇ ବିଚାର କେତେବେଳେ ଛାର ଜୀବନ କାହିଁକି ଅଛି ।
କୃଷ୍ଣ ଆଶ୍ରେକରି ସୁବିଦ୍ୟା ଆଚରି ପାଷଣ୍ଡକୁ ଯାହା ସ୍ତୁତି ।
କୃଷ୍ଣ ଦାସ କହେ କିଛି ଭଲ ନୋହେ କେବଳ ଛାତିକୁ କାତି ।

(୨୪,୨୬-୩୦)

ଅଦୃଶ୍ୟ ନଟର ଆଉ ଗୋଟିଏ ଭୂମିକା ଅନୁମାନ କରାଯାଇପାରେ । ସେ ହେଉଛି, କାବ୍ୟର ବିଭିନ୍ନ ଚରିତ୍ର ଭିତରେ କବିର ଆତ୍ମା ଲୁଚି ରହିଥାଏ । ରସକଲ୍ଲୋଳରେ କବି ଦୀନକୃଷ୍ଣ କେତେବେଳେ ଗୋପୀ ରୂପରେ, କେତେବେଳେ ରାଧା ଭାବରେ, କେତେବେଳେ ଭକ୍ତ ବେଶରେ ଓ କେତେବେଳେ କୁବ୍‌ଜା-ମନ ଘେନି ଆତ୍ମପ୍ରକାଶ କରିଛନ୍ତି । ସବୁ ଚରିତ୍ରରେ କବିର ଅନୁଭବ ମିଶିକରି ରହିଛି । କାବ୍ୟ ମଧ୍ୟ କବି ହୃଦୟକୁ ଆଶ୍ରୟ କରି ସୃଷ୍ଟି ହୁଏ । "କବି ହୃଦ ଅବଲମ୍ବକୁ ଜାତ ।" ଗୋପୀମାନଙ୍କର ରୂପ ବର୍ଣ୍ଣନା କଲାବେଳେ କବି ଏକଥା ସ୍ପଷ୍ଟ କଣ୍ଠରେ ସ୍ୱୀକାର କରିଛନ୍ତି ।

କରି ମନ୍ଦହାସ ନୟନ ପ୍ରକାଶ କରି କରୁଥିବ ଅନ୍ତର ।
କାମୁକ ଅଙ୍ଗରେ ସେହିଟି ଅନଙ୍ଗ ଭୂତ ଲଗାଇବ ମନ୍ତର ।
କେତେ ବା କହିବି ଅନୁଭବ କଥା ।
କହୁଥିଲେ ପଦେ ପଦେ ସୁଖ ଉଦେ କେବଳ ଗୁଆଁରକୁ ବ୍ୟଥା ।

(ର.କ.୮,୩)

କାବ୍ୟର କବି ଅଦୃଶ୍ୟ ନଟ ହୋଇପାରନ୍ତି, କିନ୍ତୁ ପୋଡ଼ା ପେଟପାଇଁ ଅଦୃଶ୍ୟ ନଟ ରୂପ ଧାରଣ କରିଥିବା, ଦୀନକୃଷ୍ଣ କାବ୍ୟରେ ନାହାନ୍ତି । ଉତ୍କଳର କୌଣସି ଏକ ଅଖ୍ୟାତନାମା ପଲ୍ଲୀରେ ତାଙ୍କର ବାସ । ଅଦୃଶ୍ୟ ନଟ ନିଜେ ଭଗବାନ ବି ହୋଇପାରନ୍ତି । ଏ ଦୃଶ୍ୟ ସଂସାର ଭଗବାନଙ୍କ ଦ୍ୱାରା ସୃଷ୍ଟି ହୋଇଥିଲେ ବି ଭଗବାନ ନିଜେ ଅଦୃଶ୍ୟ, କିନ୍ତୁ କବି ଦୀନକୃଷ୍ଣ ନିଜକୁ ଅଦୃଶ୍ୟ ନଟ କହିଥିବାରୁ ଏ ଅର୍ଥ ସମୀଚୀନ ବୋଧହୁଏ ନାହିଁ । ପୂର୍ବୋକ୍ତ ଆଲୋଚନାରୁ ଜଣାପଡୁଛି ଯେ କବି ଦୀନକୃଷ୍ଣ ଅଦୃଶ୍ୟ ନଟ ଉପମାନ ଦ୍ୱାରା ନିଜ ଜୀବନର ଦୁଇଟି ଅବସ୍ଥାକୁ ସୂଚିତ କରିଛନ୍ତି । ପ୍ରସିଦ୍ଧି ପାଇବା ପୂର୍ବରୁ ଅଜ୍ଞାତ ଭାବେ ରହିବା ଓ ପ୍ରସିଦ୍ଧି ପାଇବା ପରେ ଅଦୃଶ୍ୟ ହୋଇଯିବା ।

ଦୀନକୃଷ୍ଣଙ୍କ ଜୀବନର ଚତୁର୍ଥ ଉପମାନ ହେଉଛି, 'ବଧିର ଭାଟ' । ଏହି ଦୃଷ୍ଟାନ୍ତ ମାଧ୍ୟମରେ କବି ନିଜର କାବ୍ୟ ଓ ଏହାର ଅରସିକ ଗ୍ରାହକମାନଙ୍କୁ ଲକ୍ଷ୍ୟ କରିଥିବା ପରି ଜଣାପଡ଼େ । ବଧିର ବ୍ୟକ୍ତି ନିକଟରେ ଗାଉଥିବା ଭାଟର ପରିଶ୍ରମ ବୃଥା ହେବାପରି, କବିଙ୍କର ଅକ୍ଳାନ୍ତ ଶ୍ରମ ଏହି ଅରସିକମାନଙ୍କ ନିକଟରେ ବ୍ୟର୍ଥ ହୋଇଛି । ସେମାନେ କାବ୍ୟରୁ ରସାସ୍ୱାଦ କରିବାକୁ ଅକ୍ଷମ ହୋଇଛନ୍ତି । ସେମାନଙ୍କର କଟୂକ୍ତି ଓ ଆଲୋଚନା ସହ୍ୟ କରି ନ ପାରି କବି ସେମାନଙ୍କୁ କଠୋର, କୁଟିଳ, କପଟି, କୁମତି, ଗୁଆଁର, କର୍କଶ, ମୂର୍ଖ ଓ କୁତ୍ସିତ ବୁଦ୍ଧି ପ୍ରଭୃତି ଶବ୍ଦଦ୍ୱାରା ଭର୍ତ୍ସନା କରିଛନ୍ତି । ବଧିର ଓ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି ଯେ ବଧିର ବ୍ୟକ୍ତି ଆଦୌ ଶୁଣିପାରେ ନାହିଁ ଅଥଚ ଅରସିକମାନେ କର୍ଣ୍ଣରେ ଶୁଣି ଶୁଣି ପାରନ୍ତି ନାହିଁ । ସେମାନଙ୍କର ସ୍ୱଭାବ ବିଶ୍ଳେଷଣ କରି କବି କହିଛନ୍ତି-

କଲେ ତୁମ୍ବର ରସରେ ଗୀତ ରସଇ ନାହିଁ କାହାର ଚିତ୍ତ
କର୍ଣ୍ଣରେ ଶୁଣି ବୋଲନ୍ତି ରସ ବିଶେଷ ନୋହେ ତ ଯେ ।
କରି ତ ଆନ୍ତି ଜ୍ଞାନକୁ ହତ, ମୋହ ମୋଦରେ ହୋଇ ସମ୍ମତ
ମୁଁ ତାଙ୍କୁ କି ବୋଲିବି ମୋହୋର ନଥାଇ କୃତ୍ୟ ଯେ ।

କାବ୍ୟରେ ବଧିର ଭାଟର ଆଉ ଗୋଟିଏ ପ୍ରୟୋଗ ହେଉଛି, 'କାଲ ନୃପେ ଭାଟ' । ରସକଲ୍ଲୋଳରେ କବିଙ୍କ ପ୍ରତି ଦଣ୍ଡଧର-ଦଣ୍ଡ-ବ୍ୟଥାର ସୂଚନା ଅଛି । ପୁଣି କବି ପୁରୀରୁ ନିର୍ବାସିତ ହୋଇଥିବା ବି ଅଛି । ଯେପରି ଜଣାପଡୁଛି, ରାଜାଙ୍କ ଦ୍ୱାରା ଦଣ୍ଡିତ ହୋଇ କବିଙ୍କୁ ପୁରୀ ତ୍ୟାଗ କରିବାକୁ ହୋଇଥିଲା ।

ରାଜାଙ୍କ ଦଣ୍ଡାଦେଶରୁ ଅବ୍ୟାହତି ପାଇବା ପାଇଁ କବି ବହୁ କାକୁତି ମିନତି କରିଥିବେ ଓ କବିଙ୍କର ସମସ୍ତ ନିବେଦନ, କାଳ ନୃପ ଆଗରେ ଭାଟର ସ୍ତୁତି ପାଠ ପରି ବ୍ୟର୍ଥ ହୋଇଥିବ । ରସକଲ୍ଲୋଳର ବଧିର ଭାଟ ଉପମାରେ କବି ଜୀବନର ଏହି ଅନୁଭବ ବୋଧହୁଏ ପ୍ରକାଶିତ ।

ରସକଲ୍ଲୋଳର କବି ଦୀନକୃଷ୍ଣଙ୍କ ଜୀବନର ଅନ୍ୟ ଗୋଟିଏ ଅବସ୍ଥା 'ପଇଡ଼ ଖୋଳା ମୁଠି ମର୍କଟ' ଉପମାନରେ ସୂଚିତ । କବିଙ୍କ ଭକ୍ତଜୀବନ ଓ ସଂସାରୀ ଜୀବନ ମଧ୍ୟରେ ବହୁଦିନ ଧରି ଟଣାଓଟରା ଲାଗିଥିଲା । କବି କେତେବେଳେ ସଂସାରୀ ହେଉଥିଲେ ତ କେତେବେଳେ ଭକ୍ତ । ବିଷୟ-ଜଞ୍ଜାଳର ଟାଣରେ ସେ ପୂରାପୂରି ଭଗବାନଙ୍କ ସେବାରେ ନିଜକୁ ନିୟୋଜିତ କରିପାରୁ ନ ଥିଲେ । କବିଙ୍କ ଭକ୍ତ ଓ ସଂସାରୀ ଜୀବନରେ ଲାଗି ରହିଥିବା ସଂଘର୍ଷର ପୃଷ୍ଠଭୂମି ଉପରେ ଉପମାନଟି ପ୍ରତିଷ୍ଠିତ ହୋଇଥିବା ପରି ଜଣାପଡ଼େ । ପଇଡ଼ ଖୋଳା ମୁଠି ମର୍କଟ ଉପମାନଟି କବି ଦୀନକୃଷ୍ଣଙ୍କର ନିଜ କଳ୍ପନା ପ୍ରସୂତ ନୁହେଁ । ଯେତେଦୂର ଜଣାଯାଇଛି, ଏହା ଗୋଟିଏ କବିପ୍ରସିଦ୍ଧି । ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ରଭଞ୍ଜ ଓ ହିନ୍ଦୀ ସାହିତ୍ୟରେ ସୁରଦାସ ଓ ତୁଳସୀଦାସ ଏହାର ବ୍ୟବହାର କରିଛନ୍ତି । କବି ପ୍ରସିଦ୍ଧିରୁ ଆହୃତ ଉପମାନଟି ଛନ୍ଦ ଅନୁରୋଧରୁ ଅତି ସଂକ୍ଷିପ୍ତଭାବେ ରସକଲ୍ଲୋଳରେ ପ୍ରକାଶ ପାଇଛି । ଫଳରେ ଶବ୍ଦ ସବୁର ଆକ୍ଷରିକ ଅର୍ଥରୁ ଉପମାନଟିର ଯେଉଁ ଅର୍ଥ ମିଳୁଛି, ତାହା ଅପୂର୍ଣ୍ଣ । କବି ମନର ବହୁ କଥା ଏଥିରେ ପ୍ରକାଶ ପାଇନାହିଁ । ସେ ସବୁକୁ କବି ପରମ୍ପରାରୁ ଖୋଜିବାକୁ ହେବ । ତା ନ ହେଲେ କବି ଦୀନକୃଷ୍ଣଙ୍କୁ ଜାଣି ହୁଏ ନାହିଁ । ରସକଲ୍ଲୋଳର ପ୍ରସିଦ୍ଧ ଟୀକାକାର ପଇଡ଼ ଖୋଳା ମୁଠି ମର୍କଟର ଅର୍ଥ କରି କହିଛନ୍ତି, ମାଙ୍କଡ଼ ଯେପରି କସି ପଇଡ଼ ଖୋଳାକୁ ମୁଠାରେ ଧରି ତାକୁ କାମୁଡ଼ି ତା ଭିତର ପାଣି ପିଏ-ପାଣି ବୋହିଯାଏ ତାର ପେଟ ପୂରେ ନାହିଁ, ସେହିପରି ଦରିଦ୍ର ହୋଇ ଯାହାକିଛି ପଦାର୍ଥରେ ପେଟ ପୋଷିବାରେ କଳବଳ ହୁଏ (କ-କୌ, ପୃ-୫୨) । ଅର୍ଥରେ ଟୀକାକାର ଯେତେ କଥା କହିଛନ୍ତି, ପଇଡ଼ ଖୋଳା ମୁଠି ମର୍କଟରେ ସେତେ ଅର୍ଥ ନାହିଁ ବା ଟୀକାକାରଙ୍କ ଅର୍ଥ କବି ପ୍ରସିଦ୍ଧିର ଅନୁକୂଳ ନୁହେଁ । ଖୋଳାକୁ ଖୋଳପା (ପଇଡ଼ର କତା) ଅର୍ଥରେ ଓ ମୁଠିକୁ ମୁଠାରେ ଧରିଥିବା ଅର୍ଥରେ ଗ୍ରହଣ କଲେ ଏହାର ଅର୍ଥ ହେବ, ପଇଡ଼ ଖୋଳପାକୁ ବା ପଇଡ଼କୁ ହାତରେ

ଧରିଥିବା ମର୍କଟ । ଏଥିରେ ତାକୁ କାମୁଡ଼ି ପାଣି ପିଇବା ଓ ପାଣି ବୋହିଯିବା ଅର୍ଥ ନାହିଁ । ପଇଡ଼ ଏହାର ମଧୁର ଜଳ ପାଇଁ ପ୍ରସିଦ୍ଧ । ପାଣିଯାକରେ ପଇଡ଼ ମିଠା । ତେଣୁ ହୁଏତ ମାଙ୍କଡ଼ ପାଣି ପିଇବା ଆଶାରେ ପଇଡ଼କୁ ହାତରେ ରଖୁଥିବା କଵି ପ୍ରସିଦ୍ଧି ହେଉଛି, ମାଙ୍କଡ଼ ହାତରେ ପଇଡ଼ ଥାଇ ମଧ ସେ ପାଣି ପିଇପାରେ ନାହିଁ । ଉପେନ୍ଦ୍ରଭଞ୍ଜ କହିଛନ୍ତି-

ନାରିକେଳ ଯେ ଫଳ ସାର
ତା ସ୍ୱାଦୁ ନ ଜାଣେ ବାନର ।

ଏହାର ଅନ୍ୟ ଗୋଟିଏ ରୂପ ମଧ ପ୍ରଚଳିତ-

ନାରିକେଳ ଯେ ରସପୂର
ଭକ୍ଷି ନ ପାରଇ ବାନର ।

ହିନ୍ଦୀ ସାହିତ୍ୟର ପ୍ରସିଦ୍ଧ କବି ସୁରଦାସ ଏହି ଉପମାନଟିକୁ ନିମ୍ନ ଭାବରେ ବ୍ୟବହାର କରିଛନ୍ତି । ସମ୍ପୂର୍ଣ୍ଣ ପଦଟି ହେଉଛି-

ଜନମ ତୌ ଏସେହିଁ ବୀତି ଗୟୌ
ଜୈ ସୈଂ ରଙ୍କ ପଦାରଥ ପାଏ ।
ଲୋଭ ବିସାହି ଲୟୌ
ବହତୁକ ଜନ୍ମ ପୁରୁଷ ପରାୟନ ସୂକର -ସ୍ୱାନ ଭୟୌ ।
ଅବ ମେରୀ ମେରି କରି ବୌରେ, ବହୁରୌ ବୀଜ ବୟୋ ।
ନର କୌ ନାମ ପାରଗାମୀ ହେ ସେ ତୋ ହିଁ ସ୍ୟାମ ଦୟେ ।
ଟେଁ ଜଡ଼ ନାରିକେଲ କପିକର ଜ୍ୟୋଁ ପାୟୋ ନହିଁ ପୟୌ ।
ରଚନୀ ଗତ ବାସର ମୃଗତୃଷ୍ଣା ରସ ହରି କୌ ନ ଚୟୌ ।
ସୁର ନଦଂ ନଦନ ଜେହିଁ ବିସରୟେ ଆପୁହିଁ ଆପୁ ହୟୌ ।
(ସୁର ସାଗର, ପଦ ସଂଖ୍ୟା ୭୮ ।)

ଏହାର ଅର୍ଥ ହେଉଛି, ରେ ମନ ! ଏହି ମନୁଷ୍ୟ ଜନ୍ମତ ଏହିପରି ବ୍ୟର୍ଥ ଭାବେ ବ୍ୟତୀତ ହୋଇଗଲା, ଯେପରି କାଙ୍ଗାଳକୁ କୌଣସି ବସ୍ତୁ ମିଳିଯାଏ, ସେହିପରି ଲୋଭ ତୋତେ କିଣିନେଲା । ଲୋଭରୁ ତୋର ମୁକ୍ତି ନାଇଁ । ବହୁଜନ୍ମ ପର୍ଯ୍ୟନ୍ତ ମଳକୁ ଅନୁସରଣ କରୁଥିବା ବା ମଇଳା ଖାଉଥିବା ଘୁଷୁରୀ ଓ କୁକୁର ଜନ୍ମ ପାଇଲୁ । ବର୍ତ୍ତମାନ ବି ସେ ପାଗଳ ! ସାଂସାରିକ ବସ୍ତୁକୁ ମୋର, ମୋର କରି

ସେଥିରେ ମମତା ଲଗାଇ, ସେହି ନିନ୍ଦିତ ଯୋନିରେ ଜନ୍ମ ନେବାପାଇଁ ବୀଜ ପବନ କରୁଛୁ । ନରର ଅନ୍ୟ ଅର୍ଥ ହେଉଛି, ସଂସାର ସାଗରରୁ ତ୍ରାହି ପାଇବା । ମନୁଷ୍ୟ ଜନ୍ମହିଁ ସଂସାରରୁ ମୁକ୍ତି ପାଇବାର ସାଧନ । ସେହି ମନୁଷ୍ୟ ଜନ୍ମ ତୋତେ ଶ୍ୟାମସୁନ୍ଦର ଦେଲେ । ରେ ମୂର୍ଖ ! ଯେପରି ମର୍କଟ ହାତରେ ନାରିକେଲ ଫଳ ଦେଲେ, ସେ ତାର ପାଣି ପିଇପାରେ ନାହିଁ, ସେହିପରି ତୁ ଏ ଜୀବନକୁ ପାଇ ବି ନ ପାଇବା ପରି ନଷ୍ଟ କରିଦେଲୁ । ସଂସାରରେ ଭୋଗର ମୃଗତୃଷ୍ଣାରେ ରାତି ଓ ଦିନ ବ୍ୟତୀତ ହୋଇଗଲା । ଶ୍ରୀହରିଙ୍କର ଭଜନ-ରସର ସଞ୍ଚୟ କଲୁନାହିଁ । ସୁରଦାସ କୁହନ୍ତି, ଯେ ନନ୍ଦନନ୍ଦନକୁ ବିସ୍ମୃତ ହୋଇଗଲା, ସେ ନିଜେ ନିଜକୁ ବିନାଶ କରିଦେଲା । ('ସୁର-ବିନୟ-ପତ୍ରିକା', ଗୀତ ପ୍ରେସ୍, ଗୋରଖପୁର, ପୃ-୯୪ରୁ ଅନୁବାଦ ଗୃହୀତ) । କବି ଉପେନ୍ଦ୍ରଙ୍କ ସ୍ୱାଦୁ, ଜଳର ସ୍ୱାଦୁ ନ ହୋଇ ପାରେ, କିନ୍ତୁ ସୁର ଦାସଙ୍କ ପ୍ରୟୋଗରେ ଅତି ସ୍ପଷ୍ଟ । ଦୀନକୃଷ୍ଣଙ୍କ ପରି ସୁରଦାସ ମଧ୍ୟ ନିଜ ଜୀବନର ଉପମାନ ରୂପେ ପଇଡ଼ ଓ ମର୍କଟର ସମ୍ପର୍କକୁ ଗ୍ରହଣ କରିଛନ୍ତି । ଆଉ କେତୋଟି ସମାନଧର୍ମୀ ଉପମାନର ସାନ୍ନିଧରେ ଏହା ଆହୁରି ପ୍ରାଞ୍ଜଳ ହୋଇ ପ୍ରକାଶ ପାଇଛି । ଏ ସବୁରୁ କବି ଜୀବନର ଯେଉଁ ଚିତ୍ର ମିଳେ ତାହା ହେଉଛି, କେବଳ କୃଷ୍ଣନାମ ଜପ କଲେ ମଣିଷ ମୁକ୍ତି ପାଏ ନାହିଁ, ମୁକ୍ତି ପାଇବାକୁ ହେଲେ ଶ୍ୟାମସୁନ୍ଦରଙ୍କର ଦୟା ଅତ୍ୟନ୍ତ ଆବଶ୍ୟକ । ପଇଡ଼ ଖୋଳ ମୁଠି ମର୍କଟ ଉପମାନର ପୃଷ୍ଠଭୂମିକା ରୂପେ କବି ଦୀନକୃଷ୍ଣ ମଧ୍ୟ କହିଛନ୍ତି ।

କରରେ ଦେଇ ଚିନ୍ତାମଣିକି,
ବିନାଶ କଲ ସବୁ ଆଣିକି ।

ପ୍ରଭୁ ଲକ୍ଷଣ ଏମନ୍ତନିକି ଆନନ୍ଦ କନ୍ଦ ହେ । (୧୫,୨୬)

ଜୀବନର ସମସ୍ତ ବିଷ ବିନାଶ କରିବାପାଇଁ ଶ୍ରୀକୃଷ୍ଣଙ୍କ ନାମାମୃତକୁ ଆକଣ୍ଠପାନ କରିବାର ବଳବତୀ ଲାଳସା କବିଙ୍କ ଜୀବନରେ ଜାଗ୍ରତ ହୋଇଥିଲେ ହେଁ, ଅତ୍ୟଧିକ ସାଂସାରିକ ଜଞ୍ଜାଳ ହେତୁ କବିଙ୍କର ଏହି ଇଚ୍ଛା ବା ଆଶା ବାରମ୍ବାର ବାଧା ପାଇଛି । ଏହି ଉପମାନର ଆଉ ଗୋଟିଏ ଅର୍ଥ ମଧ୍ୟ ସମ୍ଭବ ହୋଇପାରେ । ଖୋଳା ଶବ୍ଦ ଖୋଳପା ଓ ଖୋଳା ହୋଇଥିବା ଅର୍ଥରେ ବ୍ୟବହୃତ ହୁଏ । ମୁଠି ଶବ୍ଦ ସଙ୍କୁଚିତ କରତଳ ଅର୍ଥରେ ବିଶେଷଭାବେ ପ୍ରଯୁକ୍ତ । ମୁଠାରେ ପଇଡ଼

ଧରିହୁଏ ନାହିଁ । ତେଣୁ ପଇଡ଼ ଖୋଲା ମୁଠି ମର୍କଟର ଅର୍ଥ ମର୍କଟର ଖୋଲା ମୁଠିରେ ପଇଡ଼ ହେବା ଯେମିତି ସମ୍ଭବ ପଇଡ଼ରେ ମର୍କଟର ମୁଠି ହେବା ସେହପରି ସମ୍ଭବ । ଦ୍ୱିତୀୟ ଅର୍ଥର ମୂଳ ଗୋଟିଏ ଲୋକ-ପ୍ରଚଳିତ ଗଳ୍ପରେ ଦେଖିବାକୁ ମିଳେ । ଗପଟି ହେଇଛି, କୌଣସି ଏକ ମର୍କଟ ମିଷ୍ଟାନ୍ନ ପାତ୍ରରୁ ମିଷ୍ଟାନ୍ନ ଆଣିବା ଉଦ୍ଦେଶ୍ୟରେ ହାତ ପୂରେଇଛି । ମିଠେଇ ଧରି ହାତ ବାହାର କଲାବେଳକୁ ହାତ ବାହାରି ପାରୁନାହିଁ । ସେ ଭାବୁଛି ପାତ୍ର ଭିତରେ କେହି ତାର ହାତକୁ ଜାବୁଡ଼ି ଧରିଛି । ମର୍କଟର ଭ୍ରମ ଜୀବର ଅଜ୍ଞାନତା ପାଇଁ ପ୍ରସିଦ୍ଧ ଉପମାନ । ହିନ୍ଦୀ ସାହିତ୍ୟରେ ସୁରଦାସ ଓ ତୁଳସୀଦାସ ଉଭୟଙ୍କ ରଚନାରେ ଏହାର ପ୍ରୟୋଗ ଦେଖିବାକୁ ମିଳେ । ସୁରଦାସଙ୍କ ପଦଟି ହେଉଛି ।

ଅପୁନପୌ ଆପୁନହୀ ବିସରୟୋ ।
ଜୈସେ ସ୍ୱାନ କାଚ ମନ୍ଦିର ମେ, ଭ୍ରମି ଭ୍ରମି ଭୁକି ପରୟୌ ।
ଜ୍ୟୌଂ ସୌରଭ ମୃତ ନାଭି ବସତ ହେଁ, ଦ୍ରୁମ ତୃନ ସୁଁଘି ଫିରୟୌ ।
ଜ୍ୟୌଂ ସପନେ ମୈଂ ରଙ୍କ ଭୂପ ଭୟୌ, ତସକର ଅରି ପକରୟୌ ।
ଜ୍ୟୌଂ କେହରି ପ୍ରତିବିମ୍ବ ଦେଖବ କୈ ଆପନୁ କୂପ ପରୟୌ ।
ଜୈସୈଂ ରାଜ ଲଖବ ଫଟିକ ଶିଲା ମୈଂ ଦସନନି ଜାଇ ଅରୟୌ ।
ମର୍କଟ ମୁଁଠି ଛାଡ଼ି ନାହିଁ ଦୀନୀ, ଘର-ଘର ଦ୍ୱାର ଫିରୟୌ ।
ସୁରଦାସ ନଳିନୀ କୌ ସୁବଟା, କହି କୌବେଂ ପକରୟୌ ।

(ସୁର ସାଗର, ପଦ ସଂଖ୍ୟା, ୩୬୯)

ପଦଟିର ଅର୍ଥ ହେଉଛି, ନିଜର ସ୍ୱରୂପ ନିଜ ମନକୁ ବିସ୍ମୃତ ହୋଇଗଲା । ଯେପରି କାଚ ଦର୍ପଣ ନିର୍ମିତ ଗୃହର କୁକୁର (ଚାରିପାଖରେ ନିଜର ପ୍ରତିବିମ୍ବ ଦେଖି) ଚାରିଆଡ଼କୁ ବୁଲି ବୁଲି ଭ୍ରମବଶତଃ ଭୁକିଥାଏ, ଯେପରି କସ୍ତୁରୀର ସୁଗନ୍ଧ କସ୍ତୁରୀ ମୃଗର ନାଭିରେ ଥାଏ, ଅଥଚ (ଅଜ୍ଞାନ ବଶତଃ ତହାକୁ ପାଇବାକୁ) ସେ ତୃଣ ଓ ବୃକ୍ଷକୁ ଆଘ୍ରାଣ କରେ, ଯେପରି କୌଣସି ରାଜା ସ୍ୱପ୍ନରେ କାଙ୍ଗାଳ ହୋଇଯାଇଛି ଓ ଚୋର ବା ଶତ୍ରୁଦ୍ୱାରା ଧରାପଡ଼ିଛି, ଯେପରି ସିଂହ କୂଅ ଜଳରେ ନିଜର ପ୍ରତିବିମ୍ବ ଦେଖି ନିଜେ କୂଅକୁ ଡେଇଁପଡ଼େ, ଯେପରି ହାତୀ ସ୍ଫଟିକ ଶିଳାରେ ନିଜର ପ୍ରତିବିମ୍ବ ଦେଖି ସ୍ୱୟଂ (ଅନ୍ୟ ହାତୀ ଭାବି) ଦନ୍ତାଘାତ ପାଇଁ ପ୍ରସ୍ତୁତ ହୋଇଯାଏ, ଯେପରି ମର୍କଟ ଛୋଟ ମୁଖଯୁକ୍ତ ଘଡିରେ ଲୋଭ ବଶରୁ ଚଣା ଆଦି ବାହାର କରିବାପାଇଁ ହାତ ପୂରାଏ ଓ ମୁଠି ଛାଡ଼ି ନ

ଦେଇ (ଧରାପଡ଼େ) ଘର-ଘର, ଦ୍ୱାର-ଦ୍ୱାର (ମର୍କଟ ନଚାଳି ଦ୍ୱାରା ଧରାହୋଇ ନାଚି ନାଚି) ବୁଲୁଥାଏ, ଯେପରି ଶୁଆ ନଳିନୀ ଯନ୍ତ୍ର ଉପରେବସି, ଯନ୍ତ୍ର ବୁଲି ପଡ଼ିବାରୁ ତାକୁ ଜାବୁଡ଼ି ଧରି, ଭାବେ ଯେ ତାକୁ କେହି ଧରିଛି, ସେହିପରି ସୁରଦାସ କହନ୍ତି ଯେ ଜୀବର ବନ୍ଧନ ଓ କଷ୍ଟ ଅଜ୍ଞାନତା ଯୋଗୁଁ, ତାକୁ କେହି ସଂସାର ବନ୍ଧନରେ ପକାଇ ନାହାନ୍ତି ବା ତା ଦୁଃଖର କାରଣ ଅନ୍ୟ କେହି ନୁହନ୍ତି। ପରମାନନ୍ଦ ସ୍ୱରୂପ ଆତ୍ମତତ୍ତ୍ୱ ତାରି ହୃଦୟରେହିଁ ଅଛି, ଅଥଚ ସେ ତାକୁ ଭୁଲି ବାୟା ପରି ବୁଲୁଛି । (ସୁର-ବିନୟ ପତ୍ରିକା, ପୃ-୨୮୦, ଗୀତା ପ୍ରେସର ଅନୁବାଦରୁ ଗୃହୀତ ) । ତୁଳସୀ ଦାସ ମଧ୍ୟ "ବନ୍ଧ୍ୟୋକୀର ମର୍କଟ କୀ ନାଇ" (ରାମ ଚରିତ ମାନସ, ୭,୧୧୬,୨, ଗୀତା ପ୍ରେସ) ପଂକ୍ତିରେ ଜୀବର ଅଜ୍ଞାନତାକୁ ହିଁ ପ୍ରକାଶ କରିଛନ୍ତି । ଦୀନକୃଷ୍ଣ ନିଜର ଅଜ୍ଞାନତାରୁ ପରମାନନ୍ଦ ରୂପୀ ଆତ୍ମତତ୍ତ୍ୱକୁ ଚିହ୍ନି ନ ପାରୁଥିବା ଓ ସେଥିପାଇଁ ନିଜକୁ ପଇଡ଼ ଖୋଳା ମୁଠି ମର୍କଟ ସହ ତୁଳନା କରିଥିବା ବିଚିତ୍ର ନୁହେ । ପୂର୍ବୋକ୍ତ ଦୁଇଟିଯାକ ଅର୍ଥର ସପକ୍ଷରେ ଓ ବିପକ୍ଷରେ ବହୁ କଥା କୁହାଯାଇପାରେ । କବି ଏ ଦୁଇଟି ଅର୍ଥରୁ କେଉଁଟିକି ମନରେ ରଖି ଉପମାନଟି ପ୍ରୟୋଗ କରିଥିଲେ କହିବା କଷ୍ଟ । ତେବେ ଦୁଇଟିଯାକ ଅର୍ଥ ସାଂସାରିକ ଜଞ୍ଜାଳ ବା ଅଜ୍ଞାନତା ଦ୍ୱାରା ବ୍ୟାହତ ହେଉଥିବା କବିଙ୍କ ଭକ୍ତ ଜୀବନକୁ ହିଁ ପ୍ରତିଭାତ କରୁଛି । ଦରିଦ୍ର ହୋଇ ଯାହା କିଛି ପଦାର୍ଥରେ ପେଟ ପୋଷି କଳବଲ ହେବାର ସୂଚନା ଏଥିରେ ନାହିଁ ।

ରସକଲ୍ଲୋଳର ଷୋଡ଼ଶ ଛାନ୍ଦରେ କବି ନିଜ ଜୀବନର ପାଞ୍ଚୋଟି ଉପମାନକୁ ପ୍ରକାଶ କରିଥିବାରୁ ଅନୁମିତ ହୁଏ ଯେ କବି ଜୀବନର ଏହି ପାଞ୍ଚୋଟି ପର୍ଯ୍ୟାୟ ରସକଲ୍ଲୋଳ ପରିକଳ୍ପନାର ପୂର୍ବାବସ୍ଥା ବା ଖୁବ୍ ବେଶୀରେ ଷୋଡ଼ଶ ଛାନ୍ଦ ରଚନାର ପୂର୍ବକଥା । ପାଞ୍ଚୋଟି ଉପମାନ ମଧ୍ୟରୁ ପ୍ରଥମ ଉପମାନରେ କବିଙ୍କ ଭକ୍ତ ଜୀବନ ଓ ସାଂସାରିକ ଜୀବନ ମଧ୍ୟରେ ଲାଗିଥିବା ସଂଘର୍ଷ, ଦ୍ୱିତୀୟ ଓ ଚତୁର୍ଥ ଉପମାନରେ ସାଂସାରିକ ଜୀବନରେ କବିଙ୍କ ନିର୍ଯ୍ୟାଚନା, ତୃତୀୟ ଉପମାନରେ କବିଭାବରେ ସମାଜରେ କବିଙ୍କ ମୂଲ୍ୟ ନିରୂପଣ ଓ ପଞ୍ଚମ ଉପମାନରେ ଭକ୍ତଭାବରେ ଦୀନକୃଷ୍ଣଙ୍କ ଜୀବନ ପ୍ରତିଫଳିତ ହୋଇଛି । ଏହିସବୁ ଅନୁଭୂତିର ବହୁସ୍ମୃତି ରସକଲ୍ଲୋଳରୁ ମଧ୍ୟ ମିଳିଥାଏ । ରସକଲ୍ଲୋଳର ଚତୁର୍ଦ୍ଦଶ ଛାନ୍ଦର ଉପସଂହାରରେ କବି ଜଗନ୍ନାଥଙ୍କ ସୌଭାଗ୍ୟ ପାଇଥିଲେ ହେଁ, ଚତୁର୍ବିଂଶ ଛାନ୍ଦର ଉପସଂହାର କଳାବେଳକୁ ସେହି ସୌଭାଗ୍ୟ

କବିଙ୍କର ନ ଥିଲା । ଅନ୍ୟ କେତୋଟି ପଂକ୍ତିରୁ କବି ଉତ୍କଳର କୌଣସି ଏକ କୁତ୍ସିତ ଗ୍ରାମରେ ଗୁଆଁର, ଅରସିକ, କୃପଣ ଓ ଅବିବେକୀମାନଙ୍କ ମଧ୍ୟରେ ଜୀବନ ଯାପନ କରୁଥିବାରୁ ଆଭାସ ମିଳୁଛି । ଏସବୁ ଅନୁଭବର ପ୍ରକାଶ ସତ୍ତ୍ୱେ ଦୀନକୃଷ୍ଣଙ୍କ ବ୍ୟବହୃତ ଉପମାରାଜି ବିଶେଷ କରି ପରମ୍ପରାଗତ । ଅର୍ଥାତ୍ କବି, ଯେଉଁ ଉପମାନ ସବୁ ବ୍ୟବହାର କରିଛନ୍ତି ସେଥିରୁ ଅଧିକାଂଶ ସମସାମୟିକ କବି ପୁଣି ପୂର୍ବ ବା ପରବର୍ତ୍ତୀ କବିମାନଙ୍କ କାବ୍ୟରେ ଦେଖିବାକୁ ମିଳିବ । ଉଦାହରଣ ସ୍ୱରୂପ ଚକୋରୀର ଅମୃତ ପାନ, ଚାତକ ଓ ମେଘର ସମ୍ପର୍କ, ଚକ୍ରବାକ ଓ ଚକ୍ରବାକୀର ବିଚ୍ଛେଦ, କାଦମ୍ବିନୀ କାଳ-କୋକିଳ, ପ୍ରଭୃତି ଉପମାନକୁ କବି, କବି-ସମୟ ବା କବି-ବାଟରୁ ସଂଗ୍ରହ କରିଛନ୍ତି । ଏହି ଦୃଷ୍ଟିରୁ ଦୀନକୃଷ୍ଣଙ୍କ ମୌଳିକତା ହୁଏତା ନାହିଁ । କିନ୍ତୁ ସେହି ପ୍ରୟୋଗ-ପରମ୍ପରାରୁ କବି ନିଜର କରି ଯେଉଁସବୁକୁ ଗ୍ରହଣ କରିଛନ୍ତି, ସେହି ସବୁର ବ୍ୟବହାରରେ କବିଙ୍କ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ହୋଇ ଉଠିଛି । ଏପରିକି କବି ଏହି ସବୁ ଉପମାନକୁ ନିଜ ଅନୁଭବ ସହ ସଂଯୁକ୍ତ କରିଛନ୍ତି । ଉଦାହରଣ ପାଇଁ ସମାଜକୁ ନିଆଯାଉ । ରସକଲ୍ଲୋଳରେ ଚିତ୍ରିତ ସମାଜ ଓ ଉପମାରାଜିରେ ପ୍ରତିବିମ୍ବିତ ସମାଜ ସମ୍ପୂର୍ଣ୍ଣ ଭାବରେ ସ୍ୱତନ୍ତ୍ର । ଗ୍ରୀଷ୍ମ, ବର୍ଷା ଓ ଶୀତ ଋତୁରେ ଲୋକମାନଙ୍କର ସାମାଜିକ ଅବସ୍ଥା ରସକଲ୍ଲୋଳରେ ଅତି ସୁନ୍ଦରଭାବେ ବର୍ଣ୍ଣିତ ହୋଇଛି । କିନ୍ତୁ ଉପମାନ ମାଧମରେ ଆସିଥିବା ସମରବର୍ଣ୍ଣନା, ସଙ୍ଗୀତମନ୍ଦିର, ରଙ୍ଗଭୂମି ବା ନଟମନ୍ଦିରର କଳ୍ପନା କାବ୍ୟରେ କଥାଭାଗର ଅଂଶବିଶେଷ ନୁହେଁ, ଅଥଚ ଅତି ବିସ୍ତୃତଭାବରେ ପ୍ରକାଶ ପାଇଛି । ବୃକ୍ଷସବୁକୁ ନିଆଯାଉ । ଋତୁ ବର୍ଣ୍ଣନା ପ୍ରସଙ୍ଗରେ କବି ବହୁ ବୃକ୍ଷର ଉଲ୍ଲେଖ କରିଛନ୍ତି କିନ୍ତୁ ଉପମାନରୂପେ ବୃକ୍ଷ ସଂଖ୍ୟା ବହୁତ ଅଳ୍ପ । ଏହିସବୁ ଉଦାହରଣରୁ ଏହି ନିଷ୍କର୍ଷରେ ପହଞ୍ଚିବାକୁ ହୁଏ ଯେ ସମାଜରେ କବି-ହୃଦୟକୁ ଯେଉଁସବୁ ପଦାର୍ଥ ଅତି ନିବିଡ଼ ଭାବରେ ସ୍ପର୍ଶ କରିଥିଲା, କବି କାବ୍ୟକୁ ଜୀବନ୍ତ କରିବା ପାଇଁ ସେହିସବୁ ଅନୁଭବକୁ ଉପମା ରୂପରେ ବ୍ୟବହାର କରିଛନ୍ତି । ମରି (Murry) ଯଥାର୍ଥ କହିଛନ୍ତି- "Metaphor seems in part to arise out of the poet's strong and constant impulse to create life । କୋଲରିଜ (Coleridge) ମଧ କୁହନ୍ତି ଯେ କବି ନିଜ ଆତ୍ମାରୁ ଜୀବନ ନେଇ ଆପାତତଃ ନିର୍ଜୀବ ବସ୍ତୁକୁ ଜୀବନ୍ତ କରିଥାଏ ।

ଉପମା ଦୃଷ୍ଟିରୁ ଦୀନକୃଷ୍ଣଙ୍କ ରସକଲ୍ଲୋଳର ଆଲୋଚନାର ପରିସମାପ୍ତି କରିବା ପୂର୍ବରୁ ଉପମା ପାଇଁ ପ୍ରସିଦ୍ଧ ସମସାମୟିକ କବି ଉପେନ୍ଦ୍ରଙ୍କୁ ଉପେକ୍ଷା

କରିହୁଏ ନାହିଁ । ଅଥଚ ଉପେନ୍ଦ୍ରଙ୍କ ଉପମା-ରାଜ୍ୟର ସୀମା ଏତେ ବ୍ୟାପ୍ତ ଓ ବିସ୍ତୃତ ଯେ ଏହି ପ୍ରବନ୍ଧର ସୀମା ମଧ୍ୟରେ ସେ ସବୁର ଆଲୋଚନା କରିବା ଅସମ୍ଭବ । କେବଳ ତୁଳନା ପାଇଁ କେତୋଟି ଉଦାହରଣ ପ୍ରଦତ୍ତ ହୋଇଛି । ମୁଖକୁ ପଦ୍ମ ସହିତ ତୁଳନା କରିବା କବିମାନଙ୍କର ଏକ ସାଧାରଣ ଧର୍ମ । ଉପେନ୍ଦ୍ର ଓ ଦୀନକୃଷ୍ଣ ଉଭୟେ ଏହାର ପ୍ରୟୋଗ କରିଛନ୍ତି । ପାର୍ଥକ୍ୟ ହେଉଛି ଯେ ଦୀନକୃଷ୍ଣ ପଦ୍ମ ବା ତାର ପର୍ଯ୍ୟାୟଭୁକ୍ତ ଶବ୍ଦାବଳୀର ଅତି ଅଧିକ ପ୍ରୟୋଗ କରି ଉପେନ୍ଦ୍ରଙ୍କ ଠାରୁ ନିଜକୁ ସ୍ୱତନ୍ତ୍ର କରି ପାରିଛନ୍ତି । କାବ୍ୟ ମଧ୍ୟରେ ଏହି ଉପମାନ ସବୁଠାରୁ ବେଶୀ ଥର ପ୍ରୟୋଗ ହୋଇଥିବାରୁ ପଦ୍ମପାଇଁ କବିଙ୍କର ଅତ୍ୟଧିକ ଶ୍ରଦ୍ଧା ଥିବା ସ୍ପଷ୍ଟ । ଉଭୟ କବି ପଦ୍ମକୁ ପାରଂପରିକ ରୀତିରେ ପ୍ରୟୋଗ କରିଥିଲେହେଁ କେବଳ ବହୁଳ ପ୍ରୟୋଗ ଦ୍ୱାରା ପଦ୍ମପ୍ରତି ଦୀନକୃଷ୍ଣଙ୍କର ଯେଉଁ ଆନ୍ତରିକ ଶ୍ରଦ୍ଧା ପ୍ରକାଶ ପାଇଛି, ତାହା ଉପେନ୍ଦ୍ରଙ୍କ ପାଖରେ ନାହିଁ । ପଦ୍ମର ବ୍ୟବହାରରେ ଦୀନକୃଷ୍ଣ ପଦ୍ମରେ ଭ୍ରମର, ଶୈବାଳ ବେଷ୍ଟିତ ପଦ୍ମ, ପଦ୍ମ ବିଞ୍ଚିବା ଏହିପରି କେତୋଟିକୁ ଗ୍ରହଣ କରିଛନ୍ତି, ଯାହା କବି ନିଜେ ଦେଖିଥିବା ସମ୍ଭବ । ଅଥଚ ଉପେନ୍ଦ୍ରଙ୍କ ଦୃଷ୍ଟି ବିଶେଷ କରି 'ପଦ୍ମ ଉପରେ ଖଞ୍ଜନ ପକ୍ଷୀ', 'ପଦ୍ମରୁ ପଦ୍ମ ଜାତ', 'ପଦ୍ମରୁ ଚନ୍ଦ୍ରମା ଜାତ', ପ୍ରଭୃତି ଅଦ୍ଭୁତ ଉପମା ପ୍ରୟୋଗରେ ନିବଦ୍ଧ । ଦୀନକୃଷ୍ଣଙ୍କର ଅନ୍ୟ ଗୋଟିଏ ପ୍ରିୟ ଉପମାନ ହେଉଛି, 'କଳାକର' । କଳାନିଧି, ଚନ୍ଦ୍ର, କଇରବକାନ୍ତ ଶଶୀ, ଓ ଶଶଧର ପ୍ରଭୃତି ପର୍ଯ୍ୟାୟବାଚୀ ଶବ୍ଦ ମଧ କବି ବ୍ୟବହାର କରିଛନ୍ତି । କବି ଅର୍ଦ୍ଧଇନ୍ଦୁ ବା ଅର୍ଦ୍ଧଚନ୍ଦ୍ରର ମୋଟେ ଦୁଇଥର ପ୍ରୟୋଗ କରନ୍ତି । ଏଥିରୁ ଅନ୍ତତଃ ଏତିକି ସ୍ପଷ୍ଟ ଯେ କବି ଖଣ୍ଡିତ ଚନ୍ଦ୍ର ଅପେକ୍ଷା ପୂର୍ଣ୍ଣଚନ୍ଦ୍ରକୁ ବେଶି ପସନ୍ଦ କରୁଥିଲେ । ଉପେନ୍ଦ୍ରଙ୍କ କାବ୍ୟ ମଧ୍ୟରୁ ଅନୁସନ୍ଧାନ କରି ଜଣାଯାଇଛି ଯେ ସେ ଚନ୍ଦ୍ରକୁ କେବଳ ପୂର୍ଣ୍ଣଚନ୍ଦ୍ର ବା ପୂର୍ଣ୍ଣମୀଚନ୍ଦ୍ର ରୂପେ ନ ଦେଖି ଅର୍ଦ୍ଧଚନ୍ଦ୍ର, ଦ୍ୱିତୀୟା ଚନ୍ଦ୍ର, ଚତୁର୍ଥୀ ଚନ୍ଦ୍ର, ଅଷ୍ଟମୀଚନ୍ଦ୍ର ରୂପେ ବିଭାଗ କରି ଦେଖୁଥିଲେ । ଏହି ପାର୍ଥକ୍ୟରୁ ଦୁଇ କବିଙ୍କର ଦୃଷ୍ଟିକୋଣର ବିଭିନ୍ନତା ଜାଣିହୁଏ । ଦୀନକୃଷ୍ଣ ସହଜ ଓ ସ୍ୱାଭାବିକ ଦୃଷ୍ଟିରେ ଚନ୍ଦ୍ରକୁ ଦେଖୁଥିବା ବେଳେ ଉପେନ୍ଦ୍ର ଏହାର ବିଭିନ୍ନ ରୂପପ୍ରତି ଆକୃଷ୍ଟ ।

ଉପମା ପ୍ରତି ଉଭୟ କବିଙ୍କର ଦୃଷ୍ଟିକୋଣ ପ୍ରାୟ ସମାନ । ବସ୍ତୁତଃ ସମ୍ପୂର୍ଣ୍ଣ ଭାରତୀୟ ସାହିତ୍ୟ ସୌନ୍ଦର୍ଯ୍ୟବୋଧ ପାଇଁ ସାଦୃଶ୍ୟକୁ ମାନଦଣ୍ଡ ରୂପେ ଗ୍ରହଣ କରେ । ଉପମା ଏହି ସାଦୃଶ୍ୟର ଏକ ବିଶିଷ୍ଟ ଅଙ୍ଗ । ଉଭୟ କବି

ଉପମାର ଗତାନୁଗତିକ ବ୍ୟବହାର ଆଲୋଚନା କରିଥିଲେ ହେଁ ପରମ୍ପରାରୁ ମୁକ୍ତ ହୋଇ ପାରିନାହାନ୍ତି । ଉଭୟେ ଉପମାନ ସବୁକୁ ଉପେନ୍ଦ୍ରଙ୍କ ଭାଷାରେ 'ପୋଷିଲା ପକ୍ଷୀ ପ୍ରାୟେ' ବ୍ୟବହାର କରିଛନ୍ତି ଓ ବ୍ୟବହାର ପରେ 'କରଗତ କୀର କହଇ ମଧୁର' ପରି କାବ୍ୟ ସୁଲଳିତ ହୋଇ ପ୍ରକାଶ ପାଇଛି । ଉଦାହରଣ ସ୍ୱରୂପ ରସକଲ୍ଲୋଳରୁ ଗୋଟିଏ ଉଦାହରଣ ପ୍ରଦତ୍ତ ହେଉଛି,

କୁଚ ଲେଖାହୋଏ ସୁବର୍ଣ୍ଣ ତୁମ୍ବାରେ ଗତି ଲେଖାହୋଏ କରୀରେ
କଣ୍ଠ ଲେଖାହୋଏ ଶଙ୍ଖ ସଙ୍ଗତରେ କେଶ ଲେଖା କୃଷ୍ଣ ଚାମରେ ।
କେତେ କହିବି, ନନ୍ଦରାଜାଙ୍କ ପୁଅ ହଟ ।
କର୍ପୂର ବୋଲି ହାସକୁ ମୋତି ବୋଲି ଦନ୍ତକୁ ଯଉଁଠାରେ ଇଟ ।

ଉପେନ୍ଦ୍ରଙ୍କ ରଚିତ ଛାନ୍ଦ ଭୂଷଣରେ ଅନୁରୂପ ଉକ୍ତି ଦେଖିବାକୁ ମିଳେ ।

\+ \+

ଇଟ ମୋତେ ଲଗାଇଲେ ଦିନେ ଘାଟପାଇଁ ଯେ । ୨୮-୭
ଇମ୍ଭ କେଶକୁ ବୋଇଲା ଚାମର ସୁସଞ୍ଚ ।
ଇକ୍ଷ କଲା ହେମ ସଂପୁଟକ ବୋଲି କୁଚ ଗୋ ।
ଲୋଚନକୁ କହିଦେଲା ଏ ସାରଣୀ ଦୁଇ ।
ଇକ୍ଷ ସୁନା ହେବ ଏହା ବିକ କାହିଁପାଇଁ ଗୋ । ୨୮-୮

ଉଭୟ ପଦରେ ଶ୍ରୀକୃଷ୍ଣ ଗୋପୀମାନଙ୍କ ଅଙ୍ଗ-ପ୍ରତ୍ୟଙ୍ଗର ବର୍ଣ୍ଣନା ପାଇଁ କବି ପରମ୍ପରାରୁ ବିଭିନ୍ନ ଉପମାନର ପ୍ରୟୋଗ କରିଛନ୍ତି । ଏଥିରେ ଦୀନକୃଷ୍ଣ ବା ଉପେନ୍ଦ୍ର କାହାରି ନିଜସ୍ୱ ନାହିଁ । ଶ୍ରୀକୃଷ୍ଣଙ୍କ କହିବା ଭଙ୍ଗୀ ମଧ୍ୟ ସମାନ । କେବଳ ପଦ ମିଳାଇବା ପାଇଁ ବା ମୂଳରେ କ ବା ଇ ରଖିବା ପାଇଁ ଯେତିକି ଶ୍ରମ ଆବଶ୍ୟକ, ସେତିକ ପରିଶ୍ରମ କରି କବି ନିଜର ଦାୟିତ୍ୱ ନିର୍ବାହ କରିଛନ୍ତି ।

ରସକଲ୍ଲୋଳରୁ ଉପମାନ ସବୁର ବିଚାର କଲାବେଳେ ଆଉ ଗୋଟିଏ ପ୍ରଶ୍ନ ଆପେ ଆପେ ମନକୁ ଆସିଥାଏ । ରସକଲ୍ଲୋଳ ଓ ରସବିନୋଦର କବି ଜଣେ କି ଦୁଇଜଣ ? ଯଦି ଜଣେ, ତେବେ ରସକଲ୍ଲୋଳ, ଜଗମୋହନ ଛାନ୍ଦ ଓ ଦୃଷ୍ଟାନ୍ତ ଚଉତିଶା ପ୍ରଭୃତିରେ ଉପମାନର ସମତା ଥିବାପରି ରସବିନୋଦରେ ଉଲ୍ଲିଖିତ ଅନ୍ୟାନ୍ୟ ଗ୍ରନ୍ଥସବୁରେ ଏ ପ୍ରକାର ସମତା ଆଶା କରିବା ଅସ୍ୱାଭାବିକ ନୁହେଁ । ଉଦାହରଣ ପାଇଁ ନିମ୍ନରେ କେତୋଟି ଗ୍ରନ୍ଥର ତୁଳନାତ୍ମକ ଆଲୋଚନା କରାଯାଇଛି । ରସବିନୋଦ ରଚନାରେ ଉଦ୍ଦେଶ୍ୟ ବର୍ଣ୍ଣନା କରି କବି ଲେଖିଛନ୍ତି -

ନିତ୍ୟ ଘଟରେ ଯେତେ ସୁଖ । ଏହା ଶୁଣିଲେ ଯାଇ ଦୁଃଖ ।(ର.ବି. ପୃ-୪)
ନିତ୍ୟଘଟର ବର୍ଣ୍ଣନା ପ୍ରଦାନ କରିବା ଛଳରେ କବି ବିଭିନ୍ନ ଉପମାନର ପ୍ରୟୋଗ କରିଛନ୍ତି । ଗ୍ରନ୍ଥର ଆକାର ତୁଳନାରେ ଉପମାନର ସଂଖ୍ୟା ଅତି ଅଳ୍ପ। ଦଶହଜାର ପଦରେ ପ୍ରାୟ ଷାଠିଏଟି ଉପମାନ ବ୍ୟବହୃତ । ଏଥିରୁ ଉପମାନ ରୂପରେ ଚନ୍ଦ୍ର ବାରଥର, ସୂର୍ଯ୍ୟ ବାରଥର ଓ ସମୁଦ୍ର ଦଶଥର ପ୍ରଯୁକ୍ତ । ଅର୍ଥାତ୍ ଚନ୍ଦ୍ର, ସୂର୍ଯ୍ୟ ଓ ସମୁଦ୍ର ଅଧାରୁ ଅଧିକ ଭାଗ ନେଇଛନ୍ତି । ରସକଲ୍ଲୋଳରେ ତିନୋଟିଯାକ ଉପମାନ ଦେଖିବାକୁ ମିଳୁଥିଲେ ହେଁ ଓ ରସବିନୋଦ ପରି ରସକଲ୍ଲୋଳରେ କବି ଚନ୍ଦ୍ରକୁ ନିଜର ପ୍ରିୟ ଉପମାନ ରୂପେ ବ୍ୟବହାର କରିଥିଲେ ହେଁ, ରସକଲ୍ଲୋଳରୁ ମିଳୁଥିବା ଚନ୍ଦ୍ରର ବିଭିନ୍ନ ଦୃଶ୍ୟ ରସବିନୋଦରେ ନାହିଁ । ରସବିନୋଦକାର ଚନ୍ଦ୍ରକୁ କେବଳ ମୁଖର ଉପମାନ ରୂପେ ଗ୍ରହଣ କରିଛନ୍ତି । ସୂର୍ଯ୍ୟ ଓ ସମୁଦ୍ର ରସବିନୋଦର ପ୍ରିୟ ଉପମାନ ହେଲେ ହେଁ ରସକଲ୍ଲୋଳରେ ଏସବୁର ବ୍ୟବହାର ଅତି ନଗନ୍ୟ କହିଲେ ଚଳେ । କଣ୍ଠକୁ କମଳ, କୁଚକୁ କୁମ୍ଭ, ଅଳକାକୁ ଭ୍ରମର ମାଳିକା, ଦନ୍ତକୁ ମୁକ୍ତା ଓ ଓଷ୍ଠକୁ ଜବାକୁସୁମ କହିବା କେବଳ ଦୀନକୃଷ୍ଣ ବା ଉପେନ୍ଦ୍ରଙ୍କର ରୀତି ନୁହେଁ, ସେ ଯୁଗର ପ୍ରାୟ ସମସ୍ତ କବି ଏ ପ୍ରକାର ବ୍ୟବହାର କରିଛନ୍ତି । ତେଣୁ ଏସବୁରୁ ରସକଲ୍ଲୋଳ ଓ ରସବିନୋଦର କବିଙ୍କୁ ଏକ ବା ଅଭିନ୍ନ କହିବା ସମ୍ଭବ ନୁହେଁ ।

ପରଂପରାରୁ ଆସିଥିବା ଉପମାନ ଅପେକ୍ଷା କବିଙ୍କ ଅନୁଭବରୁ ଅସିଥିବା ଉପମାନ ସବୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଓ ସୁନ୍ଦର । 'ଅସଫଳ ଶର' 'ଲାଙ୍ଗେଣ କାନ୍ଦ କାନ୍ଦ ହୋଇ' ଫେରିଆସିଛି । ରାଜକନ୍ୟା ସମ୍ମୁଖରେ ସାଧାରଣ ନାରୀ ଦିହୁଡ଼ି ଆଗେ ନିକି ଦୀପ ପରି ନିଷ୍ପ୍ରଭ । ରାଜ୍ୟ ଓ ରାଜାପଣ ତ୍ୟାଗ କରିଥିବା ଲୋକର କ୍ରୋଧକୁ ଲକ୍ଷ୍ୟ କରି କବି କହିଛନ୍ତି, 'କୁକୁର ଯୁଦ୍ଧ ପ୍ରାୟେ କର ଦନ୍ତ ନିକୁଟି କିମ୍ବା ମର ।' (ର.ବି.ପୃ-୨୨୮) ସ୍ତ୍ରୀ ପୁରୁଷଠାରୁ କୌଣସି କଥା ଜାଣିବା ପାଇଁ ଇଳିରି ବିଳିରି ହୋଇ ଲାଗେ । ବ୍ୟତିବ୍ୟସ୍ତ କରେ । ଏକଥାକୁ ଲକ୍ଷ୍ୟ କରି କବି ଲେଖିଛନ୍ତି,

ବୋଇଲେ ସ୍ତ୍ରୀଙ୍କର ଲଟା । ଯେହ୍ନେ ଶିଆଳୀ କୋଳି ଲଟା ।(ର.ବି.ପୃ-୩୬୭)
କୌଣସି କଥା ବର୍ଣ୍ଣନା କଲାବେଳେ କିଛି ସାର ଅଂଶ ଛାଡ଼ି ହୋଇ ଗଲେ 'ହୁଗ୍ଧରୁ ସର ଲୁଚାଇବା ପରି' (ର.ବି.ପୃ-୩୬୮) ହୁଏ । ମାଂସକୁ ଟିକି ଟିକି କରି କାଟିଲେ ତାହା ମରିଚ ବା ତିଳ ପରି (ର.ବି.ପୃ-୩୯) ଦେଖାଯାଏ ।

ଏସବୁ ଉପମାନ ରସକଲ୍ଲୋଳରେ ନଥିଲେ ହେଁ କବିଙ୍କ ଅନୁଭବରୁ ଆସିଥିବା ଅନ୍ୟ ଅନେକ ଉପମାନ ରସକଲ୍ଲୋଳରେ ଅଛି । ତେଣୁ କୌଣସି ଉପମାନକୁ ରସବିନୋଦରେ ଦେଖି ରସକଲ୍ଲୋଳରେ ନ ପାଇଲେ ଦୀନକୃଷ୍ଣ ଯେ ଦୁଇଜଣ ହୋଇଯିବେ, ଏକଥା ମଧ୍ୟ କହି ହେଉନାହିଁ । ବିଶେଷ କରି ପ୍ରତିଭାବାନ କବି ଗୋଟିଏ ଉପମାନକୁ ବିଭିନ୍ନ ଗ୍ରନ୍ଥରେ ବାରମ୍ବାର ବ୍ୟବହାର ନ କରି ନୂଆ ନୂଆ ଉପମାନର ପ୍ରୟୋଗ କରିବାରେ ଆନନ୍ଦ ପାଇଥାଏ ।

ରସକଲ୍ଲୋଳ ଓ ରସବିନୋଦର ଉପମା-ରାଜ୍ୟ ଏକାବେଳକେ ସ୍ୱତନ୍ତ୍ର ବି ନୁହେଁ । କବିଙ୍କ ଭାଷାରେ ରସକଲ୍ଲୋଳ ହେଉଛି କ୍ଷୀରସିନ୍ଧୁ । ତାକୁ ଧୀଷଣା ରୂପୀ ମନ୍ଦର ପର୍ବତଦ୍ୱାରା ମନ୍ଥନ କଲେ ରସ ବା କବିତ୍ୱ ରସ ଜାତ ହୁଏ । କବି ଦୃଷ୍ଟିରେ କବିତ୍ୱ ରସ ଶାନ୍ତିଜଳ ପରି ଶାନ୍ତିପ୍ରଦାୟକ । ରସବିନୋଦର ମହତ୍ତ୍ୱ ବର୍ଣ୍ଣନା କଲାବେଳେ କବି ପ୍ରାୟ ଏକା ଉପମାନର ପ୍ରୟୋଗ କରିଛନ୍ତି । ଶାସ୍ତ୍ରରୂପୀ ଦଧି ଭାଣ୍ଡରେ ଜ୍ୟାନ୍ଦିତା ଖୁଆଖଣ୍ଡ ମେଲି, ମନ୍ଥନ କରି ଗୀତାର ସୃଷ୍ଟି କଲେ । ଗୀତ ଅମୃତ ସ୍ୱାଦ ଜଳ ପରି । ରସବିନୋଦ ହେଉଛି, ସେହି ସ୍ୱାଦ ଜଳ ।

ଆଉ ଗୋଟିଏ ପ୍ରମାଣ ହେଉଛି, ନାମରତ୍ନଗୀତା । ରସବିନୋଦରେ ନାମରତ୍ନ ଗୀତାର ଉଲ୍ଲେଖ ଅଛି । ଅଥଚ ନାମରତ୍ନଗୀତାରେ ଥିବା ଉପମାନ ସବୁ ରସବିନୋଦରେ ନାହିଁ କି ରସବିନୋଦରେ ବ୍ୟବହୃତ ଥିବା ଉପମାନ ସବୁ ନାମ ରତ୍ନଗୀତାରେ ନାହିଁ । ପରଂପରାରେ ଚଳୁଥିବା ଉପମାନ ସବୁକୁ ବାଦ ଦେଲେ ନାମରତ୍ନଗୀତାରେ ବ୍ୟବହୃତ ଉପମାନ ସବୁ କବିଙ୍କ ଅନୁଭବରୁ ସଂଗୃହୀତ । ମନୁଷ୍ୟ ସୁପଥ ତ୍ୟାଗ କରି କୁପଥର ଆଶ୍ରୟ ନେଲେ ଅମାର୍ଗରେ ଯାଇ ଅଣ୍ଟା ପରାସ ହେଲା ପରି ବା ବଣରେ ଯାଇ କଣ୍ଟା ମାଡ଼ିବା ପରି ହୁଏ । ନ ପାରିଲା ପ୍ରାଣୀ ଓ ପାରିଲା ପ୍ରାଣୀର ମୂଲ ସମାନ ନୁହେଁ । ସାନଲୋକର ତୁଳନା ବଡ଼ଲୋକ ସଙ୍ଗେ ହୋଇପାରେ ନାହିଁ । କବି ଏ ସବୁକୁ ମଣିଷର ଅସମାନ ପାଞ୍ଚ ଆଙ୍ଗୁଳି ସହ ତୁଳନା କରିଛନ୍ତି । ନାମରତ୍ନଗୀତାରେ ଏପରି ବହୁ ଉପମାନ ଅଛି ଯାହାକି କବିଙ୍କ ଅନ୍ୟାନ୍ୟ ଗ୍ରନ୍ଥରେ ନାହିଁ ।

ତେଣୁ କବିଙ୍କ ପ୍ରିୟ ଉପମାନ ସବୁକୁ କେନ୍ଦ୍ର କରି ଦୀନକୃଷ୍ଣ ଜଣେ ବା ଦୁଇଜଣ କହିବା ଉଚିତ ହେବ ନାହିଁ । ବିଷୟବସ୍ତୁର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଉପମାନ ସଂସାର ବି ପରିବର୍ତ୍ତିତ ହୋଇଯାଏ ।

## (୫)

# କୃଷ୍ଣ ଚରିତ କରୁଥିବ ଗାନ

କହେ ଦୀନକୃଷ୍ଣ ରସକଲ୍ଲୋଳ । କର ଜନେ ମନ ଏଥି ନିଶ୍ଚଳ ।
କିଛି ନୋହେ ଏ ଅନିତ୍ୟ ସଂସାର । କଥା ଏତେ ମାତ୍ରକ ଏଥିସାର ।
କୃଷ୍ଣରୂପ କରୁଥିବ ଧିଆନ । କୃଷ୍ଣ ଚରିତ କରୁଥିବ ଗାନ ।
କୃଷ୍ଣ କଥା ଶ୍ରବଣରେ ଶୁଣିବ । କୃଷ୍ଣ ବୋଲି ଜଗତକୁ ଜାଣିବ ।
କୃଷ୍ଣ କାର୍ଯ୍ୟେ ତତପର ହୋଇବ । କୃଷ୍ଣ ପାଇଁ ଭଲ ଦ୍ରବ୍ୟ ଥୋଇବ ।
କୃଷ୍ଣ-ଗୀତ ଶରଧାରେ ଗାଇବ । କୃଷ୍ଣ ଦାସକୁ ପ୍ରସନ୍ନ ହୋଇବ ।

(୧-୯୪ ରୁ ୯୯)

କୃଷ୍ଣ ବୋଲି ଜଗତକୁ ଜାଣି, ତାଙ୍କରି ସେବାରେ ମନ, ବଚନ, କର୍ତ୍ତବ୍ୟ ଭାବ ଭକ୍ତିରେ ଅର୍ପଣ କରି, ତାଙ୍କରି କାର୍ଯ୍ୟରେ ତତ୍‌ପର ହେବାର ବିଶ୍ୱାସ ଆମେ ହୁଏତ ରଖିପାରୁ, ନ ରଖିବି ପାରୁ । ଯଦି ରଖୁ, ତେବେ କବି ଦୀନକୃଷ୍ଣଙ୍କ ଭାବ ରାଜ୍ୟରେ ପ୍ରବେଶ କରିବା ପାଇଁ ବୁଦ୍ଧିଜୀବୀ ସାହିତ୍ୟିକର ଚିନ୍ତା ହୁଏତ କିଛି ସାହାଯ୍ୟ କରିପାରେ, କିନ୍ତୁ କବି ମନର ଯେଉଁ ଅନୁଭବ ବଳରେ କୃଷ୍ଣ-କଥାର ବର୍ଣ୍ଣନା, ନିର୍ମଳ କବିତ୍ୱ ରୂପେ, କୃଷ୍ଣ ଆଶ୍ରା ସୁବିଦ୍ୟା ରୂପେ ଓ କୃଷ୍ଣ କଥାରୁ ଉଦ୍ଭୂତ ରସ 'ରସ ମଧ୍ୟରେ ଏ ପୀୟୁଷ' ରୂପେ କଳ୍ପିତ ହୋଇ, କାବ୍ୟକୁ 'ରସକଲ୍ଲୋଳ' ନାମ ଦେଇଛି, ସେ କଥା ହୁଏତ ଆମେ ଆମର ପରିବେଶ ଦୃଷ୍ଟିରୁ ବୁଝି ପାରିବୁନି । ପୁଣି କୃଷ୍ଣ ଓ ଗୋପୀଙ୍କ କେଳି ବର୍ଣ୍ଣନା କରି କବିର ମନ ଯେଉଁଠି ସାତ୍ତ୍ୱିକ ଭାବନାରେ ପରିପ୍ଲୁତ, ଆମେ ସେଇଠି ଅଶ୍ଳୀଳତା ଦେଖି ମର୍ମାହତ ହେବୁ । କବିର ଭାବନା ଓ ଆମ ଭାବନା ଭିତରେ ରହି ଯାଇଥିବା ଏଇ ବିସ୍ତୃତ, ବ୍ୟବଧାନ ରସକଲ୍ଲୋଳ ତଥା ଶ୍ରୀକୃଷ୍ଣ ଚରିତ୍ର ଆଲୋଚନା କରିବା ଦିଗରେ ପ୍ରଧାନ ଅନ୍ତରାୟ, ତେଣୁ ପ୍ରସ୍ତୁତ ପ୍ରବନ୍ଧରେ କବି ମନର ସେଇ ବୈଷ୍ଣବ ଅନୁଭବ ନାହିଁ, ଏଇ ଆଲୋଚନା କେବଳ ଶାସ୍ତ୍ରଗତ ।

ଶ୍ରୀକୃଷ୍ଣ ଆମ ସମାଜର ପରିଚିତ ଦେବତା, ଅତି ପରିଚୟେ ଗୌରବ ନଷ୍ଟ ନ୍ୟାୟରେ କାବ୍ୟ ମଧ୍ୟରେ ଶ୍ରୀକୃଷ୍ଣ ଚରିତ୍ରର ବର୍ଣ୍ଣନା ଦେଖିବା କ୍ଷଣି, ଆମେ ସେଇ ନନ୍ଦସୁତ, ଗୋପବାଳକ, ଶ୍ରୀକୃଷ୍ଣ ଭାବି ପୃଷ୍ଠା ଓଲଟେଇ ଦେଉ ।

ଫଳରେ ସେଇ  ମୂଳ କୃଷ୍ଣ କଥା ସହ କବି ଜୀବନର ଅନୁଭବ, ଅନୁମାନ, କଳନା, କଳ୍ପନା ଓ ସାମାଜିକ ପରିବେଶ ମିଳି ଯେଉଁ ପରିବର୍ତ୍ତନ ଆଣିଥାଏ, ସେକଥା ଆମ ବିଚାରକୁ ଆସି ପାରେନି । ରସକଲ୍ଲୋଳରେ ଚିତ୍ରିତ ଶ୍ରୀକୃଷ୍ଣ ଚରିତ୍ର ଆଲୋଚନା ଅଙ୍କେ ବହୁତେ ସେଇ ଦୃଷ୍ଟିରୁ ଅବହେଳିତ ହୋଇ ଆସିଛି ।

ରସକଲ୍ଲୋଳ ମଧ୍ୟରେ ଶ୍ରୀକୃଷ୍ଣ ଚରିତ୍ର ଦୁଇଧାରାରେ ପ୍ରକାଶିତ । ପ୍ରଥମଟି ହେଉଛି, କାବ୍ୟର ସାବଲୀଳ ବର୍ଣ୍ଣନା ମଧରେ ଓ ଦ୍ୱିତୀୟଟି, କବି ହୃଦୟରୁ ଉଦ୍ଭୁତ୍ ସ୍ନେହ ଭାବରେ ପ୍ରକାଶିତ କର୍ମ, ବର୍ଣ୍ଣ, ମଣ୍ଡନ, ଆଭରଣ ଓ ମହିମା ମଧରେ ଚିତ୍ରିତ । ପ୍ରତ୍ୟେକଟି ନିଜ ମଧରେ ସମ୍ପୂର୍ଣ୍ଣ ହେଲେ ହେଁ ପରସ୍ପର ପ୍ରତି ଅପେକ୍ଷା ରଖିଥାଏ । କାବ୍ୟ ମଧରେ ଶ୍ରୀକୃଷ୍ଣ ଚରିତ୍ରର ବର୍ଣ୍ଣନା ଏଇ ଦୁଇ ଧାରାରୁ ଉପାଦାନ ନେଇ ଅଙ୍ଗକୁ ପୁଷ୍ଟ କରିଛି । ଶ୍ରୀକୃଷ୍ଣ ଜନ୍ମର ପୂର୍ବ କଥା ବର୍ଣ୍ଣନା କରିବାକୁ ଯାଇ ଦୀନକୃଷ୍ଣ କୁହନ୍ତି ଯେ ନୀଳାଚଳପତି ଜଗନ୍ନାଥ କଂସଅନ୍ତକ ରୂପେ ଜନ୍ମଗ୍ରହଣ କରିବାକୁ ଇଚ୍ଛା କରି କପଟେ ପଶୁପାଳକ ବୋଲାଇଲେ । ଏଇ ଜଗନ୍ନାଥଙ୍କର ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ କବି କୁହନ୍ତି- "କଚ୍ଛପ୍ ମତ୍ସାଦି ଅବତାର ଯେତେକ । କରିବାକୁ ଜାତ ଜଗନ୍ନାଥ ଜନକ ।" ଏଥିରୁ ଜଗନ୍ନାଥଙ୍କୁ ଅବତାରୀ ରୂପେ ଗ୍ରହଣ କରିଥିବା ଭାବନା ସ୍ପଷ୍ଟ । ସେଇ ଜଗନ୍ନାଥ କୃଷ୍ଣରୂପରେ ଜନ୍ମଗ୍ରହଣ କରନ୍ତି । ଦିବାକର ଦାସଙ୍କ 'ତହୁଁ କଳାଏ ନନ୍ଦ ବଳା' ଭାବନା ଏଥିରେ ନାହିଁ ।  କଚ୍ଛପ ମତ୍ସାଦି ଅବତାର ଗଣନାରେ କବି ପ୍ରଚଳିତ ଦଶାବତାରକୁ ହିଁ ଗ୍ରହଣ କରିଥିବା ବିଶେଷ ସମ୍ଭବ । ଏଇ ଗଣନା ଭିତରେ ଶ୍ରୀକୃଷ୍ଣଙ୍କର ସ୍ଥାନ ନାହିଁ । ଭାଗବତରେ ଓ ଅନ୍ୟ କେତେକ ପୁରାଣରେ ଦଶାବତାର ଅତିରିକ୍ତ ଅନ୍ୟ ଗୋଟିଏ ଗଣନା ଦେଖିବାକୁ ମିଳେ ।  ସେଥିରେ ଶ୍ରୀକୃଷ୍ଣଙ୍କୁ "ଅଂଶେଣା ବତୀର୍ଣ୍ଣସ୍ୟ ବିଷ୍ଣୋଃ" କୁହାଯାଇଛି ।  କଚ୍ଛପ  ମତ୍ସାଦି ଅବତାର ଯେତେକ ପଂକ୍ତିକୁ ସେଇ ବିସ୍ତୃତ ଗଣନା ଅନୁଯାୟୀ ଅର୍ଥ କଲେ ରସକଲ୍ଲୋଳର ଶ୍ରୀକୃଷ୍ଣ ହୁଏତ ଅଂଶ ଅବତାର ରୂପେ ଗଣାଯିବେ । କିନ୍ତୁ ରସକଲ୍ଲୋଳର କେତୋଟି ପଂକ୍ତି, ହାର ପ୍ରତିକୂଳ ମତ ପୋଷଣ କରେ । ଯେପରି କୁଶକେତୁଙ୍କ ପ୍ରାର୍ଥନାରେ ଜଗନ୍ନାଥଙ୍କ ଉତ୍ତର ହେଉଛି ଯଦୁକୂଳେ ଯାଇ ଆମ୍ଭେ ଜାତ ହେବୁ ପୁଣି-

କିଛି ଦିନ ଅନ୍ତେ ହରି /କୋଟି କାମ ରୂପ ଧରି
ରହିଲେ ଯାଇ ଦେବକୀ ଦେବୀ ଗର୍ଭରେ ।

ଏଇ ସବୁ ପଂକ୍ତିରେ ଥିବା 'ଆମ୍ଭେ' ଓ 'ହରି' ଶବ୍ଦ ଜଗନ୍ନାଥଙ୍କ ପାଇଁ ବ୍ୟବହୃତ । ତେଣୁ ନିଜେ ଜଗନ୍ନାଥ ହେଉଛନ୍ତି କୋଟି କାମରୂପଧାରୀ ଶ୍ରୀକୃଷ୍ଣ । ଜଗନ୍ନାଥ କୃଷ୍ଣରୂପରେ ଅବତାରିତ ନୁହନ୍ତି । ତୁଳନାରେ ଜୀବ ଗୋସ୍ୱାମୀଙ୍କ ଭଗବଦ୍ ଓ ଶ୍ରୀକୃଷ୍ଣ ଆଲୋଚନାକୁ ନିଆଯାଉ । ଜୀବ ଗୋସ୍ୱାମୀ ବିଭିନ୍ନ ଅବତାରର ବର୍ଣ୍ଣନା କରୁଥିବା ବେଳେ ବିଂଶ ସ୍ଥାନରେ କୃଷ୍ଣଙ୍କର ବିଚାରକରି ଲେଖିଛନ୍ତି, 'ଏତେଚାଂଶ କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍' ଏମାନେ ଅର୍ଥାତ୍ ପୂର୍ବ ଅବତାର ସବୁ ପୁରୁଷର ଅଂଶ ବା କଳା । କିନ୍ତୁ ଶ୍ରୀକୃଷ୍ଣ ହେଉଛନ୍ତି ନିଜେ ଭଗବତ । ବ୍ୟାଖ୍ୟାକାର ଏହି ପଂକ୍ତିରେ କୃଷ୍ଣ ଓ ଭଗବତ ଉଭୟ ଶବ୍ଦ ଦେଖି କୁହନ୍ତି, କୃଷ୍ଣଙ୍କ ଉଲ୍ଲେଖ ବିନା ଭାଗବତର ଉଲ୍ଲେଖ ହୁଏନି, କାରଣ 'କୃଷ୍ଣସ୍ୟୈବ ଭଗଗତ୍ତ୍ୱ ଲକ୍ଷଣୋ ଧର୍ମଃ ସାଧ୍ୟତେ, ନ ତୁ ଭଗବତଃ କୃଷ୍ଣତ୍ୱମ୍' ଅର୍ଥାତ୍ କୃଷ୍ଣ ହେଉଚନ୍ତି ଭଗବତ, କିନ୍ତୁ ଭଗବତ କୃଷ୍ଣରୂପରେ ଅବତାରିତ ନୁହେଁ । ଜଗନ୍ନାଥ ଶ୍ରୀକୃଷ୍ଣ ସତ, କିନ୍ତୁ ଶ୍ରୀକୃଷ୍ଣ ଜଗନ୍ନାଥ କି ନା ଏହାର ସାକ୍ଷ୍ୟ କେବଳ ରସକଲ୍ଲୋଳ ହିଁ ଦେଇ ପାରିବ । କାବ୍ୟରେ ଦେଖା ଯାଉଛି, କବି କୃଷ୍ଣ କଥା କହୁଁ କହୁଁ ନୀଳାଚଳ ଧାମର ଲୀଳା ଯେମିତି ବାରମ୍ବାର ସ୍ମରଣ କରିଛନ୍ତି, ନୀଳାଚଳ ଧାମର ବର୍ଣ୍ଣନା କରୁ କରୁ ପୁଣି ସେମିତି କୃଷ୍ଣ କଥାକୁ ଫେରି ଆସିଛନ୍ତି । କୃଷ୍ଣ ଓ ଜଗନ୍ନାଥ ମହିମା ମଧରେ କବି କୌଣସି ପାର୍ଥକ୍ୟ ରଖିଥିବା ଜଣା ପଡ଼େନି । ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ଅଭେଦତ୍ୱ, ତାଙ୍କ ରୂପ ବର୍ଣ୍ଣନାରେ ଆହୁରି ସ୍ପଷ୍ଟ । ପ୍ରଥମ ଛାନ୍ଦରେ ଜଗନ୍ନାଥଙ୍କ ରୂପ ବର୍ଣ୍ଣନା ଓ ଦ୍ୱିତୀୟ ଛାନ୍ଦର ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା ଭିତରେ କୌଣସି ପାର୍ଥକ୍ୟ ଥିବା ପରି ଜଣାପଡ଼େନି ।

ପ୍ରଥମ ଛାନ୍ଦର ଜଗନ୍ନାଥ :

(କ) କରେ ଶଙ୍ଖଚକ୍ର

(ଖ) କମ୍ବୁକଣ୍ଠେ କଉସ୍ତୁଭ ମଣି

(ଗ) ପୀତାମ୍ବର-ଧାରକ

(ଘ) କର୍ଣ୍ଣେ ମକର କୁଣ୍ଡଳ

ଦ୍ୱିତୀୟ ଛାନ୍ଦର ଶ୍ରୀକୃଷ୍ଣ :

(କ) କରେ ଶଙ୍ଖଚକ୍ର

(ଖ) କଣ୍ଠେ କଉସ୍ତୁଭ ମଣି

(ଗ) କଟିତଟେ ପୀତ ବସନ

(ଘ) କର୍ଣ୍ଣେ ମକର କୁଣ୍ଡଳ

ଅବଶ୍ୟ ଶ୍ରୀକୃଷ୍ଣ ରୂପ ବର୍ଣ୍ଣନାରେ ତାଙ୍କର ମାୟାରୂପର ବର୍ଣ୍ଣନା ଅଛି । ଦୁଇଟି ବର୍ଣ୍ଣନା ମଧ୍ୟରେ ସାମ୍ୟଥିବା ହେତୁ ଏଇ ମାୟା ରୂପ ହେଉଛି ଶ୍ରୀକୃଷ୍ଣଙ୍କର ଜଗନ୍ନାଥ ରୂପ । ତେଣୁ ଜଗନ୍ନାଥ ଯେମିତି ଶ୍ରୀକୃଷ୍ଣ ହୁଅନ୍ତି, ଶ୍ରୀକୃଷ୍ଣ ମଧ ସେହିପରି ଜଗନ୍ନାଥ ହେବାରେ କୌଣସି ବାଧା ନାହିଁ ।

କାରଣରୁ କାର୍ଯ୍ୟର ବିଚାର ହୋଇଥାଏ । ଶ୍ରୀକୃଷ୍ଣ ଓ ଅନ୍ୟାନ୍ୟ ଅବତାର ମାନଙ୍କ ମଧ୍ୟରେ ପାର୍ଥକ୍ୟ ଦର୍ଶାଇ ଜୀବ ଗୋସ୍ୱାମୀ କୁହନ୍ତି ଯେ ଅବତାରମାନେ କେବଳ ପୃଥିବୀର ଭାଗ ଲାଘବ କରନ୍ତି, ଶ୍ରୀକୃଷ୍ଣଙ୍କ ପାଇଁ ଏହା ପ୍ରଯୁଜ୍ୟ ନୁହେଁ । ଶ୍ରୀକୃଷ୍ଣଙ୍କୁ ଅବତାର ଗଣନାରେ ସ୍ଥାନ ଦେବା ଅର୍ଥ ହେଉଛି ଯେ ସେ 'ସ୍ୱରୂପସ୍ଥ ଇବ'ରେ ମଧ "କଦାଚିତ ସକଳ ଲୋକ ଦୃଶ୍ୟଃ' ଓ 'ପରିଜନ-ବିଶେଷଣାମ ଆନନ୍ଦ ବିଶେଷ ଚମତ୍କାରୟ' ଆବିର୍ଭୂତ ହୁଅନ୍ତି । ଧରା ବୈଭବ ସମ୍ପାଦନ ପାଇଁ ତାଙ୍କର ଆବିର୍ଭାବ ଆବଶ୍ୟକ ହୁଏ । 'ପ୍ରାକୃତ ବୈଭବେ ଅବତରଣମ୍', ରସକଲ୍ଲୋଳର କବି ଜଗନ୍ନାଥଙ୍କ ଇଚ୍ଛାରେ କଂସଅନ୍ତକ ହେବା ଓ 'କପଟେ ପଶୁପାଳକ ବୋଲାଇବା' ପ୍ରସଙ୍ଗର ଉଲ୍ଲେଖ କରିଛନ୍ତି । ଧରଣୀ ସୁନ୍ଦରୀର ବିନୀତ ନିବେଦନରେ ଯେତେବେଳେ କୁଶକେତୁ ଅବନୀର ବ୍ୟଥା ନିବାରଣ ପାଇଁ ଜଗନ୍ନାଥଙ୍କୁ ଅନୁରୋଧ କରନ୍ତି ସେତେବେଳେ ମଧ ଜଗନ୍ନାଥଙ୍କୁ ଉତ୍ତରରେ ସେଇ ଦୁଇଟି କଥା, 'କଂସ ପ୍ରାଣ ଘେନିମା ପାଇଁ' ଓ "କରିବାକୁ ଗୋପକେଳି ଆମ୍ଭର ମନ' ପ୍ରକାଶ ପାଇଛି । ଏଥିରେ ପୃଥିବୀର ଭାଗ, ତଥା ଧରା ବୈଭବ ଉଭୟ କାର୍ଯ୍ୟ ସମାହିତ ହୁଏ । ବୈଷ୍ଣବ ବିଚାରରେ ମହାକାଳଙ୍କୁ ସାର୍ବଭୌମ ସ୍ୱୀକାର କରୁଥିବା ଗ୍ରନ୍ଥ ସବୁକୁ ତାମସିକ ପର୍ଯ୍ୟାୟଭୁକ୍ତ କରାଯାଇଛି । ରସକଲ୍ଲୋଳରେ ଶ୍ରୀକୃଷ୍ଣ ଚରିତ୍ର ଉପରେ କାଳର ଅପ୍ରତିହତ ପ୍ରଭାବ କବି ଜୀବନର ଅନୁଭୂତିରୁ ଆସିଥିବା, ପୂର୍ବେ ଆଲୋଚିତ । କଉତୁକ ଶବ୍ଦ ଶ୍ରୀକୃଷ୍ଣ ଲୀଳା ଅର୍ଥରେ ବ୍ୟବହୃତ, ରସକଲ୍ଲୋଳ କାବ୍ୟରେ ଶ୍ରୀକୃଷ୍ଣ ଯାହା କରୁଛନ୍ତି, ତାହା କେବଳ କଉତୁକରେ କରନ୍ତି ନୁହେଁ, ସେ ସବୁ କାର୍ଯ୍ୟ ହେଉଛି 'କଉତୁକ' । ରସକଲ୍ଲୋଳରେ କେତେ କଉତୁକ ଅଛନ୍ତି ଏଥି ପଂକ୍ତି କାବ୍ୟରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ବିଭିନ୍ନ ଲୀଳା ଓ କରିବେ କେତେ କଉତୁକରେ କାବ୍ୟ ବହିର୍ଭୂତ ଶ୍ରୀକୃଷ୍ଣଙ୍କ ପରବର୍ତ୍ତୀ ଲୀଳା ବର୍ଣ୍ଣିତ ।

ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ରଥ କହିଅଛନ୍ତି ରସକଲ୍ଲୋଳର ବିଷୟ ବା କଥା ପ୍ରସଙ୍ଗ ଆଲୋଚନାକରି ତାହାକୁ ପ୍ରଧାନତଃ ତିନି ଭାଗରେ ବିଭକ୍ତ କରା ଯାଇପାରେ- ବାଲ୍ୟ, ଯୌବନ ଏବଂ ପ୍ରୌଢ଼ାବସ୍ଥା । ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କର ଯୌବନ ଓ ପ୍ରୌଢ଼ାବସ୍ଥାର ବର୍ଣ୍ଣନା ନାହିଁ । ରସକଲ୍ଲୋଳର ପ୍ରାଚୀ-ସମ୍ପାଦନାର ସମ୍ପାଦକ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଭାଗବତରୁ ବିଭିନ୍ନ ଦୃଷ୍ଟାନ୍ତ ଦେଇ ରଥଙ୍କ ଉକ୍ତି ଯେ ସମ୍ପୂର୍ଣ୍ଣ ଭ୍ରମାତ୍ମକ ତାହା ଦର୍ଶାଇଛନ୍ତି । ତାଙ୍କ ମତରେ ରସକଲ୍ଲୋଳରେ କୃଷ୍ଣଚନ୍ଦ୍ରଙ୍କର ଯେପରି ମୁଗ୍ଧତା, ସରଳତା, ମାଧୁର୍ଯ୍ୟ ଓ ପ୍ରେମପ୍ରବଣତା ପରିସ୍ଫୁଟ ସେହିପରି ଓଜସ୍ୱୀତା, କର୍ମକୁଶଳତା, ବୀରତ୍ୱ ଓ ଚାତୁର୍ଯ୍ୟ ପ୍ରକାଶମାନ । ଏହି କାବ୍ୟରେ କୌମାର, ପୌଗଣ୍ଡ ଓ କୈଶୋର ବୟସ ବର୍ଣ୍ଣିତ ହୋଇଅଛି । ବତ୍ସଳ ରସରେ କୌମାର, ସଖ୍ୟ ରସରେ ପୌଗଣ୍ଡ ଓ ମଧୁର (ଶୃଙ୍ଗାର) ରସରେ ୧୫ ବର୍ଷ ପର୍ଯ୍ୟନ୍ତ କୈଶୋର, ଉପ୍ରରେ ୧୬ ବର୍ଷଠାରୁ ଯୌବନ । ପୁତନା, ଶକଟା, ତୃଣାବର୍ତ୍ତ ବଧ ଓ ଯାମଳାଅର୍ଜୁନ ଭଞ୍ଜନ ପ୍ରଭୃତି କୌମାର ଅବସ୍ଥାରେ ହୋଇଅଛି । ବତ୍ସା, ବକା, ଅଘାସୁର ବଧ, ଧେନୁକ ବଧ, କାଳୀୟ ଦମନ, ଦାବାଗ୍ନି ଭକ୍ଷଣ, ପ୍ରଲମ୍ବା ବଧ ପ୍ରଭୃତି ପୌଗଣ୍ଡ ଅବସ୍ଥାରେ ଘଟିଅଛି । କୈଶୋର ଅବସ୍ଥାରେ ଅନ୍ୟାନ୍ୟ ଘଟଣା ଅର୍ଥାତ୍ ରାସଲୀଳା ପ୍ରଭୃତି ଓ ମଥୁରାଲୀଳା । କିନ୍ତୁ କବି ଦୀନକୃଷ୍ଣ ରସକଲ୍ଲୋଳରେ ବର୍ଣ୍ଣିତ ଶ୍ରୀକୃଷ୍ଣଲୀଳାକୁ ସ୍ଥୂଳତଃ ଦୁଇ ଭାଗରେ ବିଭକ୍ତ କରନ୍ତି- ବାଳକ ଲୀଳା ଓ କିଶୋର ଲୀଳା । କୋଟି ବ୍ରହ୍ମାଣ୍ଡରେ ଅନୁପମ, ସୁନ୍ଦର ଶ୍ରୀକୃଷ୍ଣଙ୍କୁ ଦେଖି ବିମୋହିତା ମଥୁରାନାରୀ କହିଛନ୍ତି -

କାଖେ କୋଳେ କରି ନେଲେ ବାଳକ ଭାବ
କିଶୋର ବେଳେ ବିଚ୍ଛେଦ କଲା ଦଇବ । ୨୬-୭

କବି ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କ ବାଳଲୀଳାରେ ପୁତନା ବଧ, ବତ୍ସାସୁର, ବକାସୁର, ଅଘା, ତାଳବନପାଳ, ପ୍ରଲମ୍ବା, ଦାବାନଳ ପାନ, କୁଶକେତୁ ମନ ହରଣ, ଦେବରାଜ ଗର୍ବ ଖର୍ବ, ପ୍ରଭୃତି ଘଟନାର ସମାବେଶ କରି କୌମାର ଓ ପୌଗଣ୍ଡ ଅବସ୍ଥାର ସମନ୍ୱୟ ସାଧନ କରିଛନ୍ତି । ପୁଣି ସଖାମାନଙ୍କ ସହ (ବନଭ୍ରମଣି ପୌଗଣ୍ଡର ସଖ୍ୟରସ), କାଳୀୟଦଳନ, ରାସଲୀଳା ଓ ମଥୁରାଲୀଳା ପ୍ରଭୃତି ଘଟଣାକୁ କେବଳ କିଶୋର ଲୀଳାର ଅନ୍ତର୍ଭୁକ୍ତ କରିଛନ୍ତି । ଛାନ୍ଦ

ଅନୁଯାୟୀ ବିଭାଗ କଲେ ରସକଲ୍ଲୋଳର ଷଷ୍ଠ ଛାନ୍ଦ ପର୍ଯ୍ୟନ୍ତ ବାଳଲୀଳା ଓ ଅନ୍ୟାନ୍ୟ ସମସ୍ତ ଛାନ୍ଦ କିଶୋର ଲୀଳାର ଅନ୍ତର୍ଗତ । ରସକଲ୍ଲୋଳ ମୁଖ୍ୟଭାବରେ ବାଳଲୀଳା ଓ କିଶୋରଲୀଳା ଭାଗରେ ବିଭକ୍ତ ହୋଇଥିଲେ ହେଁ, ଏଥିରେ ଶ୍ରୀକୃଷ୍ଣଙ୍କ ଆଦ୍ୟ, ମଧ ଓ ଶେଷ କୌମାର, ଆଦ୍ୟ, ମଧ୍ୟ ଓ ଶେଷ ପୌଗଣ୍ଡ, ପୁଣି ଆଦ୍ୟ, ମଧ ଓ ଶେଷ କୈଶୋର ଅବସ୍ଥାର ରୂପ ବର୍ଣ୍ଣନା, ଚେଷ୍ଟା ପ୍ରସାଧନ, ବସନ, ଯୁଗ ପ୍ରଭୃତିର ବର୍ଣ୍ଣନା ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ ଶ୍ରୀକୃଷ୍ଣଙ୍କ ଆଦ୍ୟ କୌମାରର ବର୍ଣ୍ଣନାକୁ ଗ୍ରହଣ କରାଯାଇ ପାରେ । ଏହା ହେଉଛି ଶ୍ରୀକୃଷ୍ଣଙ୍କ ବାଳ-ମୁକୁନ୍ଦ-ମୂର୍ତ୍ତି ।

କର ଅରବିନ୍ଦେ ଧର ପାଦ କଞ୍ଜ
କଞ୍ଜ ନେତ୍ର ମଣ୍ଡିଛନ୍ତି ପାଦ କଞ୍ଜ ।

ଲଘୁ ଭାଗବତାମୃତରେ ସମାନ୍ତରାଳ ବର୍ଣ୍ଣନା ହେଉଛି-

ମୁଖ ପୁଟକୃତ ପାଦାମୋତ୍କୃଷ୍ଣ ମୂର୍ଦ୍ଧ ।

ପୁଣି ମଧ୍ୟ କୌମାର ବର୍ଣ୍ଣନାର ତୁଳନା କରାଯାଉ । ମଧ କୌମାରର ଲକ୍ଷଣ ସ୍ୱରୂପ, ନେତ୍ର ପ୍ରାନ୍ତରେ କେଶର ଅଗ୍ରଭାଗ ପତନ, ଈଷତ୍ ନଗ୍ନତା ଅର୍ଥାତ୍ କେତେବେଳେ ବସ୍ତ୍ର ଗ୍ରହଣ ଓ କେତେବେଳେ ଉଲଗ୍ନ, ଛିଦ୍ରକର୍ଣ୍ଣ, ମଧୁର ବାକ୍ୟ, କିଞ୍ଚିତ-ଗମନ ପ୍ରଭୃତିକୁ ଗ୍ରହଣ କରାଯାଇ ଥାଏ । ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କର ଏଇ କୋମଳ ବୟସ ଅତି ସୁନ୍ଦର ଭାବରେ ପ୍ରକାଶିତ ।

କେତେହେଁ ଦିନେ ଚାଲିଲେ ହରି, /କରି ଆନନ୍ଦ ଜାତ ଗୋପପୁରୀ ।
କରେ ଧରି ନବନୀତ ସମ୍ବଳ / କରୁଛନ୍ତି କଳେ କଳେ କବଳ ।
କପାଳେ ନୀଳ ଅଳକ କୁଟଳ / କମଳ ଶୋଭା ଯେହ୍ନେ ଶଇବାଳେ ।
କଳା କଳେବର ଧୂଳି ଧୂସର /କଟିରେ କିଙ୍କିଣୀ ନାହିଁ ଅମ୍ବର ।
କାକର ପ୍ରାୟେ ଝାଳ ବିନ୍ଦୁ ବିନ୍ଦୁ /କଳିତ କରିଛି ଶ୍ରୀମୁଖ ଇନ୍ଦୁ ।

+ + +

କନକ ନୂପୁର ଚରଣେ ଗଜେ /କଟି କିଙ୍କଣୀ କିରି କିଣି ବାଜେ ।

ତୁଳନାରେ ଲଘୁ ଭାଗବତାମୃତର ପଂକ୍ତିଟି ହେଉଛି;-

କଣିତ କନକ କିଂକିଣୀ କଳାପଂସ୍ମିତ ମୁଖ
ମୁକ୍ତକ ନାସିକା ପ୍ରମୁକ୍ତଂ ।

କରଧୃତ ନବନୀତ ପିଣ୍ଡମଗ୍ରେ
ତନୟ ମବେକ୍ଷ୍ୟ ନନ୍ଦନ ନନ୍ଦପତ୍ନୀ ।

ବୈଷ୍ଣବ ସାହିତ୍ୟରେ ଏପରି ଉଦାହରଣର ବିରାମ ହୁଏ ତ ନାହିଁ । ଏ ବିଷୟରେ ସବୁ ବୈଷ୍ଣବଙ୍କର କିଛି କିଛି କହିବାର ଅଛି । ଏପରି ସ୍ଥଳେ ଦୀନକୃଷ୍ଣଙ୍କ ଉକ୍ତି ଅନୁଯାୟୀ କାବ୍ୟ ବସ୍ତୁକୁ ଦୁଇ ଭାଗରେ ବିଭକ୍ତ କରିବା ଶ୍ରେୟସ୍କର ।

ବୈଷ୍ଣବ ଶାସ୍ତ୍ରରେ ଶ୍ରୀକୃଷ୍ଣଙ୍କୁ ଶ୍ରେଷ୍ଠ ସୌନ୍ଦର୍ଯ୍ୟର ମୂର୍ତ୍ତିବନ୍ତ ଅବତାର ରୂପେ ଗ୍ରହଣ କରାଯାଇଛି । ଶ୍ରୀକୃଷ୍ଣଙ୍କ ଶରୀର 'ସନ୍ନିବେଶୋ ଯଥୋଚିତଂ' ତେଣୁ ଏଥିରେ ସୌନ୍ଦର୍ଯ୍ୟର କୌଣସି ତ୍ରୁଟି ଦେଖାଯାଏନି । କବି ଦୀନକୃଷ୍ଣ ବୈଷ୍ଣବ ପରଂପରାର ଏଇ ଆଦର୍ଶ ନିଜ କାବ୍ୟରେ ଅକ୍ଷୁଣ୍ଣ ରଖି ଅଛନ୍ତି । ତାଙ୍କର ଶ୍ରୀକୃଷ୍ଣ ହେଉଛନ୍ତି, "କୋଟି କନ୍ଦର୍ପ ଲାବଣ୍ୟ ବେଶ, କୋଟି କାମରୂପ ଧାରୀ, ସୁନ୍ଦର ଶିରୀରଙ୍ଗ" (୨-୧୧) ଓ ତ୍ରୈଲୋକ ଶୋଭା,ନଖରୁ ମୁଖସରିକି (୨୬-୧୪) । ଶ୍ରୀକୃଷ୍ଣଙ୍କ ସମସ୍ତ ଅଙ୍ଗ କେବଳ ଶ୍ରୀକୃଷ୍ଣଙ୍କ ସଦୃଶ । 'ଏହାଙ୍କ ପରାଯେ ଏହି ।' ଇନ୍ଦ୍ର, ରୁଦ୍ର, ଚନ୍ଦ୍ର କେହି ଏହାଙ୍କୁ ସରି ନୁହନ୍ତି । କୋଟି ବ୍ରହ୍ମାଣ୍ଡରେ ଏ କେବଳ ଏହାଙ୍କ ଉପମା । ଦୀନକୃଷ୍ଣଙ୍କ କଳ୍ପନାରେ ଶ୍ରୀକୃଷ୍ଣଙ୍କ ଏହିଂ ଅପୂର୍ବ ରୂପ ସ୍ଥାନ ପାଇଥିଲେ ହେଁ କବି ବିଶେଷ କରି ଶ୍ରୀକୃଷ୍ଣଙ୍କ କଳଙ୍କରହିତ କଳାକରଜିତ ସୁନ୍ଦର ମୁଖମଣ୍ଡଳ, କମଳଦଳ ନୟନ, କମଳ ଚରଣ ଓ କୁଟିଳ-ନୀଳ-ଚୂର୍ଣ୍ଣ କୁନ୍ତଳ ପ୍ରତି ଆକୃଷ୍ଟ ହୋଇଛନ୍ତି ।

ଶ୍ରୀକୃଷ୍ଣଙ୍କ ଅଙ୍ଗ-ବର୍ଣ୍ଣ ବୈଷ୍ଣବ ସମାଲୋଚକର ଅନ୍ୟ ଗୋଟିଏ ପ୍ରଧାନ ଆଲୋଚ୍ୟ ବସ୍ତୁ । ସାଧାରଣତଃ ଶ୍ରୀକୃଷ୍ଣଙ୍କ ବର୍ଣ୍ଣକୁ ବାରିଦ ସହ ତୁଳନା କରାଯାଇଥାଏ । ଏଥିରେ ଦୁଇଟି ରଙ୍ଗ ନିହିତ, ତାହା ହେଉଛି, ନୀଳ ଓ କଳା । ଜୀବ ଗୋସ୍ୱାମୀଙ୍କ ମତରେ ଶ୍ରୀକୃଷ୍ଣଙ୍କ ବର୍ଣ୍ଣ ହେଉଛି 'ଅତସୀ କୁସୁମ ଶ୍ୟାମ' । ଏଥିରେ ତିନୋଟି ରଙ୍ଗ ଅଛି- ଧଳା, ପୀତ ଓ ସବୁଜ । ଦୀନକୃଷ୍ଣ ଶ୍ରୀକୃଷ୍ଣଙ୍କ କଳା ରୂପର ତୁଳନା ପାଇଁ ବହୁ କଳାବସ୍ତୁର ନିର୍ବାଚନ କରିଛନ୍ତି, କିନ୍ତୁ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ନିକଟରେ ସେ ସବୁ ହତପ୍ରଭ । ଫଳରେ କବିମାନଙ୍କ ବଚନ ମିଛ ହୋଇ ଯାଇଛି । କବିଙ୍କ ଭାଷାରେ-

କଳା କମଳ କଜ୍ଜଳ ତମାଳ
କଳାମେଘ ମଘବା-ମଣିମାଳ ।       ୩-୪୬

କଳିନ୍ଦ କନ୍ୟାକମଳ ଅତସୀ,
କୁହୁନିଶି ନିବିଡ଼ ତମରାଶି । ୩-୪୭
କଳା ମଧ୍ୟେ ଏ ହୋଇଥିଲେ ଗୁରୁ,
କୁମାର ରୂପ ଦେଖି ନଥିବାରୁ । ୩-୪୮

ପୁଣି ଅନ୍ୟ ସ୍ଥଳରେ-

କି ଉପମା ଦେବା ସେ ଶ୍ରୀ ଅଙ୍ଗ ଛଟାକୁ
କଳା ମଧ୍ୟେ, ମନ ନ ବଳଇ ଗୋଟାକୁ । ୨୫-୧୫

ଯେଉଁମାନେ ଶ୍ରୀକୃଷ୍ଣଙ୍କ ଏଇ ଅନୁପମ ସୁନ୍ଦର ବର୍ଣ୍ଣକୁ ଉପମା ଦେବାକୁ ସାହସ କରିଛନ୍ତି, ସେମାନଙ୍କର ଭାବନା ଭ୍ରମାତ୍ମକ । କବି କହିଛନ୍ତି-

କବି ଭ୍ରମହୋଇ ଯାହା କରନ୍ତି ଲକ୍ଷ
କଳେ ଆଜି ପୋଏ ତାଙ୍କ ବଚନ ମିଛ ।
କହି ବସିଲେ ନଖରୁ ମୁଖ ସରିକି
କେ କେତେ ନିନ୍ଦା ପାଇବେ ଛାରି ପାରିକି ।

ଶ୍ରୀକୃଷ୍ଣଙ୍କ ବର୍ଣ୍ଣର ପରିକଳ୍ପନା ପାଇଁ ମିଳୁଥିବା ଉପମାନ ସବୁ କବି ଦୀନକୃଷ୍ଣଙ୍କ ମନପୂତ ନ ହେଲେ ହେଁ ଶ୍ରୀକୃଷ୍ଣ ଯେଉଁ ବର୍ଣ୍ଣରେ କବିଙ୍କୁ ମୁଗ୍ଧ କରିଛନ୍ତି, ତାହା ହେଉଛି, ଘନ ବା ନବଘନ ଶ୍ୟାମଳିଆ, ମେଘବରନ ବା ମେଘବର୍ଣ୍ଣ କୃଷ୍ଣ ଓ କଜ୍ଜ୍ୱଳ କଳା ବା ଅଞ୍ଜନ ବରନ କେଶବ ।

ସ୍ୱଭାବସୁନ୍ଦର ଶ୍ରୀକୃଷ୍ଣଙ୍କୁ ଆହୁରି ସୁନ୍ଦର କରିବା ପାଇଁ କବି ବିଭିନ୍ନ ପ୍ରକାରର ଭୂଷଣ, ବସନ, ମାଲ୍ୟ ଓ ଅନୁଲେପାଦିର ଆୟୋଜନ କରିଛନ୍ତି । ଏହି ସବୁକୁ ମଣ୍ଡନ କୁହାଯାଏ । ଏହା ଗୋପୀମାନଙ୍କ ହୃଦୟରେ କୃଷ୍ଣରତିର ଉଦ୍ଦୀପକ । ଶ୍ରୀକୃଷ୍ଣ କପାଳରେ ଗୁଞ୍ଜରା ମୁଣ୍ଡମାଳି (୬-୨୦), କର୍ଣ୍ଣରେ ମକରକୁଣ୍ଡଳ (୨-୬, ୬-୨୧, ୧୩-୭), କଣ୍ଠଦେଶରେ ମୁକୁତାମାଳ (୧୫-୨୮, ୧୬-୯, ୧୭,୩୪), କାଇଁଚ ମାଳା (୨୨-୨୨), ନକ୍ଷତ୍ର ମାଳ (୨୮-୮), ମୋତିହାର (୭-୮) ଓ ଅନ୍ୟାନ୍ୟ ବହୁପ୍ରକାରର ହାର (୬-୨୨), ବା କଣ୍ଠଭୂଷଣ (୬-୩); ହୃଦୟରେ କଉସ୍ତୁଭମଣି ୨-୫, ୧ ୩-୨୨, ୨୮-୫), ନାସାରେ ମୋତି (୬-୨୧) ବା ମୋତିବର (୨୮-୩), କରରେ କଙ୍କଣ (୨-୬, ୭-୩୪, ୨୮-୬), କାଇଁଶ କଙ୍କଣ (୨୨-୨୨) ଓ

ବାହୁଟୀ (୨୮-୬), କଟିରେ କିଙ୍କିଣୀ (୪-୨, ୪-୨୪, ୪-୨୬, ୭-୯) ଓ କାଞ୍ଚମାଳା (୨୮-୬), ପାଦରେ ନୂପୁର (୨-୬, ୪-୨୬) ଓ ପାଦୁକା (୨୪-୧୭) ପରିଧାନ କରି କାମିନୀମାନଙ୍କୁ ମୁଗ୍ଧ କରନ୍ତି । ଏସବୁ ବ୍ୟତୀତ ଶ୍ରୀକୃଷ୍ଣଙ୍କର ଅନ୍ୟ ଦୁଇଟି ପ୍ରସିଦ୍ଧ ଭୂଷଣ ହେଉଛି କେକୀପୁଚ୍ଛ ଓ ବନଫୁଲମାଳ । ପ୍ରିୟ ଅଳଙ୍କାରସବୁ ଯୋଗୁଁ ଶ୍ରୀକୃଷ୍ଣଙ୍କର ନାଁ ହେଉଛି, ଦାମୋଦର, କେକୀପୁଚ୍ଛ ମଣ୍ଡନ, ବନମାଳି, ବାଘନଖିଆ, ଫୁଲମାଳୀୟା, ମଣିମକରକୁଣ୍ଡଳୀୟା (୧୪-୩୯), କାଇଁଚମାଳିୟା (୧୩-୩୪, ୧୪-୩୭, ୧୪-୩୯) । ପ୍ରତ୍ୟେକ ଅଳଙ୍କାର ଗୋପୀମନରେ କୃଷ୍ଣରତିର ଉଦ୍ଦୀପନ କରେ । କିଙ୍କିଣୀର ମଞ୍ଜୁଳ ରବ ଗୋପୀମନକୁ ଉନ୍ମତ୍ତ କରୁଥିବା ରସକଲ୍ଲୋଳରୁ ପ୍ରକାଶ ପାଏ ।

କିଙ୍କିଣୀ ମଞ୍ଜୁଳ ରବ ମଧୁର ନିର୍ଘୋଷ ।<br>
କହିବା ଚାତୁରୀ ବରଷଇ ଘନରସ ।<br>
କାହାର ନୟନ ତାଚକକୁ ନ ରୁଚଇ<br>
କାହିଁ ଗୋପୀ ମନମତ୍ତ କେକୀ ନ ନାଚଇ । ୭-୯

ସେହିପରି କୃକାଟିକ କେତକୀ ପାଖୁଡ଼ା ଝରା ନାରୀ ଘରବୁଡ଼ାର କାମ କରିଥାଏ (୭-୧୧) ।

ବସ୍ତ୍ରମଧ୍ୟରୁ ପୀତପଟନୀ ଶ୍ରୀକୃଷ୍ଣଙ୍କର ଅତି ପ୍ରିୟ । ସେଥିପାଇଁ ଶ୍ରୀକୃଷ୍ଣଙ୍କର ନାମ ହେଉଛି, ପୀତାମ୍ବର, ପୀତବାସ, ବା କଳଧଉତକାନ୍ତି ଦୁକୁଳୀୟା (୨୧-୧୨) । ଶ୍ରୀକୃଷ୍ଣଙ୍କ କଳାମେଘବର୍ଣ୍ଣ ଶରୀରକୁ ଏହା ବିଜୁଳି ପରି ଶୋଭା ପାଏ । 'କଟିତଟେ ପୀତବସନ, କଳାମେଘ କୋଳରେ ବିଜୁଳି ଯେସନ' । ବସନ୍ତ ଋତୁର ବାସନ୍ତୀ ପରିବେଶରେ ଶ୍ରୀକୃଷ୍ଣଙ୍କ ବସନ୍ତ ପଟନୀ ଅପୂର୍ବ ରମଣୀୟତା ଲାଭ କରେ । କବି ଶ୍ରୀକୃଷ୍ଣଙ୍କର ବସନ୍ତକାଳୀନ ନାଗର ରୂପକୁ ମନେ ପକାଇ ଲେଖିଛନ୍ତି,

କେତେବେଳେ ଗୋପେ ନାଗର ସ୍ୱରୂପେ ବସନ୍ତ ପଟନୀ ପିନ୍ଧି,<br>
କର୍ପୂର ଚନ୍ଦନ ଅଙ୍ଗେ ବିଲେପନ କମନୀୟ ଗଭା ବାନ୍ଧି ସେ କାହିଁ ।<br>
କଉତୁକ କଥାମାନ କହି । ସେ ।<br>
କଳାକର ପ୍ରିୟାଯାକ ରହି ସେ । କାମ ପ୍ରିୟତମା ମୁଖ ବହି ସେ ।<br>
(୧୩-୩୩)

ପ୍ରାୟ ପ୍ରତି ଋତୁରେ ଶ୍ରୀକୃଷ୍ଣ ପୀତବସନ ପରିଧାନ କରୁଥିଲେ ହେଁ ଶୀତଋତୁର ରାତିରେ ସେ 'କଉଷେୟ କଉପ ଅଙ୍ଗେ ଦେଇ, କମନୀୟ ଶିରସ୍ତ୍ରାଣ ଲଗାଇ', କଳାବତୀମାନଙ୍କ ପ୍ରୀତି ପାଇଁ କଉତୁକରେ ବୁଲୁଥାନ୍ତି । ପ୍ରସାଧନ ମଧ୍ୟରୁ ଦୀନକୃଷ୍ଣ ଚନ୍ଦନ, କସ୍ତୁରୀ, ଗୋରୋଚନା ଓ ଗୋରୁଧୂଳିର ଉଲ୍ଲେଖ କରିଛନ୍ତି । ଶ୍ରୀକୃଷ୍ଣଙ୍କ ପ୍ରତ୍ୟେକ ପ୍ରସାଧନ ଗୋପୀମାନଙ୍କୁ ବିଚଳିତ କରିଛି । ଗୋପୀମାନଙ୍କ ହୃଦୟରେ କସ୍ତୂରୀ ତିଳକର ପ୍ରଭାବ ବର୍ଣ୍ଣନା କରି ଦୀନକୃଷ୍ଣ ଲେଖିଛନ୍ତି ।

କଳାକର ଅର୍ଦ୍ଧ କପାଳରେ ଊର୍ଦ୍ଧ୍ୱ କସ୍ତୁରୀତିଳକ ବିରାଜେ ।

କାମିନୀଙ୍କି କାମ କରବାଳ ସମ ଚାହିଁଲେ ମର୍ମଦେଶେ ବାଜେ । (୬-୨୦)

ଗୋରୋଚନାର ପ୍ରଭାବ ମଧ କମ ନୁହେଁ । ମଥୁରା ଦାଣ୍ଡରେ ଗମନ କରୁଥିବା ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା କଲାବେଳେ ଦୀନକୃଷ୍ଣ ଗୋରୋଚନାର ମହତ୍ତ୍ୱ ଉପଲବ୍ଧି କରି କହିଛନ୍ତି ।

କପାଳରେ ଗୋରୋଚନା ଚିତା, କରେ ଉର୍ଦ୍ଧ୍ୱରେତା ହତଚେତା ।

କଉଁ ପତିବ୍ରତା ରଖି ବିବେକିତା, ନୋହିବ ମଦନେ ମତ୍ତା ହୋ (୨୮-୨)

ବସ୍ତ୍ର, ଭୂଷଣ ଓ ଅନୁଲେପାଦି ସାହାଯ୍ୟରେ ଶ୍ରୀକୃଷ୍ଣ ବିଭିନ୍ନ ବେଶ ଧାରଣକରି ଜଗତ ବଶ କରିନ୍ତି । ନିଜ ଇଚ୍ଛାନୁସାରେ ବିଭିନ୍ନ ରୂପ ଧାରଣ କରୁଥିବାରୁ କବି ଶ୍ରୀକୃଷ୍ଣଙ୍କୁ କାମରୂପୀ କହିଛନ୍ତି । କାମିନୀଙ୍କି ବଶ କରିବାପାଇଁ ସେ ବିଭିନ୍ନ ବେଶ ଧାରଣ କରିଥାନ୍ତି । କାଚରା, କଇବର୍ତ୍ତ, କଳାମେଘ, କଳା ଭୂତ, ଘଟୁଆଳ, ନଟବର, ମାଳୀ ଓ ଶଙ୍ଖାରୀ ପ୍ରଭୃତି ଏହିପରି ଗୋଟିଏ ଗୋଟିଏ ବେଶ ।

ଗୋପୀମାନଙ୍କୁ ପ୍ରଲୁବ୍ଧ କରିବାପାଇଁ ଶ୍ରୀକୃଷ୍ଣଙ୍କ ପ୍ରତ୍ୟେକ ଅଙ୍ଗର ଶୋଭା ଯଥେଷ୍ଟ । ଯେଉଁଠି ଆଖି ପଡ଼ିଛି ସେଇଠି ଆଖି ଲାଗି ରହିଛି । ତୃଷିତା ଚକୋରୀ ପରି ସେମାନେ ଶ୍ରୀକୃଷ୍ଣଙ୍କ ଶୋଭା-ଅମୃତକୁ ଆକଣ୍ଠପାନ କରିଛନ୍ତି ।

କେମନ୍ତ ସୁନ୍ଦର କଳା କଳେବର କେମନ୍ତ ସୁରଙ୍ଗ ଅଧର ।

କେମନ୍ତ ନୟନ କଟାକ୍ଷର ଧନ୍ୟ ଲଲାଟପାଟୀ ମନୋହର ।

କେମନ୍ତ ମନ୍ଦ ହସି କହିବା ଚତୁରତା ।

କେମନ୍ତ ପ୍ରକାରେ ନାଚଇ ସଧୀରେ କାମଧନୁଜିତା ଭ୍ରୂଲତା ।

ଦୀନକୃଷ୍ଣଙ୍କ ଅବସ୍ଥା ମଧ୍ୟ ତଦ୍ରୂପ । ଶ୍ରୀକୃଷ୍ଣଙ୍କ ଜାନୁ, ଜଘ ଶୋଭାକୁ ତୁଳନା କରିବା ପାଇଁ ତାଙ୍କୁ ଉପମା ମିଳି ନାହିଁ । କଣ୍ଠ, କର୍ଣ୍ଣ ଓ ନାସାର ସୌନ୍ଦର୍ଯ୍ୟ

ଭାଷାରେ ପ୍ରକାଶ କରିହୁଏ ନାହିଁ । ନିମ୍ନ ପଂକ୍ତିରୁ ଶ୍ରୀକୃଷ୍ଣଙ୍କ ରୂପମୁଗ୍ଧ କବି-ଚିତ୍ତ ଅତି ସ୍ପଷ୍ଟ ଭାଷାରେ ପ୍ରକାଶିତ ।

କେମନ୍ତ ମଧ୍ୟମ ଅତି ମନୋରମ ଦିଶେ ବିପୁଳ ବକ୍ଷସ୍ଥଳ ।
କୁବଳୟ ମାଳେ କୋକନଦ ଝୁମା ପ୍ରାୟେ ଶୋଭା ବାହୁଯୁଗଳ ।
କଥନୀୟ ତ । ନୋହଇ କଣ୍ଠ, କର୍ଣ୍ଣ, ନାସା
କବି କବି ହୋଇ କହିବି ବୋଇଲେ ମୁଖରୁ ନ ଆସିବ ଭାଷା ।

ରସକଲ୍ଲୋଳରେ ଗୋପୀ ଓ ଦୀନକୃଷ୍ଣ ଉଭୟେ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟକୁ ନିଜପାଇଁ ନିରୀକ୍ଷଣ କରିଛନ୍ତି । ସାଧାରଣତଃ ଶୃଙ୍ଗାରୀ କବିମାନେ ସଖୀ ବା ଦୂତୀ ଦ୍ୱାରା ନାୟକର ରୂପ ବର୍ଣ୍ଣନା ନାୟିକା ସମ୍ମୁଖରେ କରିଥାନ୍ତି । ସେମାନଙ୍କର ଉଦ୍ଦେଶ୍ୟ ହେଉଛି, ନାୟିକାକୁ ନାୟକ ପ୍ରତି ଆସକ୍ତ କରାଇବା । ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା କରୁଥିବା ଗୋପୀ କାହାରି ଦୂତୀ ନୁହେଁ । କବି ମଧ୍ୟ କାହାରି ଦୂତୀ ସାଜି ନାହାନ୍ତି । ସେମାନଙ୍କ ବର୍ଣ୍ଣନାରୁ ସେମାନଙ୍କ ହୃଦୟ ସ୍ଥିତି ହିଁ ପ୍ରକାଶ ପାଇଛି । କାହାରିକୁ ଫୁସଲାଇବା ପାଇଁ ସେମାନେ ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା କରି ନାହାନ୍ତି । ସେଥିପାଇଁ ଦୀନକୃଷ୍ଣଙ୍କ ବର୍ଣ୍ଣନାରେ ଶ୍ରୀକୃଷ୍ଣଙ୍କର ଯେଉଁ ରୂପ ପ୍ରକାଶ ପାଇଛି ତାହା ଆନ୍ତରିକତାଯୁକ୍ତ । ବାହାରର ସାଜସଜ୍ଜା ସେଥିରେ ଅତି ଅଳ୍ପ ।

ବୈଷ୍ଣବୀୟ ବିଶ୍ୱାସ ଅନୁଯାୟୀ ସକଳ ଜଗତ ହେଉଛି ମିଥ୍ୟା, କେବଳ ନବଜଳଦତନୁ ଶ୍ରୀକୃଷ୍ଣ ଓ ଗୋପୀ ସତ୍ୟ । ତେଣୁ ମିଶ୍ର ସଂସ୍କୃତିରେ ଏକ ଉଲ୍ଲେଖ ପୋଥିରୁ ପ୍ରାପ୍ତ ହୁଏ -

ଦେହୀତଂ ମୂଳ ମିଥ୍ୟା
ଗୁଣ ବିଗୁଣମପି କପି ଜଳୋପି ମିଥ୍ୟା ।
ପବନ ସୁରତରୁ ଶଇଳ ଦିଗପାଳପି ମିଥ୍ୟା ।
ସର୍ବେ ସଂସାର ମିଥ୍ୟା ।
ନବଜଳଦତନୁ କୃଷ୍ଣମପି ଗୋପୀ ସତ୍ୟ ।

ସମସ୍ତ ରସକଲ୍ଲୋଳ ହେଉଛି ଏହି ଗୋପୀ ଓ ଶ୍ରୀକୃଷ୍ଣଙ୍କର ଘେନାଘେନି ବାଣୀର ମୂର୍ତ୍ତିବନ୍ତ ପ୍ରକାଶ । ଗୋପୀଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ହେଉଛନ୍ତି, ଚିର ତରୁଣ ବା କିଶୋର । ଲୋକ ଦେଖିବାକୁ ସେ କୌମାର, ପୌଗଣ୍ଡ, କୈଶୋର ପ୍ରଭୃତି ମନୁଷ୍ୟର ବିଭିନ୍ନ ଅବସ୍ଥା ଅତିକ୍ରମ କରୁଥିଲେ ହେଁ ତାଙ୍କର ପରିବର୍ତ୍ତନ ନାହିଁ ।

କବି ଶ୍ରୀକୃଷ୍ଣଙ୍କ ଜନ୍ମ ସଂବାଦ ପାଇ ଆନନ୍ଦରେ ଗମନ କରୁଥିବା ଗୋପବାଳାର ହୃଦୟରେ ବିଭ୍ରମ, ଉଚ୍ଚାଟ ପ୍ରଭୃତି ଭାବର ସୃଷ୍ଟି କରିଛନ୍ତି । ଶ୍ରୀକୃଷ୍ଣଙ୍କ ବାଳ ମୂର୍ତ୍ତି ଦର୍ଶନରେ ସେମାନେ ସୁଚକିତ, ପୁଲକିତ ହୋଇ 'ଚିତ୍ର ନାରୀ' ମତ ଶୋଭା ପାଉଛନ୍ତି । ଆନନ୍ଦରେ ତାଙ୍କ ନୟନରୁ ଅଶ୍ରୁଜଳ ଜାତ ହୋଇଛି । କୁମାର ଶ୍ରୀକୃଷ୍ଣଙ୍କୁ ଦେଖି ଗୋପୀମାନେ ନିଜ ଭିତରେ ବିଚାର କରୁଛନ୍ତି,

କେ ବୋଇଲ ଏ କିଶୋର ହୋଇଲେ,
କଉଁ ସ୍ତିରୀ କି ନୋହିବ ଚାହିଁଲେ ।
କୁଳ ଯୁବତୀଙ୍କ କୂଳ ବୁଡ଼ିବ ।
କ୍ରମେ ପତିବ୍ରତା ବ୍ରତ ଛାଡ଼ିବ । (୧୧-୩୯)

ଗୋପୀମାନଙ୍କ ସ୍ନେହଚିତ୍ତ (୩-୪) କ୍ରମଶଃ ଦ୍ରବୀଭୂତ ହୋଇଛି । ଶ୍ରୀକୃଷ୍ଣଙ୍କ କର ଚରଣ ଚାଳିବାର ଭାବ, କାମିନୀଙ୍କ ମନରେ କୋଟି କୋଟି ହାବର ସୃଷ୍ଟି କରିଛି । ଶ୍ରୀକୃଷ୍ଣଙ୍କୁ ଦର୍ଶନ କରି ଫେରିଲା ବେଳେ ବରକାମିନୀ ମନକଷ୍ଟରେ ଫେରିଛି; 'କୁମାରଙ୍କ ଶୋଭାକୁ ମନେ ଘେନି, କଷ୍ଟେ ଗମିଲେ ବରଜ କାମିନୀ ।'

ଶ୍ରୀକୃଷ୍ଣଙ୍କର ବୟସ ଓ ଶୋଭା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଗୋପପୁରରେ ତାଙ୍କର ପ୍ରତାପ (୫-୧୩) ବୃଦ୍ଧି ପାଇଛି । ତାଙ୍କର କଟାକ୍ଷରେ ଗୋପବାଳା କେତେବେଳେ ହସିଛି, ପୁଣି କେତେବେଳେ କାନ୍ଦୁଛି । କେତେବେଳେ କିଳକିଞ୍ଚିତ ଭାବର ସୃଷ୍ଟି ହେଉଛି ତ ପୁଣି କେତେବେଳେ ମୋଟ୍ଟାୟିତ ଭାବ । ଗୋପୀମାନେ ବୁଝିପାରିଛନ୍ତି କୃତାର୍ଥ ପାଇବାର ଏକମାତ୍ର ବାଟ ହେଉଛନ୍ତି, ନନ୍ଦନନ୍ଦନ ଶ୍ରୀକୃଷ୍ଣ । ସେଥିପାଇଁ କୁଳବତୀ ହେବାର ବା ପତିବ୍ରତାବ୍ରତ ପାଳନ କରିବାର ଯେତେକ ଶ୍ରଦ୍ଧା ଗୋପୀମାନଙ୍କ ମନରେ ଥିଲା ସେତକ ଦୂର ହୋଇଯାଇଛି । ଦୁଧସରଠାରୁ ଆରମ୍ଭ କରି ପୟୋଧର ପର୍ଯ୍ୟନ୍ତ ଯାଚି ଦେବାରେ ସେମାନେ କୁଣ୍ଠାବୋଧ କରି ନାହାନ୍ତି । ଶେଷରେ ସ୍ଥିର ହେଉଛି,

କେ ବୋଲେ କିଛି ନ ବୋଲିବା ଆଉ ।
କୃଷ୍ଣ ଭୋଗରେ ସବୁ ପଡ଼େ ଯାଇ । (୫-୨୨)
କରିଥାଇ ଯେ ଅନେକ ସୁକୃତ,
କେଶବ କାର୍ଯ୍ୟେ ଲାଗଇ ତା ବିତ୍ତ । (୫-୨୩)

ସେହି ଦିନଠାରୁ ମନ, ବଚନ, କର୍ତ୍ତବ୍ୟ ଦେଇ ଶ୍ରୀକୃଷ୍ଣଙ୍କୁ ସନ୍ତୁଷ୍ଟ କରିବାର ଅଭିଳାଷ ଗୋପୀ ମନରେ ପ୍ରବଳତର ହୋଇ ଉଠିଛି । ନିଜର ବେଶ, ଭୂଷା,

ଆଭରଣ ଓ ଆଡ଼ମ୍ବରରେ ସେ ନିଜର ସୁଖ ଦେଖିନାହିଁ । ସବୁବେଳେ ଶ୍ରୀକୃଷ୍ଣଙ୍କ ପାଇଁ ସେ ନିଜକୁ ସଜେଇ ରଖିଛି । କଉଁ କାମିନୀର ଲୋଟଣୀ ଜୁଡ଼ା 'କୃଷ୍ଣମନ କାମେ କରେ ଡୋରା' (୧୮-୧୪) । କଉଁ ଗୋପବାଳାର ଗଭା ବାନ୍ଧିବାର ଚାତୁରୀରେ କୃଷ୍ଣମନ ବାନ୍ଧି ହୋଇଯାଉଛି (୧୮-୧୫) । କାହାରି କପାଳର ଗନ୍ଧତିଳକ କାମ କରବାଳ ପ୍ରାୟେ ଶୋଭା ପାଇ କାହ୍ନୁମନକୁ ଚରକାଇ ଦେଇଛି (୧୮-୩୬) । ପୁଣି କାହାର ଖଞ୍ଜନ ଗଞ୍ଜନ ନେତ୍ର କଜ୍ଜଳ ରଞ୍ଜିତ ହୋଇ କୃଷ୍ଣ ଧୈର୍ଯ୍ୟ ଲୋପ କରୁଛି (୧୮-୧୮) । ଯମୁନା ସ୍ନାନ ଓ ଜଳକ୍ରୀଡ଼ା ବେଳରେ ସେମାନେ ଶ୍ରୀକୃଷ୍ଣଙ୍କ ଅଙ୍ଗ ସଙ୍ଗ କାମନା କରିଛନ୍ତି । ଯମୁନାରେ ସ୍ନାନ କଲାବେଳେ ଗୋପୀମାନଙ୍କର ଭାବନା ହେଉଛି,

କୃଷ୍ଣ ଅଙ୍ଗ ସଙ୍ଗ ନୋହିବଟି ଭଙ୍ଗ ଏହି କାମ ହୃଦେ ଥୋଇ
କିଶୋରୀମାନେ କୁଚ-ଶମ୍ଭୁମାନଙ୍କୁ କରାଇଲେ ଜଳଶାୟୀ ।

ଜଳକ୍ରୀଡ଼ା କାଳରେ କୁଚଶଙ୍କରଙ୍କୁ ଜଳଶାୟୀ କରାଇ ଗୋପୀମାନେ ଯେଉଁ ବରର କାମନା କରିଛନ୍ତି, ତାହା ହେଉଛି ।

କେ ବୋଲେ କୃଷ୍ଣକୁ ଏକାଳରେ ଯେବେ
ଦେବେ ଆମ୍ଭ ପାଶେ ଅଣାଇଁ ।
କରିବା, ତାଙ୍କୁ ଘେନି ଜଳ ବିହାର
କହୁଁ କହୁଁ ଏହା କମଳ ନୟନ ବୃନ୍ଦାବନୁଁ ହେଲେ ବାହାର ।

ଜଳରେ ଉଲଗ୍ନ ହେଲେ ପାପ ହୁଏ । ଏହି ଅପରାଧରୁ ଜଳଦେବତାହିଁ ମୁକ୍ତି ଦେଇପାରନ୍ତି । ଗୋପୀମାନଙ୍କୁ ଉପଦେଶ ଦେଇ ଶ୍ରୀକୃଷ୍ଣ କହୁଛନ୍ତି ।

କହନ୍ତି ଶ୍ରୀକୃଷ୍ଣ ଆଗୋ ଗୋପୀମାନନେ ଏବେ ଆମ୍ଭର ବୋଲକର ।
କଲ ଯେ ଜଳଦେବତାରେ ଅପ୍ରାଧ ଶିରରେ ଦିଅ ବେନିକର ।

ଗୋପୀମାନଙ୍କ ନିକଟରେ ଶ୍ରୀକୃଷ୍ଣହିଁ ଏକମାତ୍ର ଇଷ୍ଟଦେବତା । ଅନ୍ୟ ଦେବତାର ପ୍ରଶ୍ନ ସେଠି ନାହିଁ । 'ଆମେ କି ଜାଣୁ ଦେବତାଙ୍କୁ' । ସେହି ଶ୍ରୀକୃଷ୍ଣଙ୍କର କିଣାଦାସୀ ହୋଇ ତାଙ୍କରି ପଦସେବା କରି ଦିନ କାଟିବା ସେମାନଙ୍କର ଏକମାତ୍ର କାମନା । ଶ୍ରୀକୃଷ୍ଣଙ୍କ ମଥୁରା ଗମନ କାଳରେ ଗୋପୀମାନଙ୍କ ମନର ବାସନା ଅତି ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି ।

କରିଥିଲୁ କାମନା ସକଳ ଗୋପାଙ୍ଗନା
ତୁମ୍ଭେ ଗୋପରେ ଶୁଭେ ଥିବ ।

କଉତୁକ ହରଷ ରସେ ପାଦ ସାରସ
ସେବାରେ ଆମ୍ଭ ଦିନ ଯିବ, ହେ କୃପାନିଧି ।
କଲା ସେ କଥା ଆନ ବିଧବ ।
କରୁଛ ତୁମ୍ଭେ ଏ ଅବିଧି ।
କଳାନିଧିକି କଇ ଧରିବାକୁ ମନରେ
ବିଚାରିଲେ କି ହୋଏ ସିଦ୍ଧି ହେ । (୨୬-୯)

ପ୍ରତ୍ୟେକ କାର୍ଯ୍ୟରେ ଶ୍ରୀକୃଷ୍ଣଙ୍କ ଚିନ୍ତା । ଜଗତର ପ୍ରତ୍ୟେକ ପଦାର୍ଥରେ ଶ୍ରୀକୃଷ୍ଣଙ୍କର ମହିମା । ଯମୁନାର ଜଳ ଦେଖି ସେମାନେ ଶ୍ରୀକୃଷ୍ଣଙ୍କ ପ୍ରିୟ ଲୋକର କୋମଳ ଓ ନିର୍ମଳ ହୃଦୟ ଦେଖିଛନ୍ତି । ଯମୁନାର କମଳମାଳ ଦେଖି ଶ୍ରୀକୃଷ୍ଣଙ୍କ ହୃଦସ୍ଥିତ ପଦ୍ମମାନ ସେମାନଙ୍କର ମନେ ପଡ଼ିଛି । ଶ୍ରୀକୃଷ୍ଣଙ୍କ ଅଙ୍ଗ ସ୍ପର୍ଶରେ ଯମୁନାର ଜଳ ମଳିନତା ତ୍ୟାଗ କରି ନିର୍ମଳତା ଲାଭ କରିଥିବା ଦେଖି ଶ୍ରୀକୃଷ୍ଣଙ୍କ ଅଙ୍ଗସଙ୍ଗରେ ପ୍ରସନ୍ନ ହେଉଥିବା ପ୍ରୋଷିତ ପ୍ରିୟତମା ନାୟିକାଙ୍କ କଥା ସ୍ମରଣ ହୋଇଛି । ବନ ଭ୍ରମଣ କାଳରେ ତମାଳ, କରୁଣା, କିଂଶୁକ, ନିଆଳି, ଅଶୋକ ଓ ପୁନ୍ନାଗ ପ୍ରଭୃତି ବୃକ୍ଷ ଦେଖି ଗୋପୀମାନେ ଭାବୁଛନ୍ତି, ଆଜି ଯେଉଁ ସବୁ ବୃକ୍ଷ ଶ୍ରୀକୃଷ୍ଣଙ୍କ ଅସୀମ କରୁଣା ଯୋଗୁଁ ଆନନ୍ଦ ଦାନ କରିବାକୁ ସମର୍ଥ ଶ୍ରୀକୃଷ୍ଣଙ୍କ ବିରହରେ ସେହିସବୁ ବୃକ୍ଷ ଦୁଃଖର କାରଣ ହେବେ । କରୁଣା କାମତମାଳ (କାମର ଖଣ୍ଡା) ହେବ, କିଂଶୁକ କୁସୁମ କାମର ଅର୍ଦ୍ଧଚନ୍ଦ୍ର ବାଣ ହୋଇ କାନ୍ତାର୍ଥିନୀ ନାରୀର ଅଙ୍ଗକୁ ବିଦୀର୍ଣ୍ଣ କରିବ । କରୁଣା ଅପୂର୍ବକରୁଣା ଅର୍ଥାତ୍ ଅକରୁଣା ଦାନ କରିବ । ନିଆଳି ଫୁଲ ନିଆଳି (ନିଆଁ)ର କାର୍ଯ୍ୟ କରିବ । ପୁନ୍ନାଗ ବୃକ୍ଷ ପୁନ୍ନାଗ (ପୁରୁଷ ନାଗ )ରେ ପରିଣତ ହେବ । ଶ୍ରୀକୃଷ୍ଣ ସ୍ନେହ କରିବେ ବୋଲି ସେମାନେ ଦେହକୁ ଫୁଲସାର ଆଭରଣରେ ମଣ୍ଡିତ କରିଛନ୍ତି । କୃଷ୍ଣକୃପାରେ ସୁରସବନ୍ତା ହୋଇ କାହାରି କିଛି ଚିନ୍ତା ନାହିଁ । କେବଳ କଥାରେ ନୁହେଁ, ମନ, ବଚନ, କର୍ତ୍ତବ୍ୟରେ ସେମାନେ ଶ୍ରୀକୃଷ୍ଣଙ୍କଠାରେ ଅନୁରାଗୀ ଓ କୃଷ୍ଣଙ୍କ ଅଭାବେ ବିଷୟତ୍ୟାଗୀ । ଶ୍ରୀକୃଷ୍ଣଙ୍କ ବିରହକାତରା ଗୋପୀମାନଙ୍କ ଦଶା ଦେଖିଲେ ଦୀନକୃଷ୍ଣଙ୍କ ଭକ୍ତିର ସତ୍ୟତା ଜାଣିହୁଏ । ବିରହିଣୀ ଗୋପୀମାନଙ୍କର ବିକଳ ଅବସ୍ଥା ବର୍ଣ୍ଣନାକରି ଉଦ୍ଧବ କହିଛନ୍ତି,

କି କହିବି ଗୋପୀମାନଙ୍କ କଥା । କହିଲେ ଜାତ ହେବ ମହାବ୍ୟଥା ।
କେଶ ବାସ ବେଶ ଅତି ମଳିନ କୁଝଟି ସମୟେ ଯେହ୍ନେ ନଳିନ ।

କାହାର ଶରୀର । କୃଷ-ବିଷାଦୁଁ ନୋହିଛି ବାହାର ।
କାହାରି ବଦନେ ନାହିଁ ପ୍ରସନ୍ନ । କାହାରି ନାହିଁ ବିଷୟ ଦର୍ଶନ ।
କହିବାକୁ ଶକ୍ୟ ନାହିଁ କାହାର । କାହିଁକି ଥିବ ଆହାର ବିହାର
କେବଳ ବିରସ । କରିଛି ସବୁ ହୃଦୟରେ ବାସ ।
କାହା କଙ୍କଣ ହୋଇଛି । କେୟୁର । କେ ଉରେକରି କଙ୍କଣ ହାର
କେ କଣ୍ଠେ ବସାଇ ତୁମ୍ଭ ନାମକୁ । କଳେବର ଦେଇ କାମକାଣ୍ଡକୁ
କରିଛି ଶୟନ । କିଞ୍ଚିତ କରି ଫେଡ଼ିଛି ନୟନ ।

ଶ୍ରୀକୃଷ୍ଣଙ୍କ କ୍ଷଣିକ ବିରହ ଗୋପୀ ହୃଦୟରେ ଅସହ୍ୟ ବେଦନା ସୃଷ୍ଟି କରିଛି । ତା ମନରେ କେତେ ପ୍ରକାର ଭାବନା । କେତେବେଳେ ହରଷ, ପୁଣି କେତେବେଳେ ବିରସ । ଭାଗ୍ୟରେ ନ ଥିଲେ ଭାବ ରହେନାହିଁ । ସୁବର୍ଣ୍ଣ ଫୁଲ ସୁନ୍ଦର ହେଲେ କଣ ହେବ, ସେଥିରେ ବାସ ନାହିଁ । ଶ୍ରୀକୃଷ୍ଣଙ୍କୁ ମୁଗ୍ଧ କରି ନପାରୁଥିବା ଗୋପୀ ନିଜର ଶ୍ରୀଅଙ୍ଗ ସୌନ୍ଦର୍ଯ୍ୟକୁ ନିନ୍ଦା କରି କହୁଛି ।

କନକ କୁମ୍ଭ ସମାନ କୁଚରୁ କି ପ୍ରୟୋଜନ
ନ ହରିଲା ଯେବେ ମନ । ମୋହନ ମନ ସଜନୀ ।
କନ୍ଦର୍ପ କାଣ୍ଡକୁ ଲକ୍ଷ । କିପାଁ କରନ୍ତି କଟାକ୍ଷ
କଲାତ ନାହିଁ ଶ୍ରୀବକ୍ଷ, ବଣ ପ୍ରତ୍ୟକ୍ଷ ସଜନୀ । (୨୨-୧୬,୧୭)

ଶ୍ରୀକୃଷ୍ଣଙ୍କୁ ଭାବନା କରିବା ମାତ୍ରେ ଗୋପୀମନରେ ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ବେପଥୁ, ସ୍ୱରଭଙ୍ଗ, ବୈବର୍ଣ୍ଣ୍ୟ ଓ ଅଶ୍ରୁ ପ୍ରଭୃତି ସାତ୍ତ୍ୱିକ ବେଦନାର ସୃଷ୍ଟି କରିଛି ।

ଗୋପୀ ଓ ଶ୍ରୀକୃଷ୍ଣଙ୍କ ପ୍ରେମ କଳ୍ପନାରେ ଆନ୍ତରିକତା ଓ ଆତ୍ମସମର୍ପଣ ଭାବ ହେଉଛି ପ୍ରଧାନ ଆଦର୍ଶ ଓ ଗୋପୀପ୍ରେମର ଏହି ଐକାନ୍ତିକତା ଓ ନିବିଡ଼ତା ବୈଷ୍ଣବ ଧର୍ମର ଭାରତୀୟ ସଂସ୍କୃତିକୁ ଶ୍ରେଷ୍ଠ ଦାନ । ଦୀନକୃଷ୍ଣଙ୍କ ଗୋପୀମାନେ ମଧ୍ୟ ଶ୍ରୀକୃଷ୍ଣ ଜନ୍ମ ହେବା ଦିନଠାରୁ ମନ, ବଚନ, କର୍ତ୍ତବ୍ୟ ସମର୍ପଣ କରି ତାଙ୍କରିଠାରେ ଶରଣ ପଶିଛନ୍ତି । ସେହିଦିନୁ ଶ୍ରୀକୃଷ୍ଣ ସେମାନଙ୍କର ଏକମାତ୍ର ଇଷ୍ଟଦେବତା ଓ ସେମାନେ ତାଙ୍କର କୀଣାଦାସୀ । କବି ଦୀନକୃଷ୍ଣ ଗୋପୀ ଓ ଶ୍ରୀକୃଷ୍ଣଙ୍କ ସଂପର୍କକୁ, ସେମାନଙ୍କ ମଧ୍ୟରେ ଥିବା ଘେନାଘେନି ଭାବକୁ ଅନଳ ଓ ପତଙ୍ଗ ଉପମାନ ଦେଇ ବୁଝେଇବାକୁ ଚେଷ୍ଟା କରିଛନ୍ତି । ଅନଳର ରୂପରେ ଆକୃଷ୍ଟ ହୋଇ ପତଙ୍ଗ ସବୁ ଆତ୍ମ-ବିସର୍ଜନ କଲାପରି ଗୋପୀମାନେ ଶ୍ରୀକୃଷ୍ଣଙ୍କ ରୂପାନଳରେ ଆତ୍ମାହୁତି ଦେଇଛନ୍ତି । ଏଠି ବୁଦ୍ଧି, ବିବେକ ଖଟାଇ ବିଚାର

କରିବାର ପ୍ରଶ୍ନ ନାହିଁ । କୁଳ, ଶୀଳ ଓ ଲାଜ ଏମାନଙ୍କୁ ଅଲଗା କରିପାରେ ନାହିଁ । ଗୋପୀମାନେ ନିଜପକ୍ଷରୁ ସର୍ବସ୍ୱ ସମର୍ପଣ କରିଦେବା ପରେ ମଧ୍ୟ ଗ୍ରହଣ କରିବା ପାଇଁ ରସିକ ନ ଥିଲେ ପ୍ରେମ ପୂର୍ଣ୍ଣତା ଲାଭ କରେ ନାହିଁ । ଦୀନକୃଷ୍ଣଙ୍କ ଲେଖନୀରେ ଶ୍ରୀକୃଷ୍ଣ କେବଳ ରସିକ ନୁହନ୍ତି, ରସିକଶ୍ରେଷ୍ଠ । 'କୁଞ୍ଜବିହାରୀ ରସିକ ଯହିଁ । କଉଁ କଥା ଅବା ନାହିଁ ତହିଁ' (୧୮-୨୯) । ଗୋପୀମାନଙ୍କ ପ୍ରେମ ପାଇଁ ଶ୍ରୀକୃଷ୍ଣଙ୍କୁ ନିଜର ସମସ୍ତ ମହିମା ପାଶୋରିବାକୁ ପଡ଼ିଛି । ଗୋପୀମାନେ ଶ୍ରୀକୃଷ୍ଣଙ୍କର କୀଣାଦାସୀ ହେଲାପରି ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କର କୋୟର ।

କୃଷ୍ଣ ହସି-ବୋଇଲେ ମୁଁ ପାଇଲି ପାଇଛି ।
କି କହିବି ଅଧିକ ତୋ କୋୟର ହୋଇଛି ।

ଗୋପୀ ମଧ୍ୟ କହିଛି,

କହଇ ଗୋପିକା ବ୍ରଜରାଜ ହୋଇକରି
କରିବ କେମନ୍ତ ସେବା କହତ ବିଚାରି ।

ଗୋପୀ ରୂପ ପୂଜା କରିବା ପାଇଁ କୋୟର ଶ୍ରୀକୃଷ୍ଣ ପରଜା, ଦୂଆମାଳି, ପାଣି ଲାଗି ସେବକ, ଓ ଗୁହାରିଆ ହେବାରେ ମଧ୍ୟ ଆପତ୍ତି କରି ନାହାନ୍ତି । କର୍କଶରେ କଠୋରତା ଧାରଣ କରୁଥିବା ପୁରୁଷ କୋମଳରେ କୋମଳତା ଭାବ ଗ୍ରହଣ କରି ପାରିଲେ ସେ ହୁଏ ପୁରୁଷ ଶିରୋମଣି । ଶ୍ରୀକୃଷ୍ଣଙ୍କ ଚରିତ୍ରଗତ ଏହି ବୈଶିଷ୍ଟ୍ୟ ତୁଳନା ପାଇଁ କବି ଦୀନକୃଷ୍ଣ କୁସୁମ ଲିଟକୁ ବାଛିଛନ୍ତି । ମହତ କାଠକୁ କାଟି ପକାଉଥିବା ଲିଟ କୁସୁମ ନିକଟରେ କୋମଳ ହୋଇଯାଏ । ଶ୍ରୀକୃଷ୍ଣଙ୍କ ଅତୁଳ ପରାକ୍ରମ ଅସୁରଦଳନ ପାଇଁ । 'କର୍କଶରେ କଠୋରତା ବିଚାରେ' (୧୧-୮୦) । ଗୋପୀମାନଙ୍କ ନିକଟରେ ତାଙ୍କର କଠୋରତା ନ ଥାଏ । ସେ ଅକିଞ୍ଚନ କିଙ୍କର ପରି ସେମାନଙ୍କ ଆଦେଶକୁ ଅପେକ୍ଷା କରିଥାନ୍ତି । ଏହି ପ୍ରକାର ପରସ୍ପର ବିରୋଧୀ ଆଚରଣ ମଧ୍ୟରେ ଶ୍ରୀକୃଷ୍ଣଙ୍କ ଚରିତ୍ରଗତ ବୈଶିଷ୍ଟ୍ୟ ନିହିତ । ସେଥିପାଇଁ କୋଟିବ୍ରହ୍ମାଣ୍ଡରେ ସେ ହେଉଛନ୍ତି ଏକମାତ୍ର ନାଗରବର । ଅନନ୍ତ ମହିମାଶାଳୀ ଶ୍ରୀକୃଷ୍ଣଙ୍କର ଏ ପ୍ରକାରର ଅଧଃପତନରେ କବି ଦୀନକୃଷ୍ଣ କନ୍ଦର୍ପକୁ ଦାୟୀ କରିଛନ୍ତି ।

କୀଟୁଁ ବ୍ରହ୍ମ ପରିଯନ୍ତେ ଯେତେକ ।
କାହିଁ ନାହିଁ କନ୍ଦର୍ପ କଉତୁକ ।

କାମ କାହାକୁ କରିନାହିଁ କାହା
କହି ବସିବି ଅବା କେତେ ତାହା । (୧୧-୭୬)

ଇନ୍ଦ୍ର, ଚନ୍ଦ୍ର ସୂର୍ଯ୍ୟ ଓ ବ୍ରହ୍ମା ପ୍ରଭୃତି ଦେବତା କାମ ନିକଟରେ ପରାଜିତ । କାମକୁ ଡ଼ରି ଶିବ ସବୁବେଳେ କାମିନୀକି ଅଙ୍ଗ ଧାରଣ କରିଛନ୍ତି । ଶ୍ରୀକୃଷ୍ଣ ମଧ୍ୟ କାମବଶ ହେଲେ ମନ ତାଙ୍କର ଅଣଆୟତ୍ତ ହୋଇଯାଏ । "କରିବାକୁ ଗମନ ମନ ଥିଲା । କାମ କାମିନୀ କରେ ବନ୍ଧାଇଲା । କିଛି ଆୟତ୍ତ ନୋହିଲା ତାଙ୍କର । କରେ ସ୍ନେହ କିଙ୍କରରୁ କିଙ୍କର ।" (୧୧-୭୩,୭୪)

ଗୋପୀମାନଙ୍କ ପାଇଁ ପ୍ରଯୁକ୍ତ କୀଣାଦାସୀ ଶବ୍ଦରୁ ସେମାନଙ୍କ ପ୍ରତି ଦୀନକୃଷ୍ଣଙ୍କ ମନୋଭାବ ସମ୍ବନ୍ଧରେ କେତେକ ସୂଚନା ମିଳିଥାଏ । ସମାଜରେ ଦାସୀ ଠାରୁ କୀଣାଦାସୀର ସ୍ଥାନ ଆହୁରି ନିମ୍ନରେ । ପ୍ରଭୁର ଅନୁଗତ ହେବା, କାଖରେ କୋଳରେ ଧରି ପ୍ରଭୁର ସେବାକରିବା, ପ୍ରଭୁଙ୍କର ପ୍ରତ୍ୟେକ ଇଚ୍ଛାକୁ ମନ ପ୍ରାଣ ଦେଇ ବିନା ଆପତ୍ତିରେ ପୂରଣ କରିବା ସେମାନଙ୍କର ଧର୍ମ ଓ ସେଥିପାଇଁ ସେମାନେ ସବୁବେଳେ ପ୍ରସ୍ତୁତ ହୋଇଥାନ୍ତି । ସମାଜର କୀଣାଦାସୀଠାରୁ ଗୋପୀମାନଙ୍କ ଅବସ୍ଥା ସ୍ୱତନ୍ତ୍ର । ଗୋପୀମାନଙ୍କ ପ୍ରତି ଶ୍ରୀକୃଷ୍ଣଙ୍କର ଅପାର ସ୍ନେହ । ଏହି ସ୍ନେହ ବଦଳରେ ସେମାନେ ଶ୍ରୀକୃଷ୍ଣଙ୍କର କୀଣାଦାସୀ । 'କିଣିଛି ଆମ୍ଭକୁ ତୁମ୍ଭ ସେନେହ ।' ଟଙ୍କା ପଇସା, ଧନସମ୍ପତ୍ତି ଲୋଭରେ ସେମାନେ ନିଜର ରୂପ ବିକି ନାହାନ୍ତି । କବି ଦୀନକୃଷ୍ଣ ସ୍ନେହକୁ ହୃଦୟ ଆଦାନ ପ୍ରଦାନର ମୂଳମନ୍ତ୍ର ରୂପେ ଗ୍ରହଣ କରିଛନ୍ତି । ତାଙ୍କ ମତରେ ସ୍ନେହ ହେଉଛି ସବୁ । ସ୍ନେହରେ କାନ୍ତା ଆସେ । ଦେବତା ବି ଆସେ । ସ୍ନେହ ବିନା ସନ୍ତୋଷ ଅସମ୍ଭବ । ସ୍ନେହ ଯୋଗୁଁ ଯଦି ଲାଞ୍ଛନା ଭୋଗ କରିବାକୁ ହୁଏ, ତାହାହେଲେ ବି ମଙ୍ଗଳ । ଶ୍ରୀକୃଷ୍ଣ ମଧ୍ୟ "କାମ ସ୍ନେହେ ପରାଭବ ସହନ୍ତି । କଲେ ଭକ୍ତି ଭକ୍ତପାଦ ବହନ୍ତି ।" (୧୧-୧୨) ରସକଲ୍ଲୋଳରେ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ମଧ୍ୟରେ ଥିବା ସାମାଜିକ ଦୂରତ୍ୱ ଅତି ସ୍ପଷ୍ଟଭାବରେ ପ୍ରକାଶିତ । ଶ୍ରୀକୃଷ୍ଣ ଯେ କେବଳ ନନ୍ଦରାଜାଙ୍କର ପୁଅ ତାହା ନୁହେଁ, ଦୀନକୃଷ୍ଣଙ୍କ ଦୃଷ୍ଟିର ସେ ହେଉଛନ୍ତି, କୋଟିବ୍ରହ୍ମାଣ୍ଡ ନାଥ । କୁବେର ତାଙ୍କ ଆଦେଶ ପାଳନ କରିବା ପାଇଁ ସବୁବେଳେ ପ୍ରସ୍ତୁତ । ତାଙ୍କ କଟାକ୍ଷରୁ କୋଟି କୋଟି ଲକ୍ଷ୍ମୀ ଜାତ ହୁଅନ୍ତି । ବେଦପତି ତାଙ୍କ ସ୍ତୁତିଗାନ କରିବାକୁ ଅକ୍ଷମ । ଅପର ପକ୍ଷରେ ଗୋପୀମାନେ ଜାତିରେ ଆଭିରୀ । ରଜାଝିଅ ନୁହନ୍ତି ବା ବ୍ରାହ୍ମଣ, କ୍ଷତ୍ରୀୟ କନ୍ୟା ନୁହନ୍ତି । ରଜାପୁଅ ସହ ପ୍ରେମ

କରିବାକୁ ସେମାନଙ୍କର ଯେଉଁ ସାମାଜିକ ଯୋଗ୍ୟତା ଆବଶ୍ୟକ, ତାହା ନାହିଁ । ଗୋପୀମାନଙ୍କଠାରୁ ବିଦାୟ ନେଇ ମଥୁରା ଯାଉଥିବା ବେଳେ ଶ୍ରୀକୃଷ୍ଣଙ୍କ କପଟ ଚାଟୁରୁ ଏକଥା ଅତି ସ୍ପଷ୍ଟଭାବରେ ଜଣାଯାଏ ।

କୁଟଜ ନିମ୍ବପିତା ଚନ୍ଦନ ହୋଇଲେ ତା
ତିଳକ କରି ହୃଦେ ବୋଳି
କୁବଳୟ ଫଳ ତ ଶାମୁକରୁ ସମ୍ଭୂତ
ହେଲେ କଣ୍ଠରେ କରି ମାଳି । ଗୋ ଗୋପୀମାନେ ।
କେତେ କହିବା ତାହା ବସି । କେବଳ ଗୁଣ ଥିଲେ ରସି ।

ଦୀନକୃଷ୍ଣଙ୍କ ଗୋପୀମାନେ ମଧ୍ୟ ଏ ବିଷୟରେ ଅତ୍ୟନ୍ତ ସଚେତନ ।

କଉଁ ଲୋକ ଆମ୍ଭେ ଗୋପ ନାରୀ
ସେହି ସିନା କଲେ ଏତେ ସରି । (୨୨-୧୦)

ଗୋପୀମାନେ ଜାତିରେ ଛୋଟ ହେଲେବି ରୂପରେ ଅତୁଳନୀୟା । ସ୍ୱର୍ଗର ଅପସରାମାନଙ୍କ ଠାରୁ ମଧ୍ୟ ତୋରା । ରମ୍ଭା ପରା ନାରୀ ସେମାନଙ୍କ ଜାନୁସହ ତୁଳନା ହୋଇଥାନ୍ତି । ସେମାନଙ୍କ ସୌନ୍ଦର୍ଯ୍ୟର ବର୍ଣ୍ଣନା ପାଇଁ କବି ଉପମା ଖୋଜି ଖୋଜି ନିରାଶ ହୋଇଛନ୍ତି । ଭାଟ ରାଜାଙ୍କର ସ୍ତୁତିପାଠ କଲାପରି କବି ଦୀନକୃଷ୍ଣ ସେମାନଙ୍କ ରୂପର ବନ୍ଦନା ହିଁ କରିଛନ୍ତି । ରୂପର ବର୍ଣ୍ଣନା କରିବା ତାଙ୍କ ପକ୍ଷରେ ସମ୍ଭବ ହୋଇ ପାରିନାହିଁ । ସେମାନଙ୍କ ଦେହର ଗଠନକୁ ଦେଖି ସେ ପାରମ୍ପରିକ ରୀତିରେ ସେମାନଙ୍କୁ କେଶରୀ ମଧ୍ୟମା, କରିକୁମ୍ଭସ୍ତନା, କୁଟିଳ କୁନ୍ତଳା, କୁନ୍ଦକଳିଜିତଦଶନା ଓ ପ୍ରସନ୍ନବଦନା କହୁଥିବା ବେଳେ ସେମାନଙ୍କର ଗୁଣ ଓ ସ୍ୱଭାବ ଘେନି ସେମାନେ ହୋଇଛନ୍ତି, ସୁଶୀଳା ଓ କାମକେଳିକଳାକୁଶଳା । କବିଙ୍କ ନାୟକ ଶ୍ରୀକୃଷ୍ଣ ମଧ୍ୟ ଗୋପୀମାନଙ୍କ ରୂପର ପ୍ରଶଂସା କରି କହିଛନ୍ତି, "କହିଲେ ହେ ପ୍ରିୟତମା । କେ ଅଛି ତୋତେ ଉପମା କରିବୁ ତୁ ବେଦପତି କି ନିର୍ବେଦ ଗୁଣମଣି ଗୁଣସୀମା ।" କୃଷ୍ଣମନକୁ ଆକର୍ଷଣ କରି ସାମାଜିକ ଦୂରତ୍ୱକୁ ଦୂର କରିବା ଦିଗରେ ରୂପ ହେଉଛି ସେମାନଙ୍କର ପ୍ରଧାନ ସମ୍ବଳ । କର୍ଣ୍ଣକଣ୍ଡୁଛଳେ କର ଟେକି, କୁଚରୁ ଅଞ୍ଚଳ ଖସାଇ, ସେମାନେ ଶ୍ରୀକୃଷ୍ଣଙ୍କୁ ବଶ କରି ପାରିଛନ୍ତି । ସେତେବେଳେ କୁଳ, ଶୀଳ, ବଂଶମର୍ଯ୍ୟାଦା ଉଭେଇ ଯାଇଛି । କୃଷ୍ଣ ମନ-ମୀନ-ଆକର୍ଷ ବଡଶୀରୁ ସେମାନେ ଶ୍ରୀକୃଷ୍ଣ ଚନ୍ଦ୍ର ସ୍ନେହ ଘେନାରେ ପରିଣତ ହୋଇଛନ୍ତି ।

ମିଳନ ପାଇଁ ସମସ୍ତ ଆୟୋଜନ ସମ୍ପୂର୍ଣ୍ଣ ହେବାପରେ ବୃନ୍ଦାବନରୁ ମିଳନ ବଂଶୀ ବାଜିଉଠେ । ଅନଳରେ ପତଙ୍ଗ ପଡ଼ିବା ପରି ସେମାନେ ବୃନ୍ଦାବନରେ ଶ୍ରୀକୃଷ୍ଣଙ୍କ କପଟ ପାଶରେ ଆବଦ୍ଧ ହୋଇଯାନ୍ତି । ଶ୍ରୀକୃଷ୍ଣଙ୍କୁ ପାଇବା ପଥରେ ବାଧା ସୃଷ୍ଟି କରିବା ପାଇଁ ବେଳେ ବେଳେ ବୈଷ୍ଣବ ଶାସ୍ତ୍ରକାରମାନେ ପତି, ଗୃହ ଓ ଗୁରୁଜନମାନଙ୍କର ଉଲ୍ଲେଖ କରିଥାନ୍ତି । ଏ ପ୍ରକାର ଉଲ୍ଲେଖ ଯୋଗୁଁ ଗୋପୀମାନଙ୍କ ସାମାଜିକ ବଂଧନ ସମ୍ବନ୍ଧରେ ପାଠକ ସଚେତନ ହୋଇଯାଏ । ଭୟ ହେତୁ ଗୋପୀମାନେ ମଧ୍ୟ ସଶଙ୍କିତ ହୃଦୟରେ ଶ୍ରୀକୃଷ୍ଣଙ୍କ ସହ ମିଳିଥାନ୍ତି । ରସକଲ୍ଲୋଳରେ କବି ଦୀନକୃଷ୍ଣ ଗୋପୀମାନଙ୍କ ସାମାଜିକ ବନ୍ଧନକୁ ବିଶେଷ ଗୁରୁତ୍ୱ ଦେଇନାହାନ୍ତି । ଗୋପୀମାନଙ୍କର ଗୃହ ଓ ପତି କଥା ସମସ୍ତ ରସକଲ୍ଲୋଳରେ ଥରେ ମାତ୍ର ଆସିଛି । ପତିବ୍ରତା ବ୍ରତର ଉଲ୍ଲେଖ ଗୋପୀମାନଙ୍କ ମୁଖରେ ହୋଇଥିଲେ ହେଁ ସେ ବ୍ରତକୁ ପରିତ୍ୟାଗ କରିବାରେ ସେମାନେ ହେଳା କରିନାହାନ୍ତି । ଗୋପୀମାନଙ୍କ କୂଳ, ଶୀଳ ଓ ଲାଜ ପ୍ରସଙ୍ଗ କାବ୍ୟରେ ଏକାଧିକ ଥର ଆସିଥିଲେ ହେଁ କବି ଏସବୁ ଗୁଣକୁ କୌଣସି ଗୁରୁତ୍ୱ ଦେଲାପରି ଜଣା ପଡ଼ୁନାହିଁ । ଗୋପବାଳକମାନଙ୍କର ଉଲ୍ଲେଖ ଶ୍ରୀକୃଷ୍ଣଙ୍କ ଖେଳସାଥୀ ଓ ସଖା ରୂପରେ ହୋଇଛି । ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ ସମ୍ପର୍କ ପ୍ରତି ସେମାନଙ୍କ ଭାବନାର କୌଣସି ଚିତ୍ରଣ ରସକଲ୍ଲୋଳରେ ନାହିଁ । ଯେଉଁ ଗୁରୁଜନମାନଙ୍କର ଉଲ୍ଲେଖ କାବ୍ୟରୁ ମିଳେ, ସେମାନେ ମଧ୍ୟ ଗୋପୀ-କୃଷ୍ଣ ସମ୍ପର୍କ ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ । ଶ୍ରୀକୃଷ୍ଣ ଓ ଗୋପୀଙ୍କ ମିଳନରେ ସଙ୍କଟ ସୃଷ୍ଟି କରିବା ପାଇଁ ରସକଲ୍ଲୋଳରେ କେହିନାହାନ୍ତି । ସେଥିପାଇଁ ଦୀନକୃଷ୍ଣଙ୍କ ଗୋପୀ ଭୟାତୁରା ନୁହେଁ । ନିସଙ୍କୋଚ ମନରେ ସେ ଶ୍ରୀକୃଷ୍ଣଙ୍କୁ ନିଜର ପ୍ରେମଦାନ କରିଛି । ଶ୍ରୀକୃଷ୍ଣ ଯେପରି ନିର୍ଦ୍ୱନ୍ଦ୍ୱ ଭାବରେ ପୁରରୁ ପୁରକୁ ଯାଇଛନ୍ତି, ଗୋପୀ ମଧ୍ୟ ସେହିପରି ନିର୍ଦ୍ୱନ୍ଦ୍ୱ ଚିତ୍ତରେ ବନ ଭ୍ରମଣ କରିଛି, ବୃନ୍ଦାବନରେ ରାସ ରଚନା କରିଛି, ଓ ଶ୍ରୀକୃଷ୍ଣଙ୍କ ବିଭିନ୍ନ କଉତୁକରେ ଯୋଗଦାନ କରିଛି ।

ଗୋପୀ ଓ ଶ୍ରୀକୃଷ୍ଣଙ୍କ କାମ-କେଳି ଲିପ୍‌ସାକୁ କେହି କେହି 'ଜାର-ବୁଦ୍ଧି', କୁହନ୍ତି । ରୂପ ଗୋସ୍ୱାମୀ ଓ ଜୀବ ଗୋସ୍ୱାମୀ ଏହାର ବିରୋଧ କରି କହିଛନ୍ତି- କୃଷ୍ଣ ଗୋପୀମାନଙ୍କର ପତି, ଜାର ବା ଉପପତି ନୁହନ୍ତି । ପୁଣି ଭାଗବତରେ ଥିବା 'ଜାର ବୁଦ୍ଧି' ଗୋପୀମାନଙ୍କର ପ୍ରକୃତ ଅବସ୍ଥାକୁ ନ ବୁଝାଇ କୃଷ୍ଣପ୍ରାପ୍ତିର ନିବିଡ଼ ଇଚ୍ଛାରୂପ ମାନସିକ ଶକ୍ତିକୁ ବୁଝାଏ । ଗୋପୀମାନଙ୍କର

କାତ୍ୟାୟିନୀ ବ୍ରତରେ କୃଷ୍ଣଙ୍କୁ ପତିରୂପେ ପାଇବାର ଇଚ୍ଛା ସ୍ପଷ୍ଟ (ଭାଗବତ - ୧-୧୦-୨୨,୨) । ଭାଗବତରେ (୨-୧୦-୩୩,୭) ସେମାନେ କୃଷ୍ଣବଧୂ ରୂପେ ପରିଚିତ। ଜୀବ ଗୋସ୍ୱାମୀଙ୍କ ମତରେ ଏହା 'ସିଦ୍ଧାନ୍ତ ରସଶାସ୍ତ୍ରୟୋ ସମ୍ମତ ।' ଆହୁରି ମଧ୍ୟ ମନୁଷ୍ୟ ଜାଣିଶୁଣି ବିପଦ ବରଣ କରେ ନାହିଁ । ଅଥଚ ପ୍ରେମିକାର ଉପପତି ସହ ମିଳନରେ ପରକୀୟାତ୍ୱ ନାହିଁ, କାରଣ ଏହା ଅବୈଧାନିକ ଓ ପାପପୂର୍ଣ୍ଣ ହେତୁ ରସ ଉପଲବ୍‌ଧିରେ ବାଧା ଆଣେ । 'ଅଧର୍ମମୟତ୍ୱ-ପ୍ରତିତୌତ୍ୱ ଶ୍ଳୀଳତୟ ବ୍ୟାହନୟତ ଏବଂ ରସଃ' ତେଣୁ ରୂପଗୋସ୍ୱାମୀ ଲଳିତ ମାଧବ ନାଟକର ଦଶମ ଅଙ୍କରେ ଦ୍ୱାରକାର ନବ ବୃନ୍ଦାବନରେ ରାଧା ଓ କୃଷ୍ଣଙ୍କର ରୀତିମତ ବିବାହ ଅନୁଷ୍ଠିତ କରାଇ ଅଛନ୍ତି । ପରକୀୟା ଓ ପରସ୍ୱର୍ଶ ରମଣୀ ଭୋଗରେ ପାପ ଅଛି। ଗୋପୀମାନେ ଏ ଦୋଷରୁ ମୁକ୍ତ । କାରଣ ଗୋପାଳମାନେ ଗୋପୀଙ୍କୁ ନିଜର ପତ୍ନୀ ବା ଭୋଗଲିପ୍ସାର ବସ୍ତୁ ରୂପେ ମନେ କରୁଥିଲେ ହେଁ ସେମାନେ ପ୍ରକୃତରେ ଶ୍ରୀକୃଷ୍ଣଙ୍କ ମାୟାସୃଷ୍ଟ ନାରୀ । କବି ଦୀନକୃଷ୍ଣ ମଧ୍ୟ ରସକଲ୍ଲୋଳରେ ଗୋପୀମାନଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କୁ 'ମାନସିକେ ବରଣ' କରିବାର ସମସ୍ତ ଆୟୋଜନ କରିଛନ୍ତି ।

କଉଁ ଗୋପୀକା, କୁଚ ଶ୍ରୀଫଳ ଘେନି କରି,
କଲା ନିମନ୍ତ୍ରଣ ଆସୁଁ ମୋର ପ୍ରାଣନାଥ
ତୁମ୍ଭେ ହେ ବେଣୁଧାରୀ ।
କେ ବାହୁ ଯୁଗଳ କରି ଫୁଲମାଳ
ମାନସିକେ କଲା ବରଣ,
କେ ମନ ବଚନ କର୍ତ୍ତବ୍ୟରେ ଲୀନ କରି କୃଷ୍ଣେ ହେଲା ଶରଣ
କେତେ କହିବି ଜଣ ଜଣକେ ଏହି ରୂପେ ।
କଲେ ସ୍ୱୟମ୍ୱର ହରିତ ଅମ୍ବର ଅନଙ୍ଗ ଦେଇ ଫୁଲ ଚାପେ ।
(୪-୧୧-୭୩ରୁ ୮୨)

ଗୋପୀ ଓ ଶ୍ରୀକୃଷ୍ଣଙ୍କ ପ୍ରେମର ଅନ୍ୟ ଗୋଟିଏ ବିଭାବ କୁସୁମ ଓ ମଧୁକର ଉପମାରେ ପରିଲକ୍ଷିତ ହୁଏ । ରସକଲ୍ଲୋଳରେ ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ବାରମ୍ବାର ମଧୁକର ସହିତ ତୁଳନା କରିଛନ୍ତି । ମଧୁକର କୁସୁମରୁ ମଧୁପାନ କରିବା ପରେ ଉଡ଼ିଯାଏ । କମଳ ଓ କିଂଶୁକର ପାର୍ଥକ୍ୟ ସେ ବୁଝିପାରେ ନାହିଁ। ତେଣୁ କୁସୁମ ସହ ମଧୁକରର ପ୍ରେମ ସ୍ୱାର୍ଥଜଡ଼ିତ । ଦୀନକୃଷ୍ଣ ଏ ପ୍ରକାର

ପ୍ରେମକୁ କାର୍ଯ୍ୟଘେନା ପ୍ରୀତି କହିଛନ୍ତି । ମଧୁକର ସହ ଶ୍ରୀକୃଷ୍ଣଙ୍କର ସମାନତା ହେଉଛି ଯେ ସେ ମଧ୍ୟ ବହୁ ଗୋପୀଙ୍କର ରସିକ । ଆଳଙ୍କାରିକଙ୍କ ଭାଷାରେ ସେ ହେଉଛନ୍ତି, ଦକ୍ଷିଣ ନାୟକ । ଜଣେ ନାୟକର ବହୁ ନାୟିକା ସହ ଯୌନ ସଂପର୍କକୁ ହିନ୍ଦୁ ସମାଜ ଆଦର୍ଶ ରୂପେ ଗ୍ରହଣ କରୁ ନଥିଲେ ବି ବହୁବିବାହ ପ୍ରଥା ଏ ଦେଶରେ ଅଚଳ ନୁହେଁ । ସଂସ୍କୃତ କାବ୍ୟ ସବୁରେ ମଧ ଏ ଚଳଣି ପ୍ରକାଶ ପାଇଛି । ରାଜାଙ୍କ ଅନ୍ଦର ମହଲରେ ବହୁ ରାଣୀ ଥିବା ସତ୍ତ୍ୱେ, ରାଜା କୌଣସି ନବ ଯୁବତୀର ରୂପରେ ଅସକ୍ତ ହେବା ସାଧାରଣ କଥା । ଗୋପୀନାଥ ଶ୍ରୀକୃଷ୍ଣ ମଧ୍ୟ ରାଧାଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇ ରାଧାକାନ୍ତ ହୋଇଛନ୍ତି । ନାୟକର ରସିକତା ଦୃଷ୍ଟିରୁ ସଂସ୍କୃତ କାବ୍ୟର ନରେଶ ଓ ବ୍ରଜରାଜଙ୍କ ମଧରେ ବହୁ ସମାନତା ଦେଖିବାକୁ ମିଳୁଥିଲେ ହେଁ ନାୟିକାର ମନୋଦଶା ବିଶ୍ଳେଷଣ କଲାବେଳେ ବହୁ ବୈଷମ୍ୟ ପରିଦୃଷ୍ଟ ହୁଏ । କୌଣସି ନାୟକର ଜଣକ ପରେ ଜଣେ ନାୟିକା ସହ ପ୍ରେମ କରିବା ସମ୍ଭବ କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ସମୟରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ବହୁ ନାୟିକାଙ୍କ ସହ ପ୍ରେମ କରିବା ଏକାବେଳକେ ଅସମ୍ଭବ । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ଗୋପପୁରର ନାୟିକାମାନେ ରସିକଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କର ଏ ପ୍ରକାର ଆଚରଣ ନିଜ ଆଖିରେ ଦେଖି, ଆନନ୍ଦରେ ସହ୍ୟ କରୁଛନ୍ତି । ସାଧାରଣ ନାୟିକାମାନଙ୍କଠାରୁ ଗୋପୀମାନଙ୍କ ପ୍ରଥମ ଓ ପ୍ରଧାନ ପାର୍ଥକ୍ୟ ଏଇଠି ଦେଖି ହୁଏ । ଗୋପୀମାନଙ୍କର ପ୍ରେମ କେବଳ କାମୁକତାରୁ ଆରମ୍ଭ ହୋଇଥିଲେ ଏହା ହୁଏତ ସମ୍ଭବ ହୋଇ ନ ଥାନ୍ତା । କାମୁକତା ସହ ବୈଷ୍ଣବ କବିମାନେ ପ୍ରେମ ଓ ଭକ୍ତିର ସମ୍ମିଶ୍ରଣ କରିଛନ୍ତି । ପ୍ରେମ ଓ ଭକ୍ତି କ୍ଷେତ୍ରରେ ଗୋଟିଏ ଆଲମ୍ବନ ଅନେକ ବ୍ୟକ୍ତିକୁ ଏକାସମୟରେ ଆଶ୍ରୟ ଦେଇପାରେ ।

ସାଧାରଣ ନାୟିକାଠାରୁ ଗୋପୀମାନଙ୍କର ଅନ୍ୟ ଗୋଟିଏ ପାର୍ଥକ୍ୟ ହେଉଛି ଯେ ସେମାନଙ୍କର ପୃଥକ ବ୍ୟକ୍ତିତ୍ୱ ନାହିଁ । ଶ୍ରୀକୃଷ୍ଣଙ୍କ ସହ ପରିହାସ କରୁଥିବା, ମଥୁରା ଯିବା କାଳରେ ଶ୍ରୀକୃଷ୍ଣଙ୍କୁ ଅନୁନୟ କରୁଥିବା, ଉଦ୍ଧବ ସହ ତର୍କ କରୁଥିବା ଗୋପୀମାନଙ୍କଠାରେ ପାଠକ ଏକ ହୃଦୟ, ଏକ ମନ, ଏକ ବଚନ, ଏକ ପ୍ରକାର କର୍ତ୍ତବ୍ୟ ଓ ଏକ ପ୍ରକାର ବ୍ୟକ୍ତିତ୍ୱର ସନ୍ଧାନ ପାଇଥାନ୍ତି । ସେମାନଙ୍କ ମଧରେ କୌଣସି ପାର୍ଥକ୍ୟ ନ ଥିବାରୁ ପରସ୍ପର ପ୍ରତି ଈର୍ଷା ମଧ ନାହିଁ । ଶ୍ରୀକୃଷ୍ଣଙ୍କ ସହ ସେମାନଙ୍କର ପରିଚୟ, ମିଳନ ଓ ବିରହ ସାମୂହିକ ରୂପରେ ସମାହିତ ହୋଇଛି । ଜଳକ୍ରୀଡ଼ା, ହାସ ପରିହାସ, ବନ ଭ୍ରମଣ ପ୍ରଭୃତି

ସଂଯୋଗକାଳୀନ ଲୀଳାରେ ସେମାନେ ଯେଉଁ ଆନନ୍ଦ ପାଉଛନ୍ତି, ତାହା ସମସ୍ତଙ୍କ ପାଇଁ ସମାନ । ବିରହ ବେଳାରେ ମଧ୍ୟ ସମାନ ଦଶା । ରସକଲ୍ଲୋଳର ଶୃଙ୍ଗାର ଚିତ୍ରଣକୁ ଶ୍ରୀମଦ୍‌ଭାଗବତ ସହ ତୁଳନା କଲେ ରସକଲ୍ଲୋଳକୁ ଶ୍ରୀକୃଷ୍ଣ ଚରିତ୍ରର ବୈଶିଷ୍ଟ୍ୟ ସହଜରେ ଜାଣି ହୁଏ । ଭାଗବତର ଶ୍ରୀକୃଷ୍ଣ ହେଉଛନ୍ତି ପରମବ୍ରହ୍ମ । ସେ ନିଜର ବ୍ରହ୍ମ ରୂପକୁ କୌଣସି ସ୍ଥାନରେ ଭୁଲି ପାରିନାହାନ୍ତି । ତାଙ୍କର ଗୋପୀମାନଙ୍କ ପ୍ରତି କୌଣସି ଆକର୍ଷଣ ନାହିଁ । ଗୋପୀମାନଙ୍କ କାମନା ପରିପୂର୍ଣ୍ଣ କରିବାପାଇଁ ସେ ରାସଲୀଳା ସମ୍ପାଦନା କରିଛନ୍ତି । ଅଥଚ ରସକଲ୍ଲୋଳର ଶ୍ରୀକୃଷ୍ଣ ନିର୍ଲିପ୍ତ ନୁହନ୍ତି । ଗୋପୀମାନଙ୍କ ରୂପରେ ତାଙ୍କ ମନ ଚଞ୍ଚଳ ହୋଇ ଯାଇଛି । ଭାଗବତର ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ପରମବ୍ରହ୍ମ ରୂପେ ସବୁବେଳେ ଭଜନ କରିଛନ୍ତି । ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ମହିମା ମଧ୍ୟ ଅନନ୍ତ । ଗୋପୀମାନେ ତାଙ୍କର କିଣାଦାସୀ । ଏ ଭାବନା ସତ୍ତ୍ୱେ ଶ୍ରୀକୃଷ୍ଣ କପଟେ ମାନବ ରୂପ ଧାରଣ କରି ସାଧାରଣ ମନୁଷ୍ୟ ପରି ଆଚରଣ କରିଛନ୍ତି । ତେଣୁ ମାନବ ଶରୀରଧାରୀ ଗୋପୀମାନେ ତାଙ୍କ ସହ ହାସ ପରିହାସ କରିବାରେ କୌଣସି ଅସୁବିଧା ନାହିଁ । ଶ୍ରୀକୃଷ୍ଣଙ୍କ ଅନୁପସ୍ଥିତିର ବଳରାମ ବାରୁଣୀ ପାନ କରି ଗୋପୀମାନଙ୍କ ସହ ରାସଲୀଳା କରିଥିବା ଭାଗବତରେ ବର୍ଣ୍ଣିତ । ଗୋପୀମାନଙ୍କ ପ୍ରେମର ପରାକାଷ୍ଠା ଦୃଷ୍ଟିରୁ ଏହା ଅତ୍ୟନ୍ତ ଅସ୍ୱାଭାବିକ । ଭାଗବତକୁ ଅନେକ କ୍ଷେତ୍ରରେ ଅନୁସରଣ କରୁଥିଲେ ମଧ୍ୟ ଅସ୍ୱାଭାବିକତା ଦୃଷ୍ଟିରୁ ଦୀନକୃଷ୍ଣ ରସକଲ୍ଲୋଳରେ ଭାଗବତର ଏହି ଅଂଶକୁ ପରିହାର କରିଛନ୍ତି ।

ରସକଲ୍ଲୋଳରେ ଗୋପୀ ଭାବ ପ୍ରାଧାନ୍ୟ ଲାଭ କରିଥିଲେ ହେଁ, ଶ୍ରୀରାଧା ତଥା ରାଧା ଭାବ ଅବହେଳିତ ନୁହେଁ । ଶ୍ରୀରାଧାଙ୍କ ଚରିତ୍ର ଦୀନକୃଷ୍ଣଙ୍କ ଲେଖନୀର ଏକ ସଂଯତ ସୃଷ୍ଟି । ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା କାଳରେ ରାଧାଙ୍କର କୌଣସି ସୂଚନା ରସକଲ୍ଲୋଳରୁ ମିଳେ ନାହିଁ । କାଳୀ-ମର୍ଦ୍ଦନ ପରେ ରାଧାଙ୍କ ସହ ପାଠକମାନଙ୍କର ପ୍ରଥମ ପରିଚୟ ହୁଏ । ଗୋପୀମାନେ କୁଙ୍କୁମ, ଅଁଳା ଧରି କାଳିନ୍ଦୀରେ ସ୍ନାନ କରିବା ପାଇଁ ରାଧିକାଙ୍କୁ ଅନୁରୋଧ କରିଛନ୍ତି । ଦୀନକୃଷ୍ଣଙ୍କ ବର୍ଣ୍ଣନାରୁ ରାଧା ବା ରାଧିକାଙ୍କର ଯେଉଁ ପରିଚୟ ମିଳେ ସେଥିରୁ ସେ କଉତୁକ କଥା ରଚନା ଓ ହସ ରସ ପ୍ରିୟା ନାୟିକା ଥିବା ଜଣାପଡ଼େ । କୃଷ୍ଣବର୍ଣ୍ଣ ପ୍ରାଣିଠାରେ ତାଙ୍କର ଭାରୀ ଶ୍ରଦ୍ଧା ଥିଲେ ବି କୃଷ୍ଣଙ୍କ ଭୟ ମନରୁ ଯାଇନାହିଁ । ଶ୍ରୀରାଧାଙ୍କ ପ୍ରଥମ ସୂଚନାରୁ ତାଙ୍କର ଶ୍ରୀକୃଷ୍ଣଙ୍କ ସହ ପୂର୍ବରୁ ପରିଚୟ

ଥିବା ଓ ସେ ଶ୍ରୀକୃଷ୍ଣଙ୍କ ପ୍ରତି ଆକୃଷ୍ଟ ହୋଇଥିବା ଜଣାପଡ଼େ । 'ଶ୍ରୀରଙ୍ଗ ଭୟ ଚ ଥାଇଁ ଆସିବାକୁ' ଉକ୍ତିରୁ ରାଧାଙ୍କ ଶ୍ରୀକୃଷ୍ଣଙ୍କ ପାଇଁ ଲୋକହସା ହେଉଥିବା ଓ ସେଥିପାଇଁ ସର୍ବଦା ସଶଙ୍କିତ ଥିବା ଅନୁମାନ କରାଯାଇ ପାରେ । ରସକଲ୍ଲୋଳରେ ଶ୍ରୀରାଧାଙ୍କର ଦ୍ୱିତୀୟ ଆବିର୍ଭାବ ହୁଏ ଦଶ ଛାନ୍ଦରେ । ସେତେବେଳେ ବି ସେ ସଖିଗଣ ଘେଡ଼ି କାଳିନ୍ଦୀରେ ସ୍ନାନ କରିବା ଉଦ୍ଦେଶ୍ୟରେ ବାହାରିଛନ୍ତି । ଦୀନକୃଷ୍ଣଙ୍କ ପାଇଁ ଏହି ସମୟ ହେଉଛି ତ୍ରିଭୁବନେ ନିରୁପମା ରାଧାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନାର ପ୍ରକୃଷ୍ଟ ସୁଯୋଗ । କେଶରୁ ପାଦ ପର୍ଯ୍ୟନ୍ତ ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାରେ କବି ମୁଗଧ । ପ୍ରତ୍ୟେକ ଅଙ୍ଗ-ଦର୍ଶନାରେ ସେ ମହାସୁଖ ଲାଭ କରିଛନ୍ତି । ରାଧାଙ୍କ ରମଣୀୟତାର ସାର୍ଥକତା ହେଉଛି ଯେ ତାଙ୍କର ସୌନ୍ଦର୍ଯ୍ୟରେ ଶ୍ରୀକୃଷ୍ଣ ଆକୃଷ୍ଟ । କବି କହିଛନ୍ତି,

କେ କହିବ ରାଧା ଚନ୍ଦ୍ରମୁଖୀ ରୂପ କୃଷ୍ଣ ମନ ଯହିଁ ଧରା । ୧୦-୧୪

ଗୋପୀକୃଷ୍ଣ ରାସ ପରେ ରାଧା ତୃତୀୟ ଥର ପାଇଁ ରସକଲ୍ଲୋଳରେ ଆବିର୍ଭୂତ ହୋଇଛନ୍ତି । ସେତେବେଳେକୁ ସେ ଶ୍ରୀକୃଷ୍ଣଙ୍କର କାନ୍ତା । ରାଧା-କୃଷ୍ଣ-କେଳି ବର୍ଣ୍ଣନା କରିବା ଛଳରେ କବି ଶ୍ରୀରାଧାଙ୍କର ଦୁଇଟି ମହତ୍ତ୍ୱପୂର୍ଣ୍ଣ ଗୁଣର ସୂଚନା ଦେଇଛନ୍ତି । ପ୍ରଥମ ହେଉଛି, ରାଧାକୃଷ୍ଣ ପ୍ରେମର ସ୍ୱରୂପ । କବିଙ୍କର ଦୃଢ଼ ବିଶ୍ୱାସ ହେଉଛି ଯେ ରାଧା ଓ କୃଷ୍ଣଙ୍କର ମିଳନ କେବଳ ଏ ଯୁଗରେ ନୁହେଁ । ପ୍ରତ୍ୟେକ ଯୁଗରେ ରାଧା ଓ କୃଷ୍ଣ ଜନ୍ମ ଲାଭ କରି ପ୍ରେମ ସୂତ୍ରରେ ଆବଦ୍ଧ ହୁଅନ୍ତି । ଶ୍ରୀକୃଷ୍ଣଙ୍କୁ ରାଧାଙ୍କର ଉପପତି ଓ ରାଧାଙ୍କୁ ଶ୍ରୀକୃଷ୍ଣଙ୍କର ପରକୀୟା ରମଣୀ ରୂପେ ଗ୍ରହଣ କରୁଥିବା ବୈଷ୍ଣବମାନଙ୍କୁ ଦୀନକୃଷ୍ଣଙ୍କର ଏହା ହେଉଛି ପ୍ରକୃତ ପ୍ରତ୍ୟୁତ୍ତର । ରାଧାଙ୍କର ଦ୍ୱିତୀୟ ସ୍ୱରୂପ ହେଉଛି ସେ ମାନବୀ ନୁହନ୍ତି, ଦେବୀ । ଭଗବାନଙ୍କ ନାମ ସ୍ମରଣରେ ପାପ ଦୂର ହୁଏ । ସେହିପରି ରାଧାଙ୍କ ନାମ ଆଗରେ ଓ କୃଷ୍ଣନାମ ପଛରେ ରଖି ରାଧାକୃଷ୍ଣ ନାମ ଜପ କରୁଥିବା ଭକ୍ତମାନଙ୍କର କେବଳ ଯେ ଦୁରିତ ନାଶ ହୁଏ ତାହା ନୁହେଁ, ସେମାନେ ମୁକ୍ତି ବି ପାଇଥାନ୍ତି । ରସକଲ୍ଲୋଳରେ ରାଧାଙ୍କ ସହ ଚତୁର୍ଥ ଥର ସାକ୍ଷାତ ହୁଏ, ତ୍ରିଂଶ ଓ ଏକତ୍ରିଂଶ ଛାନ୍ଦରେ । ସେତେବେଳେ ମଥୁରା ପ୍ରବାସୀ ଶ୍ରୀକୃଷ୍ଣ ଗୋପୀମାନଙ୍କ ବିରହରେ ଅତ୍ୟନ୍ତ ବ୍ୟଥିତ । ନିଜର ଅନ୍ତରଙ୍ଗ ସଖା ଉଦ୍ଧବଙ୍କ ସମ୍ମୁଖରେ ଗୋପୀ ମାନଙ୍କ ଗୁଣ ସ୍ମରଣ କରିବା ସଙ୍ଗେ ସଙ୍ଗେ ସେ ଶ୍ରୀରାଧାଙ୍କ ଗୁଣାବଳୀର କୀର୍ତ୍ତନ କରି ସନ୍ତପ୍ତ ହୋଇଛନ୍ତି ।

ରସକଲ୍ଲୋଳରୁ ଶ୍ରୀରାଧାଙ୍କ ଚରିତ୍ରକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଦୀନକୃଷ୍ଣଙ୍କ ରାଧା ଓ ଗୋପୀ ମଧ୍ୟରେ ପାର୍ଥକ୍ୟ ଅତି କ୍ଷୀଣ । ସେଥିପାଇଁ ସବୁସ୍ଥାନରେ ରାଧାଙ୍କୁ ଅଲଗା କରି ଦେଖାଇବାର ଆବଶ୍ୟକତା କବି ଅନୁଭବ କରିନାହାନ୍ତି । ଫଳରେ ରାଧାଙ୍କ ସହ ସମ୍ପୃକ୍ତ ବହୁ ଲୀଳାର ଉଲ୍ଲେଖ ରସକଲ୍ଲୋଳରେ ଥିଲେ ହେଁ, ରାଧା ସେଠି ନାହାନ୍ତି । ଯେପରିକି ଶ୍ରୀକୃଷ୍ଣଙ୍କ କାଚରା, ଶଙ୍ଖାରି, କଇବର୍ତ୍ତ, ମାଳୀ, କାଳାଭୂତ, ଘଟୁଆ, କଳାମେଘ ରୂପ ଓ ନଟବର ବେଶ । ଦୀନକୃଷ୍ଣଙ୍କ ଅଳଙ୍କାର ବୋଲି, ନାବକେଳି, ଭୂତକେଳି ଓ ପଦ୍ମତୋଳା ପ୍ରଭୃତି ଗ୍ରନ୍ଥରୁ ଶ୍ରୀକୃଷ୍ଣଙ୍କ କାଚରା, ଘଟୁଆଳ, କଳାଭୂତ ଓ ନଟବର ପ୍ରଭୃତି ବେଶ ମୁଖ୍ୟତଃ ରାଧାଙ୍କ ପାଇଁ ଅଭିପ୍ରେତ ହୋଇଥିବା ଜଣାଯାଏ । ଅଥଚ ରସକଲ୍ଲୋଳରେ ଏ ସବୁ ପ୍ରସଙ୍ଗ ଗୋପୀ ଲୀଳାର ଅଂଶବିଶେଷ । ରାଧାଙ୍କର ଉଲ୍ଲେଖ ଏପର୍ଯ୍ୟନ୍ତ ଏଥିରେ ହୋଇନାହିଁ । ରସକଲ୍ଲୋଳରେ ଗୋପୀ ଓ ଶ୍ରୀକୃଷ୍ଣଙ୍କ ସ୍ନେହ ପ୍ରୀତି ବାଣୀ ବା ବକ୍ରବାଣୀର ଯେଉଁ ଉତ୍ସ ପ୍ରବାହିତ ହୋଇଛି ତାହା ରାଧାକେନ୍ଦ୍ରିତ ନ ହୋଇ ବ୍ରଜପୁରର ସମସ୍ତ ଗୋପୀପାଇଁ ଉଦ୍ଦିଷ୍ଟ । ରସକଲ୍ଲୋଳର ରାଧା ମାନବୀ ନ ହୋଇ ଦେବୀ ହୋଇଥିବାରୁ ରସକଲ୍ଲୋଳକାର ରାଧାଙ୍କର ସାମାଜିକ ସମ୍ପର୍କ ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବ । ବୈଷ୍ଣବ ଶାସ୍ତ୍ରସବୁରେ ରାଧା ବୃଷଭାନୁ-ନନ୍ଦିନୀ, ଅଭିମନ୍ୟୁ ପତ୍ନୀ, ଜଟିଳାବଧୂ ରୂପେ ପରିଚିତ । ରସକଲ୍ଲୋଳରେ ରାଧାଙ୍କୁ କେବଳ କୁମୁଦନନ୍ଦିନୀ ବା କଇରବ-ନନ୍ଦିନୀ କୁହାଯାଇଛି । ତାଙ୍କର ଶାଶୁ, ନଣନ୍ଦ, ସ୍ୱାମୀ ଓ ପିତାଙ୍କର ଉଲ୍ଲେଖ ଏଥିରେ ନାହିଁ । ତାଙ୍କର ଏକମାତ୍ର ପରିଚୟ ହେଉଛି, ସେ ଶ୍ରୀକୃଷ୍ଣଙ୍କର କାନ୍ତା-କାନ୍ତା ଶିରୋମଣି । ଗୋପୀମାନେ ଶ୍ରୀକୃଷ୍ଣଙ୍କର କାନ୍ତା ହେବାପାଇଁ ଶ୍ରୀକୃଷ୍ଣଙ୍କୁ ମାନସିକେ ବରଣ କରିଥିଲେ । ରାଧାଙ୍କ ପାଇଁ ଏ ସବୁ ବିଧିବିଧାନର କୌଣସି ଆବଶ୍ୟକତା ଦୀନକୃଷ୍ଣ ଉପଲବ୍ଧି କରିନାହାନ୍ତି । କାରଣ ସେ ହେଉଛନ୍ତି ଶ୍ରୀକୃଷ୍ଣଙ୍କର ନିତ୍ୟପ୍ରିୟା ।

କୋଟି କୋଟି କଳ୍ପାନ୍ତେ ତୋ ଅଙ୍ଗ ସଙ୍ଗ
କେତେବେଳେହେଁ ହୋଇନାହିଁ ବିଭଙ୍ଗରେ ।

ଶ୍ରୀକୃଷ୍ଣଙ୍କ ମହିମା ଅନନ୍ତ । ଶିବ କଳପେ ବସି କଳପିଲେ ବି ଏହା ବର୍ଣ୍ଣନା କରିବାକୁ ଅକ୍ଷମ । ଗଗନ ତାରାର ସଂଖ୍ୟା ଲେଖାଯାଇପାରେ । ବରଷାଧାରାକୁ ଗଣନା କରାଯାଇପାରେ, ସିନ୍ଧୁ ଲହରୀକୁ ମଧ୍ୟ ଗଣନା

କରାଯାଇପାରେ, ସମୁଦ୍ରକୁ ହୁଏତ କେହି ପହଁରି ଯାଇପାରନ୍ତି, କିନ୍ତୁ କୃଷ୍ଣ ମହିମାକୁ ବର୍ଣ୍ଣନା କରିବା ଏକାବେଳେକେ ଅସମ୍ଭବ । କୃଷ୍ଣନାମ ଜପରେ ଯେତେ ପୁଣ୍ୟ ହୁଏ, ମଣିଷ ସେତେ ପାପ କରିପାରେ ନାହିଁ । ଶ୍ରୀକୃଷ୍ଣ ନିଜର ବିଚିତ୍ର ମହିମା ବଳରେ ସମସ୍ତଙ୍କୁ ଜଠର ଜଳରୁ ପାର କରାଇଥାନ୍ତି । ତେଣୁ ତାଙ୍କର ସେବା କରିବା ସମସ୍ତଙ୍କର କର୍ତ୍ତବ୍ୟ । ଯିଏ ନ କରେ କବି ଦୀନକୃଷ୍ଣ ସେମାନଙ୍କୁ କୃତଘ୍ନ କହିଛନ୍ତି । ଶ୍ରୀକୃଷ୍ଣ ଜଗନ୍ନାଥଙ୍କର ସ୍ୱୟଂରୂପ ହେଲେ ବି କପଟରେ ମାନବ ରୂପ ଧାରଣ କରି ଗୋପୀମାନଙ୍କ ସହ କ୍ରୀଡ଼ା କରିଛନ୍ତି । ବ୍ରହ୍ମା, ଶିବ ପ୍ରଭୃତି ଦେବତା ଯାହାଙ୍କୁ ବହୁଭାବରେ ସ୍ତୁତି କରି ମଧ୍ୟ ବଶ କରିବାକୁ ଅକ୍ଷମ, ଗୋପୀ ଓ ଗୋପାଳଙ୍କ ନିକଟରେ ସେ ସବୁକାଳେ ଯେ କେବଳ ସୁଲଭ ତାହା ନୁହେଁ, ଗୋପୀମାନଙ୍କ କଉତୁକ ଡାକ ଶୁଣିବାପାଇଁ ସବୁବେଳେ ଲାଳାୟିତ । ଶ୍ରୀକୃଷ୍ଣଙ୍କର ରୂପ, ଗୁଣ ଓ ସର୍ବୋପରି ବିଚିତ୍ର ମହିମା କବି ଦୀନକୃଷ୍ଣଙ୍କୁ ମୁଗ୍ଧ କରିରଖିଛି । ସେଥିପାଇଁ ଶ୍ରୀକୃଷ୍ଣଙ୍କ ରୂପ ବର୍ଣ୍ଣନା କଲାବେଳେ, ମହିମା ଗାନ କଲା ବେଳେ କବିଙ୍କୁ ଉପମା ମିଳିନାହିଁ । ଏ ସବୁ ଦିଗରୁ ଦେଖିଲେ ଦୀନକୃଷ୍ଣଙ୍କ ଶ୍ରୀକୃଷ୍ଣ ପରମ୍ପରାରୁ ବହୁଭାବରେ ସ୍ୱତନ୍ତ୍ର ।

## (୬)
## କର ରସ ଜାତ
## କରି ଧୀଷଣା ମନ୍ଦର ପର୍ବତ

"I....... read the poem again and again, to get near it. However, the more I penetrated into it the more significant and higher in art did it seem"-Eckerman, Conversation with Goethe. P.-22

ରସକଲ୍ଲୋଳର ପ୍ରଥମ ଛାନ୍ଦରେ ପ୍ରତି ପାଦରେ ଆଦ୍ୟ ଓ ଅନ୍ତ ଅକ୍ଷର ହେଉଛି, କ । ଅନ୍ୟ ଛାନ୍ଦରେ ଏ ନିୟମ ନାହିଁ । ସେଠି କେବଳ ପ୍ରତି ପାଦର ମୂଳ ଅକ୍ଷରକୁ କ ରଖାଯାଇଛି । କବି ଏହାକୁ କ ନିୟମ କୁହନ୍ତି । କ ଅକ୍ଷରେ ହୋଇଛି ନିୟମ । ଅଥଚ କାବ୍ୟର ନାଁ ଦେଲାବେଳକୁ ଏଇ ନିୟମର ସଂପୂର୍ଣ୍ଣ ବ୍ୟତୀକରଣ କରି ନାଁ ଦେଇଛନ୍ତି 'ରସକଲ୍ଲୋଳ' । ସମସାମୟିକ ସାହିତ୍ୟିକ ପରମ୍ପରାର ଏହା ଏକ ପ୍ରଧାନ ଓ ପ୍ରସିଦ୍ଧ ବ୍ୟତିକ୍ରମ । ସ ଅକ୍ଷର ନିୟମରେ 'ସୁଭଦ୍ରା ପରିଣୟ' ହେଲାପରି, ବା ବ ଅକ୍ଷର ନିୟମରେ 'ବୈଦେହିଶ ବିଳାସ' ପରି, କବି କ ଅକ୍ଷର ନିୟମକୁ ଅନୁସରଣ କରି ଏହିପରି କିଛି ନାମ ଦେଇପାରିଥାନ୍ତେ । କିନ୍ତୁ ସେ ତାହା କରି ନାହାନ୍ତି । କଲ୍ଲୋଳ ଶବ୍ଦ ପାଖରେ ଥାଉ ଥାଉ କବି ରସ ଶବ୍ଦକୁ ଆଗରେ ରଖିଛନ୍ତି । ଫଳରେ କ ଅକ୍ଷରରେ ଗୀତ ଗାଇବାପାଇଁ ସ୍ଥିର ଆସନ କବିଙ୍କର ସମସ୍ତ ଶ୍ରମ ଏଇ ତ୍ରୁଟି ପାଇଁ ଆଲୋଚିତ ହୋଇଛି ଓ କବି ଉପେନ୍ଦ୍ର ଏଇ ତ୍ରୁଟିର ଉତ୍ତର ଦେଇ କଳାକଉତୁକ ରଚନା କରିଥିବା ଲୋକେ କୁହନ୍ତି ।

କାବ୍ୟ ରଚନାରେ ଅନୁସୃତ ହୋଇଥିବା କ ନିୟମର ଗତି ଓ ପରିଣତିରୁ କବି ମନର ତିନୋଟି ଅବସ୍ଥାର ପରିଚୟ ମିଳେ । ପ୍ରଥମ ଅବସ୍ଥାରେ କବି କ ନିୟମକୁ ପାଦର ଆଦ୍ୟ ଓ ପ୍ରାନ୍ତରେ ରଖି ସମସ୍ତ କାବ୍ୟ ରଚନାର ପରିକଳ୍ପନା ସ୍ପଷ୍ଟ । ପରବର୍ତ୍ତୀ ଛାନ୍ଦ ସବୁରେ ଏହା ତ୍ୟାଗ କରିଥିବା ହେତୁ ଜଣାପଡ଼େ ଯେ କବି ଏଇ ନିୟମ ଦ୍ୱାରା ତୃପ୍ତ ନୁହନ୍ତି । ନିୟମ କାବ୍ୟରେ ରସ ସୃଷ୍ଟିର ଉପକରଣ ସତ, କିନ୍ତୁ ଏହାର ଅକାରଣ ଅନୁକରଣ କାବ୍ୟକୁ କ୍ଲିଷ୍ଟ ଓ ଶ୍ରୀହୀନ କରି ରସଜାତ କରିବାରେ ବ୍ୟାଘାତ ଦିଏ । ସେଥିପାଇଁ କବିଙ୍କୁ ନିଜ ମନର ଏଇ ସଙ୍କଳ୍ପକୁ ଛାଡ଼ିବାକୁ ପଡ଼ିଛି । କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିବାପାଇଁ ଏଇ

ନିୟମର ଯେତିକି ଆବଶ୍ୟକତା, କବି ସେତିକି ଗ୍ରହଣ କରିଛନ୍ତି । ସେଇ ହେଉଛି କବିଙ୍କର କଅ ନିୟମ ଓ ତାଙ୍କ ମନର ଦ୍ୱିତୀୟ ଅବସ୍ଥା । ଏଇ ନିୟମକୁ ଅନୁସରଣ କରି ଅର୍ଥାତ୍ କ କୁ କେବଳ ଆଦ୍ୟରେ ରଖି ସମସ୍ତ କାବ୍ୟ ରଚିତ । ଜନ୍ମ ପରେ ନାମକରଣ ଉତ୍ସବ । ଏଇ ନାଁଦ୍ୱାରା ସମସ୍ତେ ଜଗତରେ ପରିଚିତ ହୁଅନ୍ତି । ପରିବାରରେ ଏହା ଗୋଟିଏ ଶୁଭଦିନ । ଶ୍ରୀକୃଷ୍ଣଙ୍କର ନାମକରଣ କରି ଗର୍ଗ ଋଷି ଯେପରି ତୋଷ ହୋଇଛନ୍ତି, କବି ସେହିପରି ସେହି ଶବ୍ଦ କର୍ଣ୍ଣବିଳରେ ରଖି କୃତାର୍ଥ ହୋଇଛନ୍ତି । ଦ୍ୱିଜମାନଙ୍କର ଆଗମନରେ, ନୃତ୍ୟକାରର ନୃତ୍ୟରେ, ବନ୍ଦୀଗଣଙ୍କର କୟେବାରରେ, ନନ୍ଦଙ୍କର ଦାନ ଓ ଆଭରଣରେ ସମସ୍ତ ଗୋପପୁର ତନ୍ମୟ ହୋଇ ଉଠିଛି । କଳାକରର କଳା ପୂର୍ଣ୍ଣ ହେଲେ, ତାହା ଯେପରି କର (କିରଣ) ବିସ୍ତାର କରି ସମସ୍ତ ଜଗତରୁ ଅନ୍ଧକାର ଦୂର କରେ, ସେହିପରି ଶ୍ରୀକୃଷ୍ଣଙ୍କର ନାମର ମହିମା ପୁରରୁ ପୁରକୁ ଭେଦ କରି ସମସ୍ତ ଜଗତକୁ ପରିବ୍ୟାପ୍ତ କରିଅଛି । କୃଷ୍ଣ କଥା ରସର ପ୍ରକାଶକ ରସକଲ୍ଲୋଳର ନାମକରଣରେ ଶ୍ରୀକୃଷ୍ଣ ନାମକରଣର ଏଇ ତନ୍ମୟତାକୁ ଅଲଗା କରି ହୁଏନି । କବି କୁହନ୍ତି କବିତା ବନିତା, କବି ତା ପିତା । ପିତା ଆସନରେ ଆସୀନ କବି, କାବ୍ୟବନିତାର ନାମକରଣ କଲାବେଳକୁ ନିଜ ହୃଦୟର ସମସ୍ତ ଶ୍ରଦ୍ଧା ଓ ଆଗ୍ରହ କରିଥିବା ସ୍ୱାଭାବିକ । ଏହାରି ମଧ ଦେଇ କବି ମନର ତୃତୀୟ ଅବସ୍ଥାରେ ପହଞ୍ଚିବାକୁ ହୁଏ । କାବ୍ୟର ନାମକରଣ କରିବା ପାଇଁ କବି ସମ୍ମୁଖରେ ଦୁଇଟି ଉପାଦାନ ଥିଲା- ଶରୀରର ସୌନ୍ଦର୍ଯ୍ୟ ଓ ଆତ୍ମା । କାବ୍ୟର ଅନୁସୃତ ଓ ଶରୀରର ସୌନ୍ଦର୍ଯ୍ୟର ପରିମାପକ କ ନିୟମ କାବ୍ୟର ନାମକରଣ ନ ଥିବା ହେତୁ ଏକଥା ସ୍ପଷ୍ଟ ଯେ କବି ଏଇ ନିୟମକୁ କାବ୍ୟର ପ୍ରାଣ ରୂପରେ ଗ୍ରହଣ କରି ନାହାନ୍ତି । ଅନ୍ୟ ପକ୍ଷରେ କାବ୍ୟକୁ ମନ୍ଥନ କରି ଏଥିରୁ ଜାତ ହେଉଥିବା ସାର ପଦାର୍ଥକୁ କବି ରସ କହିଛନ୍ତି । ଏହା ହେଉଛି କାବ୍ୟର ଆତ୍ମା ଓ ଏହାରି ଉପରେ ପ୍ରତିଷ୍ଠିତ କାବ୍ୟର ନାଁ ସେଥିପାଇଁ 'ରସକଲ୍ଲୋଳ' ।

ରସ ଶବ୍ଦର ଦୁଇଟି ଅର୍ଥ ଅଛି । ଗୋଟିଏ ସାଧାରଣ, ଅନ୍ୟଟି ପାରିଭାଷିକ । ସାଧାରଣ ଅର୍ଥରେ ରସ ଶବ୍ଦ ସ୍ୱାଦକୁ ଓ ପାରିଭାଷିକ ଅର୍ଥରେ ରସ ଶବ୍ଦ ଶୃଙ୍ଗାର, ହାସ୍ୟ, କରୁଣ ପ୍ରଭୃତି ଚିତ୍ତବୃତ୍ତିକୁ ବୁଝାଏ । ରସକଲ୍ଲୋଳରେ ରସ ଶବ୍ଦ ଜଳ, ଅମୃତ, ମକରନ୍ଦ ଓ ଭାବ ପୁଣି ଶୃଙ୍ଗାର, ହାସ, ବୀର ଓ

କରୁଣ ପ୍ରଭୃତିର ପ୍ରତିପାଦକରୂପେ ବ୍ୟବହୃତ । ଏହା ବ୍ୟତୀତ କବି କବିତ୍ୱକୁ ମଧ୍ୟ ରସ କୁହନ୍ତି । କବିତ୍ୱ କହିଲେ ନିର୍ମଳ କବିତ୍ୱ । ଏହା କୃଷ୍ଣ କଥାର ପ୍ରକାଶକ ଓ କୃଷ୍ଣକଥା ହେଉଛି ରସ ମଧ୍ୟେ ପୀୟୁଷ । କାବ୍ୟ ମଧ୍ୟରୁ କବିଙ୍କର ବିଭିନ୍ନ ଉକ୍ତିକୁ ବିଶ୍ଳେଷଣ କରି ଦେଖିଲେ ଜଣାପଡ଼ିବ ଯେ ସମସ୍ତ କାବ୍ୟ ରସରେ ପରିପୂର୍ଣ୍ଣ । ପ୍ରକୃତରେ ରସର କଲ୍ଲୋଳ ପ୍ରବାହିତ ହୋଇଚାଲିଛି । କାବ୍ୟର ନାୟକ ଶ୍ରୀକୃଷ୍ଣଙ୍କୁ କବି ରସିକ, ରସିକମଣି, ରସିକରାଜ, ରସିକ ଶେଖର ଓ ରସିକସାଗର ରୂପେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସେଇ କୃଷ୍ଣ କୃପାରେ ସୁରସବନ୍ତା ହୋଇଥିବା ସୁରସିକା ବରଜ ନାୟିକାକୁ କବି ରସିକିନୀ, ରସବତୀ ଓ ରସନିଧି ରୂପରେ ଗ୍ରହଣ କରିଛନ୍ତି । କେହି କାହାରିଠାରୁ ଉଣା ନୁହନ୍ତି । 'କେ କାହାକୁ ଉଜ୍ଜ୍ୱଳର ସେ ନୋହେ ଅତୁଳ ସେ' । ସେମାନଙ୍କର ବାଣୀରେ ରସ ଗର୍ଭିତ । କୁହାକୁହି ହେଉଥିବା ପ୍ରସଙ୍ଗ ହେଉଛି ରସର ପ୍ରସଙ୍ଗ କୃଷ୍ଣ ଗୋପୀଙ୍କର ସ୍ନେହ ଉତ୍ତରରେ କନ୍ଦର୍ପରସ ପରିପୂର୍ଣ୍ଣ । 'କନ୍ଦର୍ପ ରସରେ ପୁଣି ପରସ୍ପରେ ବକ୍ରବଚନ ଭାଷନ୍ତି । ଏହାକୁ କବି ରତିରସ ବି କୁହନ୍ତି । ହସରସ, ପରିହାସ ଓ କଉତୁକରେ ଏହା ବ୍ୟଞ୍ଜିତ । ଏଇସବୁକୁ ମଧୁର ଓ ମନୋହର ଭାଷାରେ ଗୀତ କରି ଭବସିନ୍ଧୁ ତରିବାର ଇଚ୍ଛା କବି ପୋଷଣ କରିଛନ୍ତି । ଦୀନକୃଷ୍ଣଙ୍କ ପ୍ରକୃତ ରସକଲ୍ଲୋଳ ଏଇଠି ଦେଖିହୁଏ ।

ରସକଲ୍ଲୋଳ ନାମର ଯଥାର୍ଥତା ଦର୍ଶାଇବାକୁ ଯାଇ ଡକ୍ଟର ଆର୍ତ୍ତବଲ୍ଲଭ କହିଛନ୍ତି, "କାବ୍ୟ-ଶୃଙ୍ଗାର ବା ମଧୁର ରସାତ୍ମକ-ବାତ୍ସଲ୍ୟ, ବୀର, ଭୟାନକ, କରୁଣ, ହାସ୍ୟଶାନ୍ତାଦି ରସମାନ ପ୍ରସଙ୍ଗ ବିଶେଷ ଅଧିକାର କରିଥିଲେ ହେଁ ସେମାନେ ଗୌଣ, ଅପ୍ରଧାନ; ଶୃଙ୍ଗାର ରସହିଁ ପ୍ରଧାନ, ମୁଖ୍ୟ । ଏହି ରସମାନଙ୍କରେ କୃଷ୍ଣଚରିତ ବର୍ଣ୍ଣିତ ହୋଇଥିବା ହେତୁ କବି ଗ୍ରନ୍ଥର ନାମ ରସକଲ୍ଲୋଳ ଦେଇଅଛନ୍ତି ।" ପଣ୍ଡିତ ସୂର୍ଯ୍ୟନାରାୟଣ ଏହି ଉକ୍ତିର ପୁନରାବୃତ୍ତି କରି କହିଛନ୍ତି, "କାବ୍ୟଟି ରସକଲ୍ଲୋଳ ନାମ ସାର୍ଥକ କରିଛି । ଏଥିରେ ସର୍ବ ରସାଶ୍ରୟ ଲୀଳାପ୍ରିୟ ଶ୍ରୀକୃଷ୍ଣଙ୍କ ବୀର, କରୁଣ, ବାତ୍ସଲ୍ୟ, ଶୃଙ୍ଗାରାଦି ରସର ସମାବେଶ ଅଛି; କିନ୍ତୁ ଏ ରସମାନଙ୍କ ମଧ୍ୟରେ ଏ ଗ୍ରନ୍ଥରେ ଶୃଙ୍ଗାର ରସହିଁ ପ୍ରାଧାନ୍ୟ ଲାଭ କରିଛି ।" ରସକଲ୍ଲୋଳ ଭୂମିକାରେ ଥିବା ଡଃ ଆର୍ତ୍ତବଲ୍ଲଭଙ୍କର ଉକ୍ତି ପୁଣିଥରେ ଅଧ୍ୟାପକ ଗୌରୀକୁମାରଙ୍କ ଦ୍ୱାରା ସମର୍ଥିତ ହୋଇଛି । ଆଳଙ୍କାରିକମାନଙ୍କର ଦ୍ୱାହି ଦେଇ ସେ କହିଛନ୍ତି,- "ଅଳଙ୍କାର ଶାସ୍ତ୍ରର ନିୟମ

ଅନୁସାରେ କାବ୍ୟରେ ଗୋଟିଏ ରସ ମୁଖ୍ୟ ଏବଂ ସେହି ରସର ପୋଷକରୂପେ ଅନ୍ୟ ରସମାନଙ୍କର ଗୌଣ ଭାବରେ ଅବତାରଣା କରା ଯାଇପାରେ ।" ପୁଣି କବି ଉପେନ୍ଦ୍ର ରଚିତ ସୁଭଦ୍ରାପରିଣୟରୁ ଗୋଟିଏ ପଦ ଉଦ୍ଧାର କରି, "ସେହି ସମୟର କବିମାନଙ୍କର ରସ ସମାବେଶ ବିଷୟରେ ଏହାଠାରୁ ବଳି ଆଉ କି ବିଶ୍ୱାସଯୋଗ୍ୟ ପ୍ରମାଣ ଦିଆଯାଇପାରେ ?" ଏଇ ସିଦ୍ଧାନ୍ତରେ ପହଞ୍ଚିଛନ୍ତି; ଓ ରସକଲ୍ଲୋଳରୁ ପ୍ରମାଣ ସଂଗ୍ରହ କରି ଶୃଙ୍ଗାର, କରୁଣ, ହାସ୍ୟ, ଅଦ୍ଭୁତ, ବୀର, ବାତ୍ସଲ୍ୟ ଓ ଶାନ୍ତ ପ୍ରଭୃତି ରସର ଆଲୋଚନା କରିଛନ୍ତି । ଏଇ ସମାଲୋଚକମାନଙ୍କ ଉକ୍ତିର ସାର କଥା ହେଉଛି ଏଇ ରସମାନଙ୍କ ମଧ୍ୟରୁ ଶୃଙ୍ଗାର ମୁଖ୍ୟ, ଅନ୍ୟାନ୍ୟ ଗୌଣ । କାବ୍ୟ-ଶାସ୍ତ୍ର ଆଳଙ୍କାରିକ ସମାଲୋଚକ ରସକଲ୍ଲୋଳକୁ କେବଳ କାବ୍ୟ ଭାବରେ ଦେଖିଛି । ରସ ଚର୍ଚ୍ଚା କଲାବେଳେକୁ ସୁଭଦ୍ରା ପରିଣୟ ଓ ରସକଲ୍ଲୋଳର ପାର୍ଥକ୍ୟ ସେ ବିଚାର କରିନାହିଁ । ନାୟକ ଭାବରେ ଶ୍ରୀକୃଷ୍ଣଙ୍କ ପାର୍ଥକ୍ୟ କେବଳ ତାଙ୍କର ଦକ୍ଷିଣନାୟକତ୍ୱରେ ନାହିଁ । ତାଙ୍କର ଅଶେଷ ମହିମା, ସାଗରଲହରୀ ପରି ଅଗଣିତ । ସେ ଜଗଜ୍ଜିତା, କୋଟି ବ୍ରହ୍ମାଣ୍ଡନାଥ, ତ୍ରୈଲୋକ୍ୟ ବନ୍ଦନ, ଭୁବନାନନ୍ଦ ଓ ଜଗତ ଜୀବନ । ନିଜର ଭକ୍ତ ବା ସେବକର ଦୁଃଖକଷ୍ଟ ଦୂର କରୁଥିବା ହେତୁ କବି ତାଙ୍କୁ କୋଟି ଦୁଃଖହରା, କଷ୍ଟତରୁ ପ୍ରଭଞ୍ଜନ, ଭଗତ ପ୍ରିୟ, କୃପାସରିତପତି, ଦାସ ବତ୍ସଳବାନା, ସେବକବତ୍ସଳ ଓ ଭକ୍ତମାନ ଉଦ୍ଧାରଣ କହିଛନ୍ତି । ସୁଖ, ଆନନ୍ଦ ଓ ଗତି ଦାନ କରୁଥିବା ହେତୁ ତାହାଙ୍କର ନାମ ହେଉଛି, କଇବଲ୍ୟ ଦାନୀ, ଆନନ୍ଦ କନ୍ଦ, ସୁଖନିବାସ ଓ ଗତି କରତା । ସେ ଜଗନ୍ନାଥଙ୍କର ସ୍ୱୟଂରୂପ । ତାଙ୍କରି ପ୍ରତି ରତି ରସକଲ୍ଲୋଳ ମଧ୍ୟରେ ବିଭିନ୍ନ ଧାରାରେ ପ୍ରକାଶିତ । ବୈଷ୍ଣବ ସମାଲୋଚକ ଏହାକୁ ଭଗବତ୍ ବିଷୟିଣୀ ରତି କହିଥାଏ । କାବ୍ୟରେ ଏହା ହେଉଛି ସ୍ଥାୟୀ ଭାବ । ବିଭାବ, ଅନୁଭାବ, ସାତ୍ତ୍ୱିକ ତଥା ବ୍ୟଭିଚାରୀ ଭାବ ସହ ମିଶି ଏହା ପାଞ୍ଚୋଟି ଭିନ୍ନ ଭିନ୍ନ ସ୍ୱଭାବରେ ପରିଣତ ହୁଏ । ତାହା ହେଉଛି- (୧) ଶାନ୍ତ, (୨) ହାସ୍ୟ, (୩) ସଖ୍ୟ, (୪) ବାତ୍ସଲ୍ୟ ଓ (୫) ମଧୁର । ଏହି ପାଞ୍ଚ ସ୍ୱଭାବ ଅନୁଯାୟୀ ରତି ବି ପାଞ୍ଚ ପ୍ରକାରର ହୁଏ- (୧) ଶାନ୍ତି, (୨) ଦାସ୍ୟ ବା ପ୍ରୀତି, (୩) ସଖ୍ୟ ବା ପ୍ରେୟ, (୪) ବାତ୍ସଲ୍ୟ ବା ଅନୁକମ୍ପା ଓ (୫) କାନ୍ତ ବା ମଧୁର ରତି ।

କାବ୍ୟଶାସ୍ତ୍ରକୁ ଅନୁଶୀଳନ କରୁଥିବା ରସଶାସ୍ତ୍ରଜ୍ଞଙ୍କ ଦ୍ୱାରା କୁହା ଯାଇଥିବା ସାତ ରସ ଅର୍ଥାତ୍ ଶୃଙ୍ଗାର ଓ ଶାନ୍ତକୁ ଛାଡ଼ି ଅବଶିଷ୍ଟ (ହାସ୍ୟ, ଅଦ୍ଭୁତ୍,

ବୀର, କରୁଣ, ରୌଦ୍ର, ଭୟାନକ ଓ ବୀଭତ୍ସ) ଏହି ଭଗବତ ପ୍ରେମରସର ସହାୟକ ହୋଇ ଗୌଣରସ ନାମ ଗ୍ରହଣ କରନ୍ତି ଏବଂ ଶୃଙ୍ଗାର ଓ ଶାନ୍ତରସ ଉପରେ କୁହାଯାଇ ଥିବା ପାଞ୍ଚ ସ୍ଥାୟୀ ଭାବକୁ ଆଶ୍ରୟ କରି ମୁଖ୍ୟ ସ୍ଥାନ ଗ୍ରହଣ କରନ୍ତି । କିନ୍ତୁ ବ୍ୟବହୃତ ଶୃଙ୍ଗାର ଶବ୍ଦରୁ ଆଳଙ୍କାରିକ ଯାହା ବୁଝେ, ଭକ୍ତ ସେ କଥା ବୁଝେନି । ଦୁଇଥିରେ ତାତ୍ତ୍ୱିକ ଭେଦ ଅଛି । ପ୍ରଥମ ଜଡ଼ୋନ୍ମୁଖ ଓ ଦ୍ୱିତୀୟ ଚିନ୍ମୁଖ । ରସକଲ୍ଲୋଳର ରସଚର୍ଚ୍ଚାରେ ଆଳଙ୍କାରିକ ଦୃଷ୍ଟି ଅପେକ୍ଷା ଭକ୍ତର ଦୃଷ୍ଟି ବିଶେଷ ଭାବରେ ପ୍ରତିଫଳିତ । ଏକଥା ନ ବୁଝିଲେ ରସକଲ୍ଲୋଳର ପ୍ରକୃତ ମର୍ମ ବୁଝି ହୁଏନି । କାରଣ ମଧ୍ୟଯୁଗର ସାହିତ୍ୟ କେବଳ ସାହିତ୍ୟ ନୁହେଁ, ଏଥିରେ ଲୋକମନର ବଦ୍ଧମୂଳ ସାଧନା ପଦ୍ଧତିର ପ୍ରତିଫଳନ ବି ଅଛି । ଏହାର ଦ୍ୱିତୀୟ ଅଂଶ ପ୍ରଥମଠାରୁ ମହତ୍ତ୍ୱପୂର୍ଣ୍ଣ । ଡକ୍ଟର ଗ୍ରୀୟରସନ ମଧ୍ୟଯୁଗର ଏଇ ଆନ୍ଦୋଳନକୁ ଲକ୍ଷ୍ୟ କରି କହିଛନ୍ତି ଏଇ ଯୁଗରେ ଧର୍ମ ଜ୍ଞାନର ବିଷୟ ନ ହୋଇ ରସର ବିଷୟ ହୋଇ ଯାଇଥିଲା । ଡକ୍ଟର ଦ୍ୱିବେଦୀ ଏଇ କଥାକୁ ଆହୁରି ସ୍ପଷ୍ଟକରି କୁହନ୍ତି, ଏଇ ଯୁଗରେ ଧର୍ମ ଓ କଳାକୁ ଅଲଗା ଅଲଗା ରଖି ବିଚାର କରି ହୁଏନି । ବାସ୍ତୁଶିଳ୍ପ, ଚିତ୍ରକଳା, କାବ୍ୟ, ନୃତ୍ୟ ଓ ସଙ୍ଗୀତ ସବୁଠି ଏଇ ଗୋଟିଏ କଥା । ତାହା ହେଉଛି ଯେ ଭାରତୀୟ ଅନ୍ତରୀପ ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଭକ୍ତିବିଶେଷ ଭାବରେ ବୈଷ୍ଣବ ଭକ୍ତିର ଶକ୍ତିଶାଳୀ ତରଙ୍ଗଦ୍ୱାରା ଆକ୍ରାନ୍ତ ହୋଇଥିଲା । ରସକଲ୍ଲୋଳ ଆଲୋଚନା କଲାବେଳେ ସମାଲୋଚକ ମଧ୍ୟଯୁଗର ଏଇ ବିରାଟ ପୃଷ୍ଠଭୂମିରୁ ରସକଲ୍ଲୋଳକୁ ଅଲଗା କରିନେଇଛି । ଫଳରେ ରସଚର୍ଚ୍ଚା ଅସଂପୂର୍ଣ୍ଣ - ଏକତରଫା ଡିଗ୍ରୀ କହିଲେ ଅତ୍ୟୁକ୍ତି ହେବନାହିଁ । ବିଷୟବସ୍ତୁ ଦୃଷ୍ଟିରୁ ଏଥିରେ ବାତ୍ସଲ୍ୟ, ସଖ୍ୟ ଓ ମାଧୁର୍ଯ୍ୟ ରସ ରହିବାର କଥା । ବୈଷ୍ଣବ ସମାଲେଚକ ମତରେ ବ୍ରଜଲୀଳାରେ ଶାନ୍ତରସ ପାଇଁ ସ୍ଥାନ ନାହିଁ । କିନ୍ତୁ ରସକଲ୍ଲୋଳରେ କବିର ନୀଳାଚଳ ଧାମପ୍ରତି ଶ୍ରଦ୍ଧା ଜଗନ୍ନାଥଙ୍କ ପ୍ରତି ଭକ୍ତି ପ୍ରଭୃତି ବର୍ଣ୍ଣନାରେ ଶାନ୍ତରସ ରହିଛି । ଶ୍ରୀକୃଷ୍ଣଙ୍କ କ୍ରୀଡ଼ା ସହ ଏହିସବୁ ବର୍ଣ୍ଣନାର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲେ ମଧ କବି ଶ୍ରୀକୃଷ୍ଣଙ୍କୁ ଜଗନ୍ନାଥଙ୍କର ସ୍ୱୟଂରୂପ ରୂପେ ଗ୍ରହଣ କରିଥିବା ହେତୁ ଅନେକ ସମୟରେ ଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କର ଲୀଳାକୁ ମିଶାଇ ଗାଇବାକୁ ପ୍ରଯତ୍ନ କରିଛନ୍ତି ।

କିଶୋରୀ ଗୋପୀ ଦୃଷ୍ଟିରେ ଶ୍ରୀକୃଷ୍ଣ ହେଉଛନ୍ତି, ଚିରକିଶୋର । ରସକଲ୍ଲୋଳରେ ଏହି ଚିରକିଶୋର ଶ୍ରୀକୃଷ୍ଣଙ୍କର ବାଳଲୀଳା ବର୍ଣ୍ଣନା କରିବାକୁ

ଯାଇ କବି ନନ୍ଦ ଓ ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କର ପ୍ରତି ରତି ବା ବାତ୍ସଲ୍ୟ ରସର ପ୍ରକାଶ କରିଛନ୍ତି । ସମସ୍ତ ରସକଲ୍ଲୋଳରେ ନନ୍ଦଙ୍କର ସ୍ନେହ କେବଳ ଦୁଇଟି ପଂକ୍ତିରେ ନିହିତ-

କେତେବେଳେ ନନ୍ଦ କାନ୍ଧେ ବସି ଚାନ୍ଦ
ମାଗନ୍ତି ରଜନୀ ସମୟେ,
କରି ମନ ତୋଷ ଜହ୍ନ ମାମୁଁ ଆସ
ଆସ ବୋଲନ୍ତି ନନ୍ଦରାୟେ । (ର.କ. ୬-୩)

ଏଇ ପଂକ୍ତିରେ ଶ୍ରୀକୃଷ୍ଣଙ୍କ ବାଳଲୀଳା ଭାବ ହିଁ ମୁଖ୍ୟ ଓ ନନ୍ଦଙ୍କର ସ୍ନେହ ଗୌଣ । ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ରତି ଏହାଠାରୁ ନିବିଡ଼ । କିନ୍ତୁ ସେଠି ମଧ ଶ୍ରୀକୃଷ୍ଣଙ୍କ ଭଗବାନତ୍ୱ ଓ ବାଳଲୀଳା ବିଶେଷ ଭାବରେ ପ୍ରକାଶିତ । ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କର ମର୍ଦ୍ଦନ, ମାର୍ଜନ; କଉଷେୟ, କାଛା ପରିଧାନ, ଦିବ୍ୟ ଅନ୍ନ ଭୋଜନ, ଆଚମନ ଓ ଶ୍ରୀମୁଖ ପୋଛା ପ୍ରଭୃତି ନିଯୋଗ ମଧରେ ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ବାତ୍ସଲ୍ୟ ପରିସ୍ଫୁଟ । ଏହାର ପାଖାପାଖି ପୂର୍ବ ବର୍ଣ୍ଣନାରେ ଶିଶୁ ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ଅଭିମାନଭରା ସ୍ନେହ, ଶୋକ ଓ କ୍ରୋଧ ପୁଣି କଂପ, ପୁଲକ ଓ ଆତ୍ମସମର୍ପଣ ପ୍ରଭୃତି ବର୍ଣ୍ଣନା ଏତେ ଜୀବନ୍ତ ଭାବରେ ପ୍ରକାଶିତ ଯେ ଯଶୋଦାଙ୍କର ବାତ୍ସଲ୍ୟ ଶ୍ରୋତାର ଶ୍ରବଣରୁ ଅପସରି ଯାଏ । ଗୋପୀମାନେ ଶ୍ରୀକୃଷ୍ଣଙ୍କର କିଣାଦାସୀ । ଏହି ଦାସ୍ୟଭାବ ପରେ ସଖ୍ୟରେ ପରିଣତ ହୋଇ କବିଙ୍କୁ ହାସ ଓ ପରିହାସର ସାମଗ୍ରୀ ଯୋଗାଇଛି । ଦୀନକୃଷ୍ଣ କାବ୍ୟ ମଧରେ ହାସ୍ୟରସର ବାହକରୂପେ ପ୍ରଚୁର ବକ୍ରବାଣୀର ପ୍ରୟୋଗ କରିଛନ୍ତି । ସମଗ୍ର ରସକଲ୍ଲୋଳ ଗୋପୀ ଓ ଶ୍ରୀକୃଷ୍ଣଙ୍କର ଘେନାଘେନି ବାଣୀରେ ପରିପ୍ଲାବିତ । ମଧୁର ରସର ପୂର୍ଣ୍ଣ ପରିଣତି ରାସଲୀଳାର ପୂର୍ବରାଗରୂପେ କବି ହାସ୍ୟରସକୁ ବ୍ୟବହାର କରିଛନ୍ତି । ଏ ରସକୁ ଆଶ୍ରୟ କରି ମଧୁର ରସ ପରିପୂର୍ଣ୍ଣ ହୋଇଛି । ତେଣୁ ରସକଲ୍ଲୋଳରେ ହାସ୍ୟରସ ସ୍ୱତନ୍ତ୍ର ନୁହେଁ । ଶୃଙ୍ଗାରର ସହାୟକ ଓ ସଖ୍ୟରସର ପ୍ରକାଶ ।

ରସକଲ୍ଲୋଳକୁ କେହି କେହି ବୀର ରସର ସନ୍ଧାନ ପାଇଥାନ୍ତି । ବିଷୟବସ୍ତୁ ଦୃଷ୍ଟିରୁ ଦୈତ୍ୟବଧ ପ୍ରଭୃତି ଘଟଣା ବୀର ରସର ଦ୍ୟୋତକ ହେଲେ ମଧ ରସକଲ୍ଲୋଳର କବି ସେଥିପ୍ରତି ସତର୍କ ନୁହନ୍ତି । ନିମ୍ନ ଆଲୋଚନାରେ ଏ କଥା ଆହୁରି ସ୍ପଷ୍ଟହେବ । ରସକଲ୍ଲୋଳରେ ବତ୍ସା, ବକା, ଅଘା ପ୍ରଭୃତି ଅସୁରର

ବିନାଶ କବି ବର୍ଣ୍ଣନା କରିଛନ୍ତି, ଏକଥା ନିଶ୍ଚିତ, କିନ୍ତୁ ଏ ସବୁ ବର୍ଣ୍ଣନା କଲାବେଳେ କବି ଏତେ ଦ୍ରୁତ ଗତିର ପଳାୟନ କରିଛନ୍ତି ଯେ ସେଥିରୁ କେବଳ ଏଇ ଅସୁରମାନଙ୍କର ନିଧନ ବାର୍ତ୍ତା ଶୁଣିବା ବ୍ୟତୀତ ଅନ୍ୟ କିଛି ଶୁଣିହୁଏନି । ବୀର ରସର ଆସ୍ୱାଦନ ତ ଦୂରର କଥା । ଉଦାହରଣ ସ୍ୱରୂପ ବତ୍ସା, ବକା ଓ ଅଘାସୁର ବଧ ବର୍ଣ୍ଣନା ପଢ଼ାଯାଉ ।

ବତ୍ସା : କଉତୁକେ ବତ୍ସା ରଖୁଁ ରଖୁଁ ବତ୍ସାସୁରକୁ ମାଇଲେ ବୃକ୍ଷରେ ।୬।୧୨

ବକା : କେତେଦିନେ ହରି ବକ ଥଣ୍ଟ ଚିରି କାଳସଦନ ଦେଖାଇଲେ ।୬।୧୩

ଅଘା- କ୍ରମେ ବିନାଶ କଲେ ସେ ଅଘାସୁରକୁ । ୬।୧।୩

ଏହିସବୁ ପଂକ୍ତିରୁ 'ମାଇଲେ', 'କାଳସଦନ' ଓ 'ବିନାଶ କଲେ' ପ୍ରଭୃତି ଅଂଶକୁ ନେଇ ବୀର ରସର ଆସ୍ୱାଦନ କରିବା ସର୍ବଥା ହାସ୍ୟାସ୍ପଦ । ହସ୍ତୀପାଳକ, ଚାଣୁର ଓ ମୁଷ୍ଟିକ ବଧ ବର୍ଣ୍ଣନା କଲାବେଳେ ବୀରରସ ସାମାନ୍ୟ ବର୍ଣ୍ଣନା ଦେଖିବାକୁ ମିଳେ । ହସ୍ତୀପାଳକକୁ ଶ୍ରୀକୃଷ୍ଣଙ୍କର ଉକ୍ତି ହେଉଛି,

କରିବର କନ୍ଧେ ଅଛୁ ଚଢ଼ି, କହୁଅଛୁ ଏହି ଘେନି ବଢ଼ି ।

କର ଅବଲୟ କରିବାକୁ ଇମ୍ଭ ହେଲେ ଉଡ଼ାନ୍ତାନି ଦାଢ଼ି । ହୋ ଯନ୍ତା ।

ଏହି ଉକ୍ତିର ପରବର୍ତ୍ତୀ ସମର ବର୍ଣ୍ଣନା କେବଳ ଗୋଟିଏ ମୁଷ୍ଟିର ଦାନ ଓ ପ୍ରତିଦାନରେ ଶେଷ ହୋଇଛି । ଅଳ୍ପ ବର୍ଣ୍ଣନା ମଧ୍ୟରେ ଯେ ବୀରରସର ସୃଷ୍ଟି ଅସମ୍ଭବ ଏକଥା ନୁହେଁ । କବି ଦୀନକୃଷ୍ଣ ଏହି ରସର ଅଭିବ୍ୟକ୍ତି କରିପାରିଥାନ୍ତେ କି ନାହିଁ, ସେ ପ୍ରଶ୍ନ ବି ଉଠୁନି । କବି ଏସବୁ ବର୍ଣ୍ଣନା କଲାବେଳେ କବିର ଲକ୍ଷ୍ୟ ହେଉଛି, ଏଇ ଦୁରାତ୍ମାମାନଙ୍କର ମୃତ୍ୟୁ, ସେମାନଙ୍କ ନିର୍ବାଣ ପ୍ରାପ୍ତି ଓ ଶ୍ରୀକୃଷ୍ଣଙ୍କର ମହିମା ବ୍ୟାଖ୍ୟାନ । ରସରାଜ ଶୃଙ୍ଗାରର ବର୍ଣ୍ଣନା ତ୍ୟାଗକରି ଏଇସବୁ ରସର ବର୍ଣ୍ଣନା କରିବାକୁ କବିଙ୍କୁ ଅବସର ମିଳିନି ।

ଚାଣୁର, ମୁଷ୍ଟିକ ବା ଅନ୍ୟାନ୍ୟ ଯେ କୌଣସି ସଭାର ସହ ସେଇ ରସକଲ୍ଲୋଳରେ ଦିଆଯାଇଥିବା କାମସମରର ତୁଳନା କଲେ ଏକଥା ଆହୁରି ସ୍ପଷ୍ଟହେବ । ପ୍ରଥମ ଦୃଶ୍ୟ, ହସ୍ତୀପାଳକ ସହ ଶ୍ରୀକୃଷ୍ଣଙ୍କ ଯୁଦ୍ଧ :

କ୍ରୋଧେ ମାଇଲା ମାତଙ୍ଗ ଦନ୍ତା କଲେ ବିଚିତ୍ର ଗତି ଅନନ୍ତ ।

କୁଣ୍ଡଳୀ ପ୍ରବଳ ଘାତରେ ନକୁଳ, ବଞ୍ଚାଇ ରହେ ଯେମନ୍ତ । ୨୮।୧୬

କଣ୍ଠୀରବ ପ୍ରାୟେ ଗତି କରି, କରେ ଚାପୋଡ଼େ ମାଇଲେ ହରି ।

କରିବର ଲାଞ୍ଜ ଧରି ଦେବରାଜ, ପଛକୁ ନେଲେ ଓଟାରି । ୨୮।୧୭

କୁମ୍ଭକାର ଚକ୍ର ପ୍ରାୟେ ହୋଇ, କଣ୍ଠୀରବ ବଇରି ବୁଲଇ ।

କୁମାର କରେ ବନ୍ଧାହୋଇ, ସୂତ୍ରରେ ଗୁଞ୍ଜରା ଯେହ୍ନେ ଭ୍ରମଇ । ୨୮।୧୯

କ୍ଲେଶ ହସ୍ତୁ ବେଗେ ଦେଲେ ଛାଡ଼ି, କ୍ରୋଧଭରେ ଦଶନ ଓପାଡ଼ି ।

କ୍ରୁଧରେ କୁଳିଶ ପ୍ରାୟେ ଶିରଦେଶ, ଉପରେ ଶୀଘ୍ର କଚାଡ଼ି ।୨୮।୨୧

ଦ୍ୱିତୀୟ ଦୃଶ୍ୟ, କାମସମର :

କାମ ସମର ପ୍ରବଳ ହୋଇଲା, କୂଜିତ ବୀର ଡାକହି ଶୁଭିଲା

କଟି କିଙ୍କିଣୀ ନାଦ, କିବା ସମର ବାଦ୍ୟ ।

କରରୁହ ବିଶିଖଘାତେ, ଅଙ୍ଗ ବିଭେଦ ସେ । ୨୩।୧୦

କ୍ରମରେ ହେଲେ ରତିରଣେ ମତ୍ତା, କାମ ଦେଖାଇଲା ନିଜ ଯୋଗ୍ୟତା

କାଣ୍ଡ କାଣ୍ଡକେ ଜ୍ଞାନ, କରାଇଲା ନିଧନ ।

କେତେବେଳେ ଚେତନ, ତାହା କରଇ ଆନ ସେ । ୨୩।୧୧

କେତେବେଳେ ଭିଡ଼ନ୍ତି, ମାଇପାରେ ଜଡ଼ନ୍ତି

କଉତୁକେ ଗଡ଼ନ୍ତି, କରଘାତେ ପୀଡ଼ନ୍ତି ଯେ ୨୩।୧୨

ଏଇ ତୁଳନାରେ ଛନ୍ଦର ବୈଷମ୍ୟ ଓ ପ୍ରସଙ୍ଗର ଭିନ୍ନତା ସତ୍ତ୍ୱେ ପ୍ରଥମ ଦୃଶ୍ୟ ଅପେକ୍ଷା ଦ୍ୱିତୀୟ ଦୃଶ୍ୟରେ ଥିବା ସମର ବର୍ଣ୍ଣନା ସରସ ଓ ଶକ୍ତିମାନ । ମଦମତ୍ତ ହସ୍ତୀ ସହ ବକ୍ରସିଂହ ଶ୍ରୀକୃଷ୍ଣଙ୍କର ଯୁଦ୍ଧ ବର୍ଣ୍ଣନା କଲାବେଳେ ଶୌର୍ଯ୍ୟ, ବୀର୍ଯ୍ୟ ପ୍ରଭୃତି ଗୁଣର ଚିତ୍ରଣ କରିବାପାଇଁ ପ୍ରଶସ୍ତ କ୍ଷେତ୍ର କବି ସମ୍ମୁଖରେ ଉପସ୍ଥିତ ଥିବା ସତ୍ତ୍ୱେ କବି ସେଥିପ୍ରତି ଦୃଷ୍ଟିପାତ କରି ନାହାନ୍ତି । ଅଥଚ କାମସମର ବର୍ଣ୍ଣନା କଲାବେଳକୁ କବି ଝାଡ଼ିଝୁଡ଼ି ହୋଇ ବସି ଲେଖନୀ ସଳଖି ନେଇଛନ୍ତି । ଉପରେ ହୋଇଥିବା ଆଲୋଚନାର ନିଷ୍କର୍ଷ ହେଉଛି ଯେ, ରସକଲ୍ଲୋଳକାର ବୀର ରସ କହିଲା ବେଳେ ବିଶେଷ କରି ଶୃଙ୍ଗାରରେ ପ୍ରକାଶ ପାଇଥିବା ଅଙ୍ଗଚାଳନାକୁ ହିଁ ବୁଝୁଥିଲେ । କବି କୁହନ୍ତି-

କୁଚ ମର୍ଦ୍ଦନ ଦନ୍ତଘାତକୁ ପାଇ,

କେଶରୀ ମଧ୍ୟା ମାଲ ପରାୟେ ହୋଇ,

ସେ ଯେ କରେ ଆଶ୍ଳେଷ

କେତେବେଳେ ପ୍ରକାଶେ ବୀର କରୁଣ ରସ । (୩୦-୧୬)

ରସକଲ୍ଲୋଳରେ ବର୍ଣ୍ଣିତ କରୁଣ ରସ ମଧ ମୁଖ୍ୟ ରସ ଉଜ୍ଜ୍ୱଳର ଅଧୀନ । ଏହା ବିପ୍ରଲମ୍ଭ ଶୃଙ୍ଗାର । ଶ୍ରୀକୃଷ୍ଣଙ୍କ ବିରହରେ ଗୋପୀମାନଙ୍କର ଆକୁଳ କ୍ରନ୍ଦନ ଏଇ ରସର୍ ଦ୍ୟୋତକ । ଶୃଙ୍ଗାର ରସକୁ ନିବିଡ଼ ବା ଘନରସ ଦାନ କରିବା ଏହାର ଉଦ୍ଦେଶ୍ୟ । ବାଳଲୀଳା ବର୍ଣ୍ଣନା ସମୟରେ ଶ୍ରୀକୃଷ୍ଣଙ୍କର ବୃନ୍ଦାବନ ଗମନ ଦେଖି କଳାକରମୁଖୀ ଗୋପବାଳା ମହାସୁଖ ଲାଭ କରିଛି । ସେଇମାନଙ୍କ ମଧ୍ୟରୁ କେହି କେହି ଶ୍ରୀକୃଷ୍ଣଙ୍କର ଏଇ ବନଯାତ୍ରାକୁ ପସନ୍ଦ କରିପାରୁ ନାହାନ୍ତି । ନନ୍ଦ ଘରେ ଏତେ ଧନସଂପତ୍ତି ଥାଉ ଥାଉ ଏଇ ରୂପରତନ ଶ୍ରୀକୃଷ୍ଣ ବସ୍ତାପାଳନ ପାଇଁ ଯେ ବୃନ୍ଦାବନ ଯିବେ, ଏକଥା ସେମାନଙ୍କ ନିକଟରେ ଅସହ୍ୟ । ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ଏଇ ସହାନୁଭୂତିକୁ କବି କହିଛନ୍ତି, 'କାରୁଣ ରସ' ।

କଉଁ ଗୋପୀକା କାରୁଣ ରସକୁ ବହଇ

କୃଷ୍ଣ ସ୍ନେହ ଘେନି ଯଶୋଦାଙ୍କୁ ମାନି ହୋଇ ସଖୀ ଆଗେ କହଇ । ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ପ୍ରଭୃତି ରସ ଉଜ୍ଜ୍ୱଳ ବା କନ୍ଦର୍ପ ରସକୁ ପୂର୍ଣ୍ଣାଙ୍ଗ କରିଥାଏ । ଭାବ ପ୍ରଗାଢ଼ତା ଲାଭ କରିବା ସଙ୍ଗେ ସଙ୍ଗେ ଶାନ୍ତ ଦାସ୍ୟରେ, ଦାସ୍ୟ ସଖ୍ୟରେ, ସଖ୍ୟ ବାତ୍ସଲ୍ୟରେ ଓ ବାତ୍ସଲ୍ୟ ମାଧୁର୍ଯ୍ୟରେ ପରିଣତ ହୁଏ । ପୂର୍ବବର୍ତ୍ତୀ ଭାବ ସବୁର ଅଂଶ ପରବର୍ତ୍ତୀ ଭାବ ସହ ଜଡ଼ିତ ହୁଏ । ଏମାନଙ୍କ ମଧ୍ୟରୁ ଉଜ୍ଜ୍ୱଳ ରସର ମିତ୍ର କେବଳ ସଖ୍ୟ ରସ । ରସକଲ୍ଲୋଳରେ ସେଥିପାଇଁ ଏହାକୁ ଏତେ ଆଦର କରାଯାଇଛି । ବୀର ରସ ଶୃଙ୍ଗାରର ପରିପୋଷକ ଓ କରୁଣ ଏହାର ଅଙ୍ଗ । ଏହି କନ୍ଦର୍ପ ରସର ବିଷୟ ହେଉଛନ୍ତି ଶ୍ରୀକୃଷ୍ଣ ଓ ଆଧାର କୃଷ୍ଣଭକ୍ତି । ଇଷ୍ଟ ବସ୍ତୁଠାରେ ଗାଢ଼ ତୃଷ୍ଣା ଓ ବଳବତୀ ଲାଳସାକୁ ରାଗର ସ୍ୱରୂପ ଲକ୍ଷଣ ଓ ପରମ ଆବିଷ୍ଟତାକୁ ତଟସ୍ଥ ଲକ୍ଷଣ କୁହାଯାଏ । ଜୀବ ଗୋସ୍ୱାମୀ କହନ୍ତି, ଯେପରି ବିଷୟୀ ପୁରୁଷ ବିଷୟ ପ୍ରତି, ଯେପରି ଆଖି ସୌନ୍ଦର୍ଯ୍ୟ ପ୍ରତି ଓ କାନ ମଧୁର ସ୍ୱର ପ୍ରତି ଆକୃଷ୍ଟ ହୁଏ, ଭକ୍ତର ସେହିପରି ଯେତେବେଳେ ଭଗବାନଙ୍କ ପ୍ରତି ତୃଷ୍ଣା ବା ଆକର୍ଷଣ ଉତ୍ପନ୍ନ ହୁଏ ତାହାକୁ ରାଗ କୁହନ୍ତି । ଏଇ ହେଉଛି ମଧୁର ରସର ମୂଳଭିତ୍ତି ।

ଶ୍ରୀକୃଷ୍ଣଙ୍କର ଜନ୍ମ ବାର୍ତ୍ତା ଶ୍ରବଣ ସମୟରୁ କବି ଦୀନକୃଷ୍ଣ ଗୋପୀମାନଙ୍କର ହୃଦୟରେ ଏଇ ଭାବନାର ତରଙ୍ଗ ସୃଷ୍ଟି କରନ୍ତି । ଶ୍ରୀକୃଷ୍ଣଙ୍କ ବାଲଲୀଳାରେ ତୃଷିତ ଚକୋରୀ ପରି ଶୋଭା ଅମୃତ ପାନରେ ସେମାନେ ପୂର୍ବ ରାଗ ବ୍ରତ ପାଳନ କରୁଛନ୍ତି । ଶ୍ରୀକୃଷ୍ଣଙ୍କ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଗୋପୀମାନଙ୍କର ମନର ଦୃଢ଼ତା ପ୍ରକାଶ

ପାଇଛି । ଶ୍ରୀକୃଷ୍ଣଙ୍କର ସ୍ୱୟଂ ରୂପ ଧାରଣର ମୂଳ ରହସ୍ୟ ସେମାନେ ବୁଝିଛନ୍ତି । "କପଟେ ହୋଇଛି ମାନବ ରୂପ, କରିବ ପତିବ୍ରତା-ବ୍ରତ ଲୋପ" । ସେଥିପାଇଁ ବିଷୟର ସମସ୍ତ ତୃଷ୍ଣା ତ୍ୟାଗ କରି ସେ କୃଷ୍ଣମୁଖୀ ହୋଇଛି ।

କେ ବୋଲେ କିଛି ନ ବୋଲିବା ଆଉ
କୃଷ୍ଣ ଭୋଗରେ ସବୁ ପଛେ ଯାଉ ।
କରିଥାଇ ଯେ ଅନେକ ସୁକୃତ
କେଶବ କାର୍ଯ୍ୟେ ଲାଗେ ତା ବିତ୍ତ ।
କୃତାର୍ଥ ବାଟ ନନ୍ଦ ନନ୍ଦନ
କରିବା ତାଙ୍କୁ ସମସ୍ତେ ବନ୍ଦନ । (୪-୨୨)

ଗୋପୀମାନଙ୍କର ଏଇ ସଂକଳ୍ପ ପରେ ଆତ୍ମସମର୍ପଣରେ ପରିଣତ ହୁଏ । ଶ୍ରୀକୃଷ୍ଣଙ୍କୁ ପ୍ରାଣନାଥରୂପେ ବରଣ କରି, ମନ-ବଚନ-କର୍ତ୍ତବ୍ୟ ଦେଇ ସେ ତାଙ୍କରି ପାଦରେ ଶରଣ ପଶେ-

କେ ବାହୁଯୁଗଳ କରି ଫୁଲମାନ
　　　　ମାନସିକେ କଲା ବରଣ
କେ ମନ ବଚନ କର୍ତ୍ତବ୍ୟରେ ଲୀନ
　　　　କରି କୃଷ୍ଣେ ହେଲା ଶରଣ ।୬।୩୨

ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ଏଇ ରତିରେ ଦୀନକୃଷ୍ଣ ଦୁଇଟି ଅବସ୍ଥା ଦେଖିଛନ୍ତି-ପ୍ରଥମଟି ହେଉଛି ମଦନ ଭାବର ଉନ୍ମୟତା, ଦ୍ୱିତୀୟଟି ହେଉଛି ଭଗତି ଭାବ

କଉତୁକେ ଏହି କଥାମାନ କହି
　　　　ମଦନେ ଉନ୍ମତ୍ତ ହୁଅନ୍ତି ।
କୃଷ୍ଣଠାରେ ମନ ବଚନ କର୍ତ୍ତବ୍ୟ
　　　　ଭଗତି ଭାବରେ ଦିଅନ୍ତି ।
କହେ ଆନନ୍ଦ ମନେ ଦୀନକୃଷ୍ଣ ଏ ରସ
କହି ସାଧୁଜନ ମାନେ ଏକମନ
　　　　ରସକଲ୍ଲୋଳ ଗୀତ ରସ । ୯।୨୮

ଏହା ସାଧାରଣ ମାନବର ରତିଠାରୁ ଭିନ୍ନ । ସ୍ତ୍ରୀ-ପୁତ୍ରାଦି ପ୍ରତି ରତିବଦ୍ଧ ଜୀବନର ଜଡ଼ ବିଷୟା ରତି, ଓ ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତର ରତି ବିଦ୍‌ବିଷୟା ହୁଏ ।

ଆଲଙ୍କାରିକ ଏହି ରତିକୁ ଭାବ କହିଥାଏ । ଭକ୍ତ ଏହାକୁ ରସ ବି କହିପାରେ । ଦୀନକୃଷ୍ଣ ରତିକୁ ଭାବ ପୁଣି ରସ ବି କହିଛନ୍ତି । ରସକଲ୍ଲୋଳରେ ବ୍ୟବହୃତ କାମ, ସ୍ନେହ ଓ ପ୍ରେମ ପ୍ରଭୃତି ଶବ୍ଦ ସବୁ କୃଷ୍ଣମୁଖୀ । ରାଧା, ଗୋପୀ ଓ ଅନ୍ୟାନ୍ୟ ବର୍ଣ୍ଣନାରେ ଦୀନକୃଷ୍ଣଙ୍କର କୃଷ୍ଣମୁଖୀ ଦୃଷ୍ଟିକୋଣ ଅତି ସ୍ପଷ୍ଟ ।

ରତି ବିଭିନ୍ନ ଅନୁଭବ ମଧ୍ୟ ଦେଇ ରସସ୍ତରକୁ ଉନ୍ନୀତ ହୁଏ । ଅନୁଭବକୁ ବିଭାଗ କରି ଭକ୍ତ ଶାସ୍ତ୍ରଜ୍ଞ ଏଥିରେ ବାଇଶ ଅଳଙ୍କାର, ସାତ ଉଦ୍‌ଭାସ୍ୱର ଓ ତିନୋଟି ଅଙ୍ଗଜର ସନ୍ଧାନ କରିଥାନ୍ତି । ଦୀନକୃଷ୍ଣ ଏହି ଅଙ୍ଗଜ ଅନୁଭାବକୁ ଭାବ, ହାବ ଓ ବିଭାବ କହିଛନ୍ତି । ଅଳଙ୍କାର ମଧ୍ୟରୁ ମୋଟ୍ଟାୟିତ, କିଳକିଞ୍ଚିତ ପ୍ରଭୃତିର ଉଲ୍ଲେଖ ମିଳେ । କୁଚ ମୂର୍ଚ୍ଛଁ ବାସ ଅଳପ ଉଶ୍ୱାସ କରି କୁଚରୁ ଅଞ୍ଚଳ ଖସାଇ, କର ଟେକିବା, ପ୍ରଭୃତି ଉଦ୍‌ଭାସ୍ୱରର ଅନ୍ତର୍ଗତ । ବିଭିନ୍ନ ଅନୁଭାବରୁ ଜାତ ହେଉଥିବା ଆନନ୍ଦର ଅନୁଭବ କରିବାପାଇଁ କେବଳ କୃଷ୍ଣ ଓ ଗୋପୀ ହିଁ ସମର୍ଥ । କବି କହନ୍ତି, କହିବା, ଚାହିଁବା, ମୋହିବା, ହସିବା, ରସିବା, ତୋଷିବାକୁ ସେହି । (୮-୪) ଉଦ୍ଦୀପନ ବିଭାବରୂପେ ଦୀନକୃଷ୍ଣ ତଟସ୍ଥ ବସ୍ତୁ ମଧ୍ୟରୁ ବସନ୍ତାଗମନ । (କୁସୁମ ସମୟ ହୋଇଲା ଉଦୟ) ବିଭିନ୍ନ ପୁଷ୍ପର ପ୍ରକାଶ, ଭ୍ରମରର ମଧୁପାନ ଓ ନବ କିଶଳୟକୁ ଗ୍ରହଣ କରିଛନ୍ତି । କବିଙ୍କ ଭାଷାରେ-

କାଳିନ୍ଦୀ ଶୀତଳ ଫୁଲ ପରିମଳ
ଘେନି ବହେ ମନ୍ଦ ପବନ
କୁରଙ୍ଗ ମଦ ସୌରଭ କରନ୍ତେ
ବଢ଼େ କନ୍ଦର୍ପ ଉଦ୍ଦୀପନ
କୁସୁମ ଚୁମ୍ବି ଭୃଙ୍ଗ କରେ ଝଙ୍କାର
କନ୍ଦର୍ପ ଧନୁ ଟଙ୍କାରିଲା ପରାଏ
ପ୍ରତେ ହୁଅଇ ଗୋପୀଙ୍କର । (୧୨-୨୦)

କାୟିକ ସୌନ୍ଦର୍ଯ୍ୟ ମଧ୍ୟରେ ରୂପ, ଲାବଣ୍ୟ ପ୍ରଭୃତି ମୁଖ୍ୟ । କନକ କଦଳୀ ସଦୃଶ ଜାନୁ ଦର୍ଶନ କରି କାମ ଉଦ୍ଦିପନ ବୃଦ୍ଧି ପାଉଥିବା କଥା ଦୀନକୃଷ୍ଣ କହିଛନ୍ତି । ଏହା ବ୍ୟତୀତ ଶ୍ରୀକୃଷ୍ଣଙ୍କ ନାମ, ଚରିତ୍ର, ଲୀଳା ଇତ୍ୟାଦି ଉଦ୍ଦୀପନ ବିଭାବର ଅନ୍ତର୍ଗତ ।

ଭଗବାନଙ୍କ ସହ ସାକ୍ଷାତ ଅଥବା ବ୍ୟବହିତ ସମ୍ବନ୍ଧ ରଖୁଥିବା ଭାବ ଦ୍ୱାରା ଯିଏ ଆକ୍ରାନ୍ତ ହୁଏ, ସେଇ ଚିତ୍ତକୁ ସତ୍ତ୍ୱ କୁହନ୍ତି ଓ ସେଥିରୁ ଉତ୍ପନ୍ନ

ହେଉଥିବା ଭାବକୁ ସାତ୍ତ୍ୱିକ କୁହନ୍ତି । ଏହା ଆଠ ପ୍ରକାର-ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, କଂପ, ବୈବର୍ଣ୍ଣ, ଅଶ୍ରୁ ଓ ପ୍ରଳୟ (ମୂର୍ଚ୍ଛା) । କବି ଦୀନକୃଷ୍ଣ ଏହାକୁ ସାତ୍ତ୍ୱିକ ବେଦନା କୁହନ୍ତି । କାବ୍ୟ ମଧ୍ୟରେ କୃଷ୍ଣ ଜନ୍ମଠାରୁ ଆରମ୍ଭ କରି ବହୁ ସ୍ଥଳରେ ସାତ୍ତ୍ୱିକ ବେଦନାର ଏକାଧିକ ଲକ୍ଷଣ ପ୍ରକାଶ ପାଉଥିଲେ ହେଁ, ରାସ ରଚନା ପରେ ଶ୍ରୀକୃଷ୍ଣଙ୍କର କ୍ଷଣିକ ବିରହରେ ବ୍ୟଥିତା, କୃଷ୍ଣଭାବବିହ୍ୱଳା ଗୋପୀମାନଙ୍କ ହୃଦୟରେ କବି ଏଇ ଭାବର ପୂର୍ଣ୍ଣାଙ୍ଗ ବର୍ଣ୍ଣନା କରିଛନ୍ତି । ତାହା ଏହିପରି-

୧। କେତକୀ ଦଳ ପରାଯେ କାହାର ଦିଶିଲା କାଯେ । -ବୈବର୍ଣ୍ଣ
୨। କେ ନେତ୍ରୁ ଲୁହ ପକାଏ । -ଅଶ୍ରୁ
୩। କେ ସ୍ତମ୍ଭୀ ହୋଏ । -ସ୍ତମ୍ଭ
୪। କମ୍ପେ କାହା କଳେବର । -କମ୍ପ
୫। କେ ଛାଡ଼ିଲା କହିବାର । -ସ୍ୱରଭଙ୍ଗ
୬। କାହା ଅଙ୍ଗୁ ସ୍ୱେଦ ନୀର । -ସ୍ୱେଦ
୭। କଦମ୍ବ ଫୁଲ ଆକାର,ଦିଶିଲା କାହା ଶରୀର ।-ରୋମାଞ୍ଚ
୮। କେ ଚେଷ୍ଟା କରି ଅନ୍ତର ହୋଇଲା ଘିର ବିରହେ ।-ପ୍ରଳୟ

ଦକ୍ଷିଣନାୟକ ଶ୍ରୀକୃଷ୍ଣଙ୍କର ସହାୟକରୂପେ ବୈଷ୍ଣବ ଭକ୍ତିଶାସ୍ତ୍ରରେ ଚେଟ, ବିଟ ବିଦୂଷକ ପୀଠମର୍ଦ୍ଦକ ଓ ପ୍ରିୟ ନମ୍ରସଖା ଭେଦରେ ପାଞ୍ଚ ସହାୟକ, ପୁଣି ସ୍ୱୟଂ ଓ ଆପ୍ତ ଭେଦରେ ଦୁଇ ଦୂତୀର ନିର୍ଦ୍ଦେଶ କରିଛନ୍ତି । ବିଭିନ୍ନ ଚେଷ୍ଟା, ସଂକେତ, ଭ୍ରୂବିଳାସ, ଅଧର ଦଂଶନ ପ୍ରଭୃତି ଦ୍ୱାରା ନାୟକକୁ ନାୟିକା ପ୍ରତି ଆକୃଷ୍ଟ କରାଇଲେ ତାକୁ ସ୍ୱୟଂଦୂତୀ କୁହାଯାଏ । ପତ୍ରଦ୍ୱାରା ନାୟକକୁ ନାୟିକା ସହ ମିଳନ କରାଉଥିବା ଦୂତୀମାନଙ୍କୁ ଅଗ୍ରଦୂତୀ କହନ୍ତି । ଶିଳ୍ପକାରୀ, ଦୈବଜ୍ଞ, ଲିଙ୍ଗିନୀ, ପରିଚାରିକା, ସଖୀ, ବନଦେବୀ, ଆଦି ଭେଦରେ ଏହା ବହୁବିଧ । ଦୀନକୃଷ୍ଣ ଏହି ଆପ୍ତଦୂତୀମାନଙ୍କୁ ଉଲ୍ଲେଖ କରି କୁହନ୍ତି,

କଲେ ଦୂତୀ ଜରତା ନର୍ତ୍ତକୀ ବେଶକାରୀ
କୁସୁମ ମାଳା କାରିକା ଶିଳ୍ପୀ ବିଦ୍ୟାଧରୀ । (୭-୩)

ବିନୋଦ ଠାବ ବା ସଂକେତ ସ୍ଥଳ ରୂପେ କୁଞ୍ଜକାନନ, କୁସୁମତୋଟା, ନଦୀତଟ, କମଳହୀନ ପରିଖ ଓ ପାଣିକୂଟ ପ୍ରଭୃତିକୁ ନିର୍ଦ୍ଦେଶ କରାଯାଇଛି । ଏହା ବ୍ୟତୀତ ରତିର ପରିମୂର୍ତ୍ତି ପାଇଁ ଦୀନକୃଷ୍ଣ ପ୍ରଶସ୍ତ ସମୟର ସୂଚନା ଦେଇଛନ୍ତି । କୁହୁଝଟି

(କୁହୁଡ଼ି ସମୟ), ହିମ ରଜନୀ (ଶୀତରାତି), ମହା ଅନ୍ଧକାର, କଳାକର ଉଦୟ, ମହାଉତ୍ସବ କାଳ, କଟକ ଗହଳ, ସନ୍ଧ୍ୟା ପରବେଶ ବେଳ ପ୍ରଭୃତି ଏଥିପାଇଁ ଉପଯୁକ୍ତ କାଳ । ଏଥିରେ ଥିବା 'କୋଳାହଳ ପୁରଦାହ ପବନ ପ୍ରଖର' ପଂକ୍ତିଟିର ଅର୍ଥ ସ୍ପଷ୍ଟ ନୁହେଁ । ଏଇ ତିନୋଟିକୁ ଅର୍ଥାତ୍ କୋଳାହଳ, ପୁରଦାହ ଓ ପବନ ପ୍ରଖରକୁ ସ୍ୱତନ୍ତ୍ର ଶବ୍ଦରୂପେ ଗ୍ରହଣ କରି ଅର୍ଥ କରାଯାଇ ପାରେ ।

୧। କୋଳାହଳ ଗହଳି ସମୟ ।

୨। ପୁରଦାହ ଘରପୋଡ଼ି ।

୩। ପବନ ପ୍ରଖର ତୋଫାନ ।

ପ୍ରଖର ପବନ ବହୁଥିବା ବେଳେ ଯିଏ ଯେଉଁଠି ଥାନ୍ତି ସେଠି ରହିଯାନ୍ତି । ବାହାରକୁ ବାହାରନ୍ତି ନାହିଁ । ବହୁ କୋଳାହଳ ବା ପାଟିତୁଣ୍ଡ ହେଉଥିବା ସମୟରେ, ଘରପୋଡ଼ି ହେଉଥିବା ସମୟରେ ସବୁ ଲୋକ ଏକ ସଙ୍ଗେ ରୁଣ୍ଡ ହୋଇଯାନ୍ତି । ଗ୍ରାମ ଜନଶୂନ୍ୟ ହୋଇ ପଡ଼େ । ସେଥିପାଇଁ କବି ଏଇ ସବୁ ସମୟକୁ କୁଳଟା ମନଭେଦୀ ଶ୍ରୀକୃଷ୍ଣଙ୍କ ଚୋରାପ୍ରୀତିର କର୍ମ ସମୟ ରୂପେ ଗ୍ରହଣ କରିଛନ୍ତି ।

ଭକ୍ତିଶାସ୍ତ୍ର ଅନୁଯାୟୀ ନାୟିକା ତ୍ରିବିଧ - ୧। ସାଧାରଣୀ, ୨। ସମଞ୍ଜସା ଓ ୩। ସମର୍ଥୀ । ସମଞ୍ଜସା ନାୟିକାର ବର୍ଣ୍ଣନା ରସକଲ୍ଲୋଳରେ ନାହିଁ । ସାଧାରଣୀ ନାୟିକା ହେଉଛି କୁବ୍‌ଜା ଶ୍ରୀକୃଷ୍ଣ ସହ ରତିରେ ଆତ୍ମତୃପ୍ତି ପ୍ରଧାନ । ଦୀନକୃଷ୍ଣଙ୍କ ନାୟିକା ମୁଖ୍ୟତଃ ବାସକସଜ୍ଜା ନାୟିକା । ଶ୍ରୀକୃଷ୍ଣଙ୍କ ମଥୁରା ଆଗମନରେ ତାର ଭଗତି, 'କଇା ଶ୍ରୀମୁଖ ମଣ୍ଡିବି ଚନ୍ଦ୍ରବଦନେ' ଏଇ ଇଚ୍ଛାରେ ପ୍ରକାଶ ପାଇଛି । ଶ୍ରୀକୃଷ୍ଣ ତାର ହୃଦୟର କାମନା ଜାଣି କରୁଣା କରିଛନ୍ତି । ଶ୍ରୀକୃଷ୍ଣଙ୍କୁ କୁବ୍‌ଜାର ଅନୁନୟ ହେଉଛି;

କହିଲା ମୋପୁରକୁ ବିଜୟ କରିବ
କାମ ପୂର୍ଣ୍ଣ କରି ଭବ କଷ୍ଟୁଁ ତରିବ । (୨୭-୩୩)

କୁବ୍‌ଜାପୁରରେ କମଳଦଳ ଲୋଚନ ଶ୍ରୀକୃଷ୍ଣଙ୍କର ପ୍ରବେଶ ବର୍ଣ୍ଣନା କଲାବେଳେ କବି କୁବ୍‌ଜାର ଶରୀରରେ ସାତ୍ତ୍ୱିକ ବେଦନାର ବିଭିନ୍ନ ଲକ୍ଷଣ ଦେଖିଛନ୍ତି । ସୂର୍ଯ୍ୟ ପଦ୍ମକୁ ଆନନ୍ଦିତ କଲାପରି ଶ୍ରୀକୃଷ୍ଣଙ୍କ ଦର୍ଶନରେ କୁବ୍‌ଜା ପରମ ସୁଖ ଲାଭ କରିଛି । ଶ୍ରୀକୃଷ୍ଣଙ୍କ କୁବ୍‌ଜା ସଙ୍ଗ ରଙ୍ଗ ନିଜ ସୁଖ ପାଇଁ ନୁହେଁ; ଏହା ହେଉଛି କୁବ୍‌ଜାର କାମନା ସଂପୂର୍ଣ୍ଣ କରିବା ପାଇଁ । ଶ୍ରୀକୃଷ୍ଣଙ୍କର ସମର୍ଥା ନାୟିକାରୂପେ ଗୋପୀମାନଙ୍କୁ ନିଆ ଯାଇଥାଏ । ଏମାନଙ୍କ ମଧରେ ରାଧା ଓ

ଚନ୍ଦ୍ରାବଳୀ ଶ୍ରେଷ୍ଠା । ଗୋପୀମାନଙ୍କର ସଂଖ୍ୟା ଅଗଣିତ । ସେମାନେ ଏଇ ଦୁଇ ପ୍ରଧାନ ନାୟିକାଙ୍କର ସଖୀ । ଏମାନଙ୍କର ଭିନ୍ନ ଭିନ୍ନ ଯୁଥ ରହିଛି । ପ୍ରତି ଯୁଥରେ ଜଣେ ଜଣେ ଯୂଥେଶ୍ୱରୀ ଥାଆନ୍ତି । ଦୀନକୃଷ୍ଣ ଏମାନଙ୍କର କୌଣସି ହିସାବ ରଖି ନାହାନ୍ତି । ରସକଲ୍ଲୋଳରେ କେବଳ କମଳା, ବିମଳା ଓ ପରିମଳା ଏଇ ତିନିଜଣଙ୍କର ଉଲ୍ଲେଖ ଅଛି । ଆଳଙ୍କାରିକମାନଙ୍କୁ ଅନୁସରଣ କରି ଦୀନକୃଷ୍ଣ ଖଣ୍ଡିତା, କଳହ, ସାରିତା, ବାସକସଜ୍ଜା ପ୍ରଭୃତି ଭେଦରେ ଗୋପୀମାନଙ୍କର ଚିତ୍ରଣ କରିଛନ୍ତି । ଏମାନଙ୍କର ହାବ, ଭାବ ଓ ବିଭାବ ବର୍ଣ୍ଣନା ମଧ୍ୟରୁ ବୈଷ୍ଣବଶାସ୍ତ୍ର ବିଶିଷ୍ଟ ବହୁ ଗୋପୀଙ୍କୁ ଦେଖି ହେବ । ନାୟିକାମାନଙ୍କର ବର୍ଣ୍ଣନା କଲାବେଳେ ଦୀନକୃଷ୍ଣ କାମଶାସ୍ତ୍ର ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଛନ୍ତି ବୋଲି ନିଜେ ସ୍ୱୀକାର କରିଛନ୍ତି ।

ଗୋପୀ ଓ ଶ୍ରୀକୃଷ୍ଣଙ୍କରସଂପର୍କ ସମସ୍ତ ରସକଲ୍ଲୋଳରେ ସୁନ୍ଦର ଓ ପବିତ୍ର । ଗୋପୀମାନଙ୍କର ଇଷ୍ଟ ଦେବତା ହେଉଛନ୍ତି ଶ୍ରୀକୃଷ୍ଣ । ଅନ୍ୟ କୌଣସି ଦେବତାଙ୍କର ଆରାଧନା ବା ଉପାସନା ଏମାନଙ୍କ ନିକଟରେ ଅସମ୍ଭବ । ଜଳରେ ଉଲଗ୍ନ ହେଲେ ଜଳ ଦେବତାଙ୍କ ନିକଟରେ ଅପରାଧ ହୁଏ । ଏହାର କ୍ଷାଳନ ପାଇଁ କେବଳ ସେହି ଦେବତାର ଆରାଧନା ଆବଶ୍ୟକ । ଶ୍ରୀକୃଷ୍ଣଙ୍କର ଏହି ଉପଦେଶ ବାଣୀ ଶୁଣି ଗୋପୀମାନଙ୍କର ମନ ତିକ୍ତ ହୋଇ ଉଠିଛି । ସେମାନେ ଉତ୍ତର ଦେଇଛନ୍ତି -

ଆମ୍ଭେ କି ଜାଣୁ ଦେବତାଙ୍କୁ
କେବଳ ମନ ବଚନ କର୍ତ୍ତବ୍ୟରେ ଜାଣୁଁ ଏକା ଜଗନ୍ନିତାଙ୍କୁ
କରୁଛୁଁ ତାହାଙ୍କୁ ନମସ୍କାର ବୋଲି ଶିରରେ ଦେଲେ ବେନି କର ।

(୧୫-୩୨)

ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀ ମନର ଏଇ ଅଚଳା ଭକ୍ତି, ଗୋପୀମାନଙ୍କୁ ସାହସୀ କରିଛି । କୁଳ, ଶୀଳ, ଲାଜ, ଗୃହ ଓ ପତି ପରିତ୍ୟାଗ କରି ଅବାଟକୁ ବାଟରେ ପରିଣତ କରି, ସେମାନେ ଶ୍ରୀକୃଷ୍ଣଙ୍କର ସ୍ନେହପାଇଁ ବ୍ୟାକୁଳ ହୋଇ ଉଠିଛନ୍ତି । କୃଷ୍ଣ ମନୋହାରୀ ହେବା ପାଇଁ ସେ ନିଜର ଘରବୁଡ଼ା କଟାକ୍ଷକୁ ପ୍ରଧାନ ଅସ୍ତ୍ର ରୂପେ ଗ୍ରହଣ କରିଛି । ଚାତୁରୀ କରି ଗଭା ବାନ୍ଧି (୩) କେତକୀ ଫୁଲ ସଜାଇଛି । କପାଳରେ ସିନ୍ଦୂର ଚିତା ଓ ଗନ୍ଧ ତିଳକ ଲଗେଇଛି, ଏସବୁ ହେଉଛି ଶ୍ରୀକୃଷ୍ଣଙ୍କ ପାଇଁ । କୁମୁଦନନ୍ଦିନୀ ରାଧା ଏଇ ଗୋପୀମାନଙ୍କ ମଧ୍ୟରେ

ଶ୍ରେଷ୍ଠା । ସେ ତ୍ରିଭୁବନେ ନିରୁପମା, ତାଙ୍କର 'କଞ୍ଜୁଁ ପରିମଳ ଦର୍ପଣୁଁ ନିର୍ମଳ ଚନ୍ଦ୍ର କାନ୍ତି ପ୍ରାୟେ ମୁଖ' ଦର୍ଶନ କରି ମହାସୁଖ ଜାତ ହୁଏ । କୃଷ୍ଣମନ ଏଇଠି ଧରା ପଡ଼େ । ତାଙ୍କର କୋମଳ ବିଚିତ୍ର ବାଣୀ କର୍ଣ୍ଣସୁଖକର ପୁଣି କୃଷ୍ଣ ଚିତ୍ତହର। ରାଧିକା ନିଜର ସଖୀଗଣ ଦ୍ୱାରା ପରିବେଷ୍ଟିତ ହୋଇ ଆତ୍ମପ୍ରକାଶ କରିଛନ୍ତି । ରାଧାଭାବ ଓ ଗୋପୀଭାବ ମଧ୍ୟରେ କୌଣସି ପାର୍ଥକ୍ୟ ରସକଲ୍ଲୋଳ ମଧ୍ୟରେ ଦେଖି ହୁଏ ନାହିଁ । ଶ୍ରୀକୃଷ୍ଣ ଓ ଗୋପୀଙ୍କର ପ୍ରୀତିକୁ ବିଶ୍ଳେଷଣ କରି କବି କୁମୁଦ ଓ ଚନ୍ଦ୍ର, କମଳ ଓ ସୂର୍ଯ୍ୟ, କୁସୁମ ଓ ମଧୁକରର ପ୍ରୀତିକୁ ତୁଳନାରେ ଆଣିଛନ୍ତି। କବିଙ୍କ ମତରେ କୁମୁଦ ଓ ଚନ୍ଦ୍ରର ପ୍ରୀତି ଅସମ୍ଭବ । କମଳ ସହ ସୂର୍ଯ୍ୟର ପ୍ରୀତି ଅସୁନ୍ଦର । କାରଣ କୋମଳ ସହ କଠୋରର ପ୍ରୀତିରେ କୋମଳ ନାଶ ହୋଇଯାଏ। କୁସୁମ ସହ ମଧୁକରର ପ୍ରୀତି ମଧ୍ୟ ଅସମ୍ଭବ । କାରଣ ମଧୁକର କମଳ ଓ କୁଟଜ ଉଭୟଙ୍କୁ ସମାନ ଜ୍ଞାନ କରିଥାଏ । ହୃଦୟର ନିବିଡ଼ତା ନ ବୁଝିଲେ ପ୍ରୀତି ସ୍ଥାୟୀ ହୁଏନା । କିନ୍ତୁ ଗୋପୀ ଓ କୃଷ୍ଣଙ୍କର ପ୍ରୀତି କୋଟି କୋଟି କଳ୍ପାନ୍ତ ପର୍ଯ୍ୟନ୍ତ ଅକ୍ଷୟ ଅତୁଟ ହୋଇ ରହେ। ରାଧାଙ୍କୁ ଶ୍ରୀକୃଷ୍ଣ କହିଛନ୍ତି -

କୋଟି କୋଟି କଳ୍ପାନ୍ତେ ତୋ ଅଙ୍ଗ ସଙ୍ଗ
କେତେବେଳେ ହେଁ ହୋଇନାହିଁ ବିଭଙ୍ଗରେ । (୨୦-୭୨)

ବିରହ କାଳରେ ଶ୍ରୀକୃଷ୍ଣଙ୍କର ନାମ ହେଉଛି ଏକମାତ୍ର ଜପ । ଶ୍ରୀକୃଷ୍ଣଙ୍କର ରୂପ ହେଉଛି ଏକମାତ୍ର ଧ୍ୟାନ । ଶ୍ରୀକୃଷ୍ଣଙ୍କର ମନୋହର ମୂର୍ତ୍ତି ହେଉଛି ଏକମାତ୍ର ବିଚାର ଓ କୃଷ୍ଣସଙ୍ଗୀ ମନ୍ତ୍ର ହେଉଛି ଏକମାତ୍ର ମନ୍ତ୍ର । ଶ୍ରୀକୃଷ୍ଣଙ୍କ ମଥୁରା ଯାତ୍ରାରେ ବ୍ୟଥିତା ଗୋପୀ କହିଛି,

କରିଥିଲୁ କାମନା ସକଳ ଗୋପାଙ୍ଗନା
ତୁମ୍ଭେ ଗୋପରେ ଶୁଭେ ଥିବ,
କଉତୁକେ ହରଷ ରସେ ପାଦ ସାରସ
ସେବାରେ ଆମ ଦିନ ଯିବ । ୭୬-୯.

ଶ୍ରୀକୃଷ୍ଣ ଓ ଗୋପୀଙ୍କର ମଧୁର ଭାବକୁ କବି ଗୋପୀଭାବ ଓ କୁମୁଦ ନନ୍ଦିନୀ ଭାବ କହିଛନ୍ତି । ଏଇ ଉଜ୍ଜ୍ୱଳ, ମଧୁର ବା କନ୍ଦର୍ପ ରସକୁ ରୂପ ଗୋସ୍ୱାମୀ ଭକ୍ତିରସ କୁହନ୍ତି । ଏହା ପୁଣି 'ଭକ୍ତି - ରସ - ରା' ବା ଭକ୍ତିରସର ରାଜା । ଦୀନକୃଷ୍ଣ ରସକଲ୍ଲୋଳରେ ଭକ୍ତି ଓ କବିତ୍ୱ ଉଭୟକୁ ସମାନ ଭାବରେ ବିଚାର କରିଛନ୍ତି । କେତେବେଳେ ଭକ୍ତି ମୁଖ୍ୟ ହୋଇ ଉଠିଛି ତ କେତେବେଳେ କବିତ୍ୱ ।

ବୈଷ୍ଣବ ସମାଲୋଚକ ମତରେ ଭକ୍ତିଭାବର ରସ ହେଉଛି ମଧୁର, ଭାବ ହେଉଛି ଶ୍ୟାମ, ରଙ୍ଗ ଉଜ୍ଜ୍ୱଳ ଓ ଦେବତା ହେଉଛନ୍ତି ଶ୍ରୀକୃଷ୍ଣ ।

ରସକଲ୍ଲୋଳର ରସ ପଦବୀକୁ ଉନ୍ନୀତ ହେବା ପାଇଁ କବି ଅନ୍ୟ ଗୋଟିଏ ପଥର ନିର୍ଦ୍ଦେଶ ଦେଇଛନ୍ତି । ତାହାର ପାଞ୍ଚୋଟି ସୋପାନ । ଏଇ ସୋପାନମାନଙ୍କ ମଧ୍ୟରୁ କେଉଁଠି ପ୍ରଥମ ବା ଶେଷ ବା କାହା ପରେ କିଏ ଆସିବ ସେ ବିଷୟରେ କିଛି କୁହାଯାଇନି । ସେମାନେ ହେଉଛନ୍ତି, କ-ନିୟମ, କଥା, କୌତୁକ, କୁଟିଳ ବର୍ଣ୍ଣାବଳୀ ଓ କବିର ହୃଦୟ । ଅଳଙ୍କାର ଶାସ୍ତ୍ରରୁ ଏହିପରି ୫ଟି ସୋପାନର ପରିଚୟ ମିଳେ । ସେମାନେ ହେଉଛନ୍ତି-ଶବ୍ଦ, ବାଚ୍ୟ, ରୀତି, ଅଳଙ୍କାର ଓ ଛନ୍ଦ । କାବ୍ୟ ମଧ୍ୟରେ କେବଳ ଏଇ ସବୁର ଚିତ୍ରଣ ରହି କାବ୍ୟର ଆତ୍ମା ରସ ନ ଥିଲେ ତାହା ଅସ୍ୱାଦ୍ୟ । ଆଳଙ୍କାରିକ ଏହାକୁ ଚିତ କାବ୍ୟ କୁହେ । କାବ୍ୟ ନାମରେ ତାହା ଅକାବ୍ୟର ସୃଷ୍ଟି । ଚିତ୍ର ଯେପରି ବସ୍ତୁର ଅନୁକରଣ, କିନ୍ତୁ ବସ୍ତୁ ନୁହେଁ, ସେହିପରି ଏହି ଚିତ୍ର କାବ୍ୟ କେବଳ କାବ୍ୟର ଅନୁକରଣ କାବ୍ୟ ନୁହେଁ । ଦୀନକୃଷ୍ଣ କୃଷ୍ଣ କଥାକୁ କେବଳ ରସ ନୁହେଁ ରସ-ପୀୟୁଷର ସ୍ତରକୁ ଉନ୍ନୀତ କରିଛନ୍ତି । ରସକଲ୍ଲୋଳରୁ ରସ ଜାତ କରିବା ପାଇଁ କବିଙ୍କର ସମସ୍ତ ଆୟୋଜନ ସଂପୂର୍ଣ୍ଣ । ରସ ପୀୟୁଷ କୃଷ୍ଣକଥା ଏହି କାବ୍ୟର ପ୍ରାଣ । ଏହି ରସର ପରିପୂର୍ଣ୍ଣ ଅଭିବ୍ୟକ୍ତି ହୁଏ ଶ୍ରୀକୃଷ୍ଣଙ୍କ ମଧୁର ଲୀଳାରେ । ସେଥିପାଇଁ କୃଷ୍ଣରୂପ ଧ୍ୟାନ କୃଷ୍ଣଚରିତ ଗାନ, କୃଷ୍ଣ କଥା ଶ୍ରବଣକୁ କବି କଥାର ସାର ରୂପେ ଗ୍ରହଣ କରିଛନ୍ତି ।

କବିତ୍ୱ ରସ ହେଉଛି ଉତ୍ତମ ଗୋକ୍ଷୀର । କାବ୍ୟ ହେଉଛି କ୍ଷୀର ସିନ୍ଧୁ । ଏଥିରୁ ରସ ଜାତ କରିବାପାଇଁ କୃଷ୍ଣ ସେବକ ଗୋପୀ ଭକ୍ତି ଯାର ସେହିପରି କୋବିଦ, ଶ୍ରଦ୍ଧାବନ୍ତ ଶ୍ରୋତା ଓ ଧମ୍ମିଲବନ୍ତ ଧୀରମାନଙ୍କୁ କବି ଆହ୍ୱାନ କରିଛନ୍ତି । ଏହି କାବ୍ୟ ସେହିମାନଙ୍କ ପାଇଁ ଅଭିପ୍ରେତ । ଅଭିନବଗୁପ୍ତ ଯେଉଁମାନଙ୍କୁ ସହୃଦୟ କୁହନ୍ତି ତାର ସହ ଦୀନକୃଷ୍ଣଙ୍କ କୃଷ୍ଣସେବକ ଗୋପୀ ଭକ୍ତି ଯାର ଏପରି ଭକ୍ତମାନଙ୍କୁ ମିଶାଇ ଦେଲେ ଯେଉଁ ରସିକ ଭକ୍ତ ସଂପ୍ରଦାୟର ସୃଷ୍ଟି ହେବ, ସେଇମାନେ ରସକଲ୍ଲୋଳରୁ ରସପାନ କରିବାକୁ ସମର୍ଥ । ଅଗ୍ନିପୁରାଣ, ଓ ସାହିତ୍ୟ ଦର୍ପଣକାରକ ମତରେ ଏମାନେ ଅକଳୁଷ ଆତ୍ମା ଓ ବାସନ୍ୟାଶ ସଂସ୍କାର ହେବା ଉଚିତ । କଠୋର, କୁଟିଳ, କପଟୀ, କୁମତି, ଗୁଆଁର ଓ କୁତ୍ସିତ ବୁଦ୍ଧି ବ୍ୟକ୍ତିମାନଙ୍କ ପାଇଁ ଏ ଅମଙ୍ଗଳ । କବି ଯେଉଁ ଧୀଷଣାରୂପୀ ମନ୍ଦର

ପର୍ବତର ଉଲ୍ଲେଖ କରିଛନ୍ତି, ତାହା ଶବ୍ଦର ପଣ୍ଡିତ୍ୟର ଅର୍ଥ ବା କାବ୍ୟର ତତ୍ତ୍ୱାଲୋଚନା କରିବା ପାଇଁ ନୁହେଁ, ରସାସ୍ୱାଦନ ପାଇଁ । କାବ୍ୟରୁ ରସ ଜାତ କରିବାକୁ ହେଲେ ଏହି ଧୀଷଣା ସହ ଶ୍ରୋତାର ଶ୍ରଦ୍ଧା ଓ ସ୍ନେହର ସଙ୍ଗତି ଆବଶ୍ୟକ। ତାହା ନ ହେଲେ ଏଇ ଧୀଷଣାରୂପୀ ମନ୍ଦର ପର୍ବତର ମନ୍ଥନ ଦ୍ୱାରା କାବ୍ୟର ତତ୍ତ୍ୱ ବିଚାର ହିଁ ସାର ହେବ, ରସ ଜାତ ହେବନି । କାରଣ ରସ-ତତ୍ତ୍ୱ ରସ ନୁହେଁ, ତତ୍ତ୍ୱ ମାତ୍ର । ପ୍ରାଚୀନ ଆଳଙ୍କାରିକ ସେଥିପାଇଁ କାବ୍ୟ ରସର ଆଧାର ରୂପେ କାବ୍ୟକୁ ଗ୍ରହଣ କରିନାହିଁ । କବିଙ୍କୁ ମଧ ନୁହେଁ। ସହୃଦୟ କାବ୍ୟ ପାଠରେ ମନ ଏଥିପାଇଁ ପ୍ରଶସ୍ତ । 'କାବ୍ୟେ ରସୟିତା ସର୍ବେ । ନ ବୋଦ୍ଧା ନ ନିୟୋଗଭାକ୍ ।' ଡକ୍ଟର ରାକେଶ ଗୁପ୍ତ ରସାସ୍ୱାଦର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କଲାବେଳେ ଶ୍ରୋତା, ପାଠକ ବା ଦର୍ଶକର ବ୍ୟକ୍ତିତ୍ୱ ଓ ରୁଚିକୁ ପ୍ରାଧାନ୍ୟ ଦେଇଛନ୍ତି । ରସକଲ୍ଲୋଳ ରସଗ୍ରନ୍ଥ ନୁହେଁ । ଏଥିରେ ରସର ବିଚାର ହୋଇନାହିଁ, ପ୍ରୟୋଗ ହୋଇଛି । ଭକ୍ତି ଓ ରତିର ମିଶ୍ରଣରେ କୃଷ୍ଣକଥା ଅପରୂପ ସୌନ୍ଦର୍ଯ୍ୟ ଲାଭ କରିଛି । କେବଳ ଦୀନକୃଷ୍ଣ ନୁହନ୍ତି, ମଧ ଯୁଗର ବହୁ ବୈଷ୍ଣବ କବି ଏଇ ପ୍ରଶଂସାର ଅଧିକାରୀ । ଡକ୍ଟର ଦ୍ୱିବେଦୀ କହିଛନ୍ତି, ଲଳିତ କଳାର ସୁକୁମାର ପ୍ରାଣ ରସ ସହ ଧାର୍ମିକ ଓ ଦାର୍ଶନିକ ସାଧନାର ପରମ ଲକ୍ଷ୍ୟର ଏ ପ୍ରକାର ଏକୀକରଣ ଅନ୍ୟତ୍ର ଦୁର୍ଲଭ । ଏଇ ଯୁଗରେ ଦେଶୀ ଭାଷା ରଚିତ ସାହିତ୍ୟର ସଂସାରର ସାହିତ୍ୟିକ ସାଧାନକୁ ଏହା ହେଉଛି ମହାନ ଦାନ ।

## (୭)
# କବି ହୃଦ ଅବଲମ୍ବକୁ ଜାତ

କାବ୍ୟର ଭାଷାହିଁ କବି ଓ କବିକୃତିର ଶ୍ରେଷ୍ଠ ପରିଚାୟକ । ତେଣୁ ରସକଲ୍ଲୋଳକାର ଦୀନକୃଷ୍ଣଙ୍କ ବ୍ୟକ୍ତିତ୍ୱର ସମ୍ୟକ ପରିଚୟ ପାଇଁ ସେହି କାବ୍ୟରେ ପ୍ରଯୁକ୍ତ ଶବ୍ଦାବଳୀହିଁ ପ୍ରଥମ ଓ ପ୍ରକୃଷ୍ଟ ଉପାଦାନ । ଏ ସବୁର ଅଧ୍ୟୟନ ଓ ଅନୁଶୀଳନ କଲେ କବିଙ୍କ ଶବ୍ଦପାଣ୍ଡିତ୍ୟ, ଭାଷା ପ୍ରୟୋଗର କୁଶଳତା ଏବଂ ତହିଁରେ ଅନ୍ତର୍ନିହିତ ଥିବା କବିଙ୍କର ବ୍ୟକ୍ତିଗତ ଦୃଷ୍ଟିକୋଣ, ପୁଣି କବିଙ୍କ ପୂର୍ବକାଳୀନ ତଥା ସମକାଳୀନ ସମାଜର ବିଭିନ୍ନ ବ୍ୟବସ୍ଥା ଅବ୍ୟବସ୍ଥା, ରାଜନୈତିକ, ଧାର୍ମିକ, ସାହିତ୍ୟିକ ଏବଂ ସାଂସ୍କୃତିକ ପରିସ୍ଥିତି ଓ ପୃଷ୍ଠଭୂମି ସମ୍ବନ୍ଧରେ ବହୁ ସୂଚନା ମିଳେ ।

କବି ସାମାଜିକ ଜୀବ । ସମାଜରେ ସେ ବହୁ କଥା ଦେଖେ ଓ ଶୁଣେ । କାବ୍ୟ ରଚନା କଲାବେଳେ ତାର ସାମାଜିକ ପରିବେଷ୍ଟନୀ ତା ମନ ମଧ୍ୟରେ 'ଅନ୍ତପଟ ଅନ୍ତ ନୃତ୍ୟକାରୀ' ପରି ବିଭିନ୍ନ ଲୀଳା ସମ୍ପାଦନ କରୁଥାନ୍ତି । ସେ ସବୁରୁ କାବ୍ୟର ଆବଶ୍ୟକତା ଅନୁଯାୟୀ ଉପାଦାନ ଆହରଣ କରି ସେ କାବ୍ୟରେ ରସ ଜଗତର ସୃଷ୍ଟିକରେ । କାବ୍ୟରେ ରୂପ ପାଇଥିବା ରସଜଗତ ବିସ୍ତୁ ଜଗତଠାରୁ ସମ୍ପୂର୍ଣ୍ଣ ଭିନ୍ନ । କବି ନିଜ ସମୟର ସମାଜ ବ୍ୟବସ୍ଥା, ଅର୍ଥନୈତିକ ଅବସ୍ଥା ବା ରାଜନୈତିକ ସମସ୍ୟାର ଚିତ୍ରଣପାଇଁ କାବ୍ୟ ଲେଖେନାହିଁ । କିନ୍ତୁ କବିର ଅଜାଣତରେ ତାଙ୍କ ସମାଜର ବହୁ କଥା କାବ୍ୟ ମଧ୍ୟରେ ପ୍ରବେଶ ଲାଭ କରିଥାଏ । ସେ ସବୁ ଉପାଦାନକୁ ବିଶ୍ଳେଷଣ କଲେ କୌଣସି ସାହିତ୍ୟର ସାହିତ୍ୟିକ ମୂଲ୍ୟ ନିର୍ଦ୍ଧାରିତ ହୁଏନାହିଁ ସତ, କିନ୍ତୁ କବିର ବ୍ୟକ୍ତିଗତ ଅନୁଭବ, ଅନୁମାନ, ସମାଜ ଚେତନା ଓ ନିରୀକ୍ଷଣ ଶକ୍ତିର ଅନୁଶୀଳନ ପାଇଁ ଏ ସବୁର ଅଧ୍ୟୟନର ଆବ୍ୟାକତା ଯେ ଅଛି, ଏହା ସମସ୍ତେ ସ୍ୱୀକାର କରିବେ । କୋଣାର୍କ ମନ୍ଦିରର ସମୂହ ରୂପସମ୍ଭାରକୁ ଉପଭୋଗ କରିବା ଗୋଟିଏ କଥା ଓ ଏହାକୁ ଭାଙ୍ଗି ପଥରଗଦାର ମୂଲ୍ୟ ନିର୍ଦ୍ଧାରଣ କରିବା ଆଉଗୋଟିଏ କଥା । ପଥରଗଦାରୁ କୋଣାର୍କର ଚାରୁକଳା ଜାଣିହୁଏ ନାହିଁ ସତ କିନ୍ତୁ ଯେଉଁସବୁ ପଥର ମୂର୍ତ୍ତିରେ ପରିଣତ ହୋଇ ସାରିଥାଏ ସେ ସବୁକୁ ଯେତେ ଅଲଗା ଅଲଗା କରିଦେଲେ ମଧ୍ୟ, ତାର କହିବା ଶକ୍ତି ଲୋପ ପାଏ ନାହିଁ । ସେହିପରି କାବ୍ୟରେ ପ୍ରଯୁକ୍ତ ବର୍ଣ୍ଣ ଓ ବର୍ଣ୍ଣାବଳୀ ପଥର ପରି ବର୍ଣ୍ଣ, ନିର୍ଜ୍ଜୀବ । ପଥରରେ ମୂର୍ତ୍ତି ତିଆରି

ହେବାପରେ ସେ ବର୍ଣ୍ଣାବଳୀ ବା ଶବ୍ଦ ପରି ସଜୀବ ହୋଇଯାଏ । ରକ୍ତବୀର୍ଯ୍ୟ ପରି ତାକୁ ଯେଉଁଠି ରଖିଲେ ମଧ୍ଯ ସେ କିଛି ନା କିଛି କାମ କରେ ।

ସମାଜରୁ ଶବ୍ଦାବଳୀ ସଂଗୃହୀତ ହୋଇ କାବ୍ୟ ମଧ୍ୟରେ ବିଭିନ୍ନ ସ୍ଥାନରେ ବିଭିନ୍ନ କାର୍ଯ୍ୟରେ ଲାଗିଥାନ୍ତି । କାବ୍ୟରୁ ସେ ସବୁକୁ ସଂଗ୍ରହ କରି ସାମାଜିକ ପରିବେଷ୍ଟନୀ ଅନୁଯାୟୀ ଏକତ୍ର କଲେ, କବିର ସାମାଜିକ ପୃଷ୍ଠଭୂମି ସମ୍ବନ୍ଧରେ ସେମାନେ ବହୁ କଥା କୁହନ୍ତି, ଯାହାକି କାବ୍ୟର ବିଷୟବସ୍ତୁ ନୁହେଁ, ଏପରିକି କାବ୍ୟର ବର୍ଣ୍ଣିତ ବସ୍ତୁ ସହ ଏହାର କୌଣସି ସମ୍ପର୍କ ବି ନାହିଁ । କାବ୍ୟରେ ପ୍ରଯୁକ୍ତ ପତ୍ୟେକ ଶବ୍ଦ ସମାଜର ପ୍ରତୀକରୂପେ କାର୍ଯ୍ୟ କରୁଥିଲେ ହେଁ ନିମ୍ନରେ ଲୋକସଂସ୍କୃତି ସହ ସଂପୃକ୍ତ ଶବ୍ଦାବଳୀକୁ ଆଲୋଚନାର ସୁବିଧା ପାଇଁ ବାରୋଟି ବିଭାଗରେ ବିଭକ୍ତ କରାଯାଇଛି : ୧-ପରିବାର ତଥା ସମାଜ ସହ ସଂପୃକ୍ତ ଶବ୍ଦାବଳୀ । ୨-ଲୋକାଚାର । ୩-ଶିଷ୍ଟାଚାର । ୪-ବେଶ, ଭୂଷା, ପ୍ରସାଧନ ଓ ଖାଦ୍ୟ । ୫-ସାଜସଜ୍ଜା । ୬-ଜାତି ଓ ବ୍ୟବସାୟ ୭-କଳା ଓ କୌଶଳ । ୮-ମନୋବିନୋଦର ସାମଗ୍ରୀ । ୯-ଭୋଗବିଳାସ ଓ ରୋଗ । ୧୦-ଜନବିଶ୍ୱାସ । ୧୧-କାବ୍ୟ ପ୍ରସିଦ୍ଧି । ୧୨-ରାଜକାର୍ଯ୍ୟସୂଚକ ଶବ୍ଦାବଳୀ । ପରିବାର ସମାଜ ଗଠନର ପ୍ରଥମ ସୋପାନ । ବନ୍ଧୁ, ବାନ୍ଧବ ଓ କୁଟୁମ୍ବମାନଙ୍କୁ ଘେନି ସମାଜର ସୃଷ୍ଟି । ରସକଲ୍ଲୋଳର ଶବ୍ଦାବଳୀରୁ ସମାଜର ଯେଉଁ ସଂପର୍କୀୟମାନଙ୍କର ପରିଚୟ ମିଳେ ସେମାନେ ହେଉଛନ୍ତି ପିତା (୩୪-୨୭), ସେହି ଅର୍ଥରେ ଜନକ, ବାପ, ତାତ (୩୧-୧୯), ମାତା (୫-୮), ସେହି ଅର୍ଥରେ ମା ୫-୪, ୫-୨୭, ୫-୨୮, ଅମ୍ବା ୨୯-୧୩ ଉପମାତା, ୩୪-୨୭, ମାମୁଁ ୧୫-୩୨, ୨୯-୨, ୩, ୪, ମାଇଁ ୨୯-୧,୨,୫,୧୦, ଅଜା ୨୬-୨୮, କୁମର ୨-୧୨, ୩-୧, ୪-୪୭, ୫-୧୧, ୫-୧୭, ୬-୨), ସେହି ଅର୍ଥରେ ସୁତ, ୨-୯, ୫-୧୧, ୫-୧୪, ୫-୧୭, ୬-୮, ୯-୧୨, ୧୫-୩୨, ୨୭-୨୫, ନନ୍ଦନ, ୫-୨୨, ୭-୧, କୁମାର ୩-୩୦, ୩-୪୮, ୩-୫୭, ୩-୬୦, ୪-୧, ୪-୧୭, ୪-୨୦, ୫-୧୧, ବାଳ, ୩-୨୯ ଦୁହିତା, ୨-୧୨) ସେହି ଅର୍ଥରେ କନ୍ୟା, ୨-୮, ୩-୪୭, କୁମାରୀ ୨-୯, ୨-୧୨, ୨-୧୫, ୧୬-୩, ଭଗ୍ନୀ, ୨-୮, ସେହି ଅର୍ଚରେ ବହିଣୀ ୪-୪୮, ଭାଇ ୫-୬, ବଇମାତ୍ର ଭାଇ ୩୪-୨୭, ଭିଣୋଇ, ୨-୮, ଭଣଜା, ୨୭-୨୨, ପତି, ୫-୨୧, ୨୮-୨, ସେହି ଅର୍ଥରେ କାନ୍ତ, ୩,୭,୮,୧୧-

୯, ୧୨-୨, ୭, ୯,୧୧, ୩୧, ୩୨, ୧୪-୩୬, ୧୬-୧୫, ୨୦-୧, ୨୦-୨୭ ନାୟକ, ୧୬-୧୩, ଦୟିତ ୧୪-୨, ୧୬-୧୧, ପୁରୁଷ, ୧୧-୨୬, ନାହା ୨୫-୨୦, ଜାୟା, ୩-୨୪, ସେହି ଅର୍ଥରେ କାମିନୀ, ୧୧-୨୪, ୧୬-୯, ଯୁବତୀ, ୪-୧୮, ବାଳୀ, ୩-୯, କାନ୍ତା, ୧୧-୯, ୧୨-୨, ୧୨-୯, ୧୬-୧୧, ସ୍ତିରୀ, ରମଣ, ୯-୧୪, ବାମା, ପ୍ରିୟତମା, ୧୦-୨, ୧୨-୧୮, ଭାରିଯା, ୨୭-୨୮, ପତ୍ନୀ, ୨୧-୩୭, ଅଙ୍ଗନା, ୨୨-୫୦, ପ୍ରାଣପ୍ରେୟସୀ, ୧୬-୧୬, ୨୬-୧୭, ବନିତା, ୧୨-୧, ୧ ୪-୧୫, ବାନ୍ଧବୀ, ୧୬-୪) ଓ ଦମ୍ପତୀ, ୧୧-୨୮ ।

ସମାଜରେ ନାରୀ ଓ ପୁରୁଷ ସେମାନଙ୍କର ଗୁଣ, ଶୋଭା ଓ ବୟସ ଭେଦରେ ବିଭିନ୍ନ ରୂପ ଧାରଣ କରିଥାନ୍ତି । ବୟସ ଦୃଷ୍ଟିରୁ ପୁରୁଷ ସବୁକୁ କୁମାର (୩-୩୦), ବାଳକ, (୨-୧୬) କିଶୋର (୩-୩୯) ଓ ଯୁବା (୧୨-୫) ଭାବେ ବିଭକ୍ତ କଲାପରି ନାରୀମାନଙ୍କୁ କୁମାରୀ, (୨-୯), କିଶୋରୀ (୭-୧) ବାଳିକା (୮-୨୩) ଅଦୃଷ୍ଟରଜା (୧୧-୬୯) ଯୁବତୀ (୩-୪୦) ଓ ଜରତୀ (୭-୩) ବା ବୃଦ୍ଧା (୧୨-୩୮) କହିଛନ୍ତି । ମଣିଷନିଜର ଗୁଣ ବା ପ୍ରକୃତି ଯୋଗୁଁ ସେମାଜରେ ସାଧୁ ବା ଅସାଧୁ ଭାବେ ପରିଚିତ ହୁଏ । ରସକଲ୍ଲୋଳରେ ଏମାନଙ୍କ ପାଇଁ ଅସଂଖ୍ୟ ଶବ୍ଦ ପ୍ରଯୁକ୍ତ । କୃଷ୍ଣ କଥାରେ ରସିକ ଲୋକମାନଙ୍କୁ କବି ଦୀନକୃଷ୍ଣ ସାଧୁ (୯-୧), ସୁଜନ (୧୧-୮୦) । ରସିକ (୮-୩୧), ସିହାଣ (୮-୩୧) ବିବେକ (୩୩-୨୭) ପଣ୍ଡିତ (୭-୪୦) ଗୁଣୀ, (୧୬-୨୭) ଗୁରବନ୍ତ (୩୧-୧୭) କୋବିଦ (୧୫-୬) ଓ ଉତ୍ତମଜନ (୧୬-୨୦) ସୁକୃତ ପରାଣୀ (୧୨-୩୫) କହି ସମ୍ମାନ ପ୍ରଦର୍ଶନ କଲାପରି ଅରସିକମାନଙ୍କ ପ୍ରତି ସେ ଦୃଷ୍ଟ, (୨୫-୨୧), ନାସ୍ତିକ (୨-୧୩) କୃତଘ୍ନ (୭-୨୬) କୁଟିଳ, (୨-୧୩) ମହାପାପୀ (୨-୧୩) ଅବିବେକ, (୨-୧୩), ମୂର୍ଖ (୯-୧୩) ଗୁଆଁର, (୮-୩), (୯-୧୩), ଖଳ, (୧୬-୨୩), ବାଳିଶ (୧୬-୨୨), କପଟୀ (୩୪-୨୫), କୁବୁଦ୍ଧି (୧୬-୨୩), ଚୋର, (୧୫-୩୨), କୁମତି (୩୪-୨୭), କଠୋର ରସିକ, (୭-୩୧), କରୁଣା କପଟ (୩୨-୧୬) ଓ କର୍କଶର କୂଟ (୩୨-୧୬) ପ୍ରଭୃତି ଶବ୍ଦ ପ୍ରୟୋଗ କରିଛନ୍ତି । ନାରୀମାନେ ମଧ ନିଜର ଗୁଣ ଯୋଗୁଁ ନାଗରୀ, ଚତୁରୀ ଓ ରସିକିନୀ ରୂପେ ସମାଜରେ ପରିଚିତ । ଏମାନଙ୍କ ମଧରୁ କୁଳବତୀମାନଙ୍କ ପ୍ରତି, ସେହି

ଅର୍ଥରେ କୁଳ ପାଳିକା, (୧୬-୨), କୁଳ ଯୁବତୀ (୩-୪୦) କୁଳବଧୂ (୨୭-୧୧), ଓ ସ୍ୱାଧୀନ ଭର୍ତ୍ତୃକା (୮-୧୬), କବିଙ୍କର ଅତ୍ୟନ୍ତ ଶ୍ରଦ୍ଧା । ସେମାନେ ଅନ୍ୟ ପୁରୁଷର କୋମଳ କଥାରେ ଭୁଲି ଯାଆନ୍ତି ନାହିଁ (୮-୧୮), ପତିବ୍ରତା ବ୍ରତ (୩-୪୦) ପାଳନ କରି କୂଳକୁ ଉଜ୍ଜ୍ୱଳ କରିଥାନ୍ତି । ବଡ଼ଭୀ ପୁରେ ଥାଇ ଜାଳା ଭିତରେ ଅବଲୋକନ କରିବା ଦୃଶ୍ୟ କବିଙ୍କୁ ମୁଗ୍ଧ କରିଛି । ଅନ୍ୟ ପକ୍ଷରେ କୁଳଟାମାନେ ଗୃହପତି ତ୍ୟାଗ କରି (୧୮-୨୫), ନିଶାଭିସାରୀ ହୋଇ (୧୪-୨୧) ବେଳେବେଳେ ବନରେବିହାର କରନ୍ତି । ନାରୀ ଜାତି ମଧ୍ୟରେ ବାରନାରୀ (୧୪-୨୩), ସେହି ଅର୍ଥରେ ବାରବଧୂ (୧୩-୧୭) ଆଉ ଗୋଟିଏ ବିଭାଗ । ପରପୁରୁଷକୁ ଆକୃଷ୍ଟ କରିବା ସେମାନଙ୍କର କାର୍ଯ୍ୟ । ସେଥିପାଇଁ ସେମାନେ ସନ୍ଧ୍ୟାକାଳରେ ନିଧୁବନ ଆଶାରେ ଅନୁରାଗବତୀ ହୋଇ ଅଙ୍ଗକୁ ସଜ୍ଜିତ କରି ଠିଆ ହୁଅନ୍ତି । (୧୩-୧୭) ସେମାନଙ୍କ ପୁରକୁ ଯିବା ସମାଜରେ ନିଷିଦ୍ଧ କର୍ମରୂପେ ବିବେଚିତ ହେଉଥିଲେ ହେଁ ଅନେକେ ଏହି ଦୂଷଣକୁ ଭୂଷଣ କରିଥାନ୍ତି । (୧୪-୨୮) । ଏମାନେ ସମାଜରେ ଜାର (୧୪-୩୦) ବା ଶଠ ପୁରୁଷ (୧୪-୨୦) ଭାବେ ପରିଚିତ । ବାରନାରୀ ପୁରରେ ରାତ୍ରି ଯାପନ କରି ସକାଳୁ ସକାଳୁ ଭୀତ ଓ ଶଙ୍କିତ ମନରେ ଏମାନେ ଘରକୁ ଫେରିଆସନ୍ତି (୧୪-୨୮) । ସେଥିପାଇଁ ସେମାନଙ୍କୁ ସଖୀମାନଙ୍କ ଦ୍ୱାରା ତିରସ୍କୃତ ହେବାକୁ ପଡ଼େ (୧୪-୨୫) । ବେଳେବେଳେ ସେମାନଙ୍କ ଗାଲରେ ଲାଗିଥିବା ଚନ୍ଦନ ଓ କଜ୍ଜ୍ୱଳ ଚୂନ କଳା ଦାଗ ପରି ବିକୃତ ଦେଖାଯାଏ (୧୪-୨୯) । ନାରୀମାନଙ୍କ ମଧ୍ୟରେ ସବୁଠାରୁ ଦୁଃଖିନୀ ହେଉଛି, କାନ୍ତହତ କାନ୍ତା (୧୫-୭) ବା କାନ୍ତ ରହିତ କାନ୍ତା (୧୫-୪) । ଏମାନଙ୍କୁ ବିଯୋଗିନୀ (୧୨-୨୫) ବା ବିରହିଣୀ (୧୨-୨୩) କୁହାଯାଏ । ଯେଉଁମାନଙ୍କର ବିରହ ସାମୟିକ ବା ଯେଉଁମାନଙ୍କର ସ୍ୱାମୀ ପ୍ରବାସରୁ ଫେରି ଆସିବାରେ ଆଶା ଥାଏ (୧୬-୧୬) ସେମାନେ କଷ୍ଟେମଷ୍ଟେ ଜୀବନ ବ୍ୟତୀତ କରିଥାନ୍ତି (୩୧-୨) । କିନ୍ତୁ ଯେଉଁମାନଙ୍କର ସ୍ୱାମୀ ଚିରଦିନ ପାଇଁ ଚାଲିଯାଏ, ସେମାନଙ୍କର ଆଶା ଭରସା ଲୋପ ପାଇଯାଏ । ସେଥିପାଇଁ ସେମାନେ ବେଶ ଅନ୍ତକରି (୧୫-୪), ମୁହଁମାଡ଼ି (ହୃଦୟରେ) ଶୋଇ ରୁହନ୍ତି (୧୫-୭) । ବିରହ ବେଦନା ଅତ୍ୟଧିକ ହେଲେ ଅନଳରେ ଝାସ ଦେଇ ସ୍ୱାମୀପଥଗାମିନୀ ହୁଅନ୍ତି । ଅନଳରେ ଝାସ ଦେବା ଉଲ୍ଲେଖରୁ କବି ସତୀଦାହ ପ୍ରଥା ପ୍ରତି ସଂକେତ କରିଥିବା ଅନୁମାନ କରାଯାଇ ପାରେ (୨୬-୩)

ସମାଜରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କୁ କବି ପ୍ରଭୁ, କରତା, ସାମନ୍ତ ଓ ବଡ଼ଲୋକ ଭାବେ ଉଲ୍ଲେଖ କରିଛନ୍ତି । ସାଧାରଣତଃ କ୍ଷମତା ଓ ଧନ ପ୍ରଭୁତ୍ୱ ବା ବଡ଼ଲୋକୀର (୩୨-୨୩) ମାପକାଠି ହେଲେ ହେଁ ସେବକବତ୍ସଳତା (୩୨-୭) ଓ ପରୋପକାରିତା (୩୨-୩୧) ଗୁଣ ସେମାନଙ୍କର ସମ୍ମାନ ବୃଦ୍ଧି କରେ । ପ୍ରଭୁ ଶବ୍ଦ ଅତି ବ୍ୟାପକ । ଭଗବାନ ଓ ନରପତି ମଧ ପ୍ରଭୁ । ଏମାନଙ୍କର ବିଚାର ଅତି ବିଚିତ୍ର । ବହୁଭାବରେ ସମ୍ମାନିତ ହେଉଥିବା ସେବକ ଅକାରଣରେ ଦଣ୍ଡିତ ବି ହୋଇଥାଏ (୨୬-୮) । ସେତେବେଳେ ସେବକର ସବୁ ପ୍ରକାର ବିନୟ, ଅନୁନୟ ବିଫଳ ହୁଏ (୨୬-୮୬) । ସେହିସମୟର ଅସହାୟ ଅବସ୍ଥାକୁ ଲକ୍ଷ୍ୟ କରି କବି କହିଛନ୍ତି,

କୃପାକଲା ଲୋକ ନୋହିବ ବିବେକ ଆପଣା ଲୋକରେ ଯେବେ ।
କାକୁସ୍ଥେ କହିବା ପରେ କୁହାଇବା କଉଁ କାର୍ଯ୍ୟ ହେବ ତେବେ ସେ ।
କଥା କଡ଼ାକରେ ଲେଖା ନୋହେ । କେତେ ଅଧର୍ଯ୍ୟ ମାତ୍ରକ ରହେ ସେ । ୩୩-୨୭ ।

କର୍ତ୍ତା ବା ପ୍ରଭୁର ସେବକବତ୍ସଳତା ଗୁଣ ଯୋଗୁଁ ସେ ଯେ ଲୋକ ମଧ୍ୟେ ଗଣିତା ହୁଏ (୩୨-୭) ତାହା ନୁହେଁ, ସେବକର ସମ୍ମାନ ମଧ୍ୟ ବୃଦ୍ଧିପାଏ (୩୨-୧୦) । ସେବକ ପ୍ରତି ଅବେଭାର ବା ଦଣ୍ଡ ଦେଲେ ସେବକର ସାହାହେବା ପାଇଁ କେହି ନଥାନ୍ତି (୨୬-୮୬) । ଦଣ୍ଡ ପ୍ରତ୍ୟାହାର କରିବା ପାଇଁ ପ୍ରଭୁହିଁ ସମର୍ଥ । ସାଧାରଣତଃ ସେମାନେ କହିବା କଥା ଅନ୍ୟଥା କରୁ ନ ଥିଲେ ହେଁ (୩୨-୯) ସେମାନଙ୍କୁ ବିଶ୍ୱାସ ପାଏ ନାହିଁ । (୨୬-୧୬) । ସେମାନଙ୍କର ଅବେଗାର, ଅବିଚାର ଓ ଅବିବେକୀ ପଣକୁ ଯେ ନୀତିବନ୍ତ ବିଚକ୍ଷଣମାନେ ଆଲୋଚନା କରିବେ (୩୨-୧୮) ଏହି କଥା ଭାବି ସେବକ ଆଶ୍ୱସ୍ତ ହୁଏ । କୁକର୍ମ ପାଇଁ ସେମାନଙ୍କ ପୁଅମାନେ ମଧ ନିନ୍ଦିତ ହୋଇଥାନ୍ତି । (୨୨-୩୨) ସାମନ୍ତ କୃପଣ ହେଷଳ ଓ ସେବକ ଲୋଭୀ ହେଲେ ସେବକର ଦୁର୍ଦ୍ଦଶା ଆହୁରି ବୃଦ୍ଧି ପାଏ (୧୫-୪) । ସେ କେବଳ ଆଶରେ ବଞ୍ଚିରହେ । ସମାଜରେ ଧନ ସଞ୍ଚୟ କରିବା (୧୫-୯) କୃପଣର ସ୍ୱାଭାବିକ ଧର୍ମ । ମାଗିବା ବ୍ୟକ୍ତିକୁ ପଇସାଟିଏ ବି ଦିଏ ନାହିଁ (୮-୨୬) । ମାଗିବା ବ୍ୟକ୍ତି ଲୋଭୀ ହେଲେ ତାର ଦୁଃଖଭୋଗହିଁ ସାର ହୁଏ (୧୭-୬୬) । ଧନ ହେଉଛି କୃପଣର ଜୀବନ । ଅଦ୍ଭୁତ ପଦାର୍ଥ ଦର୍ଶନରେତା ଚିତ୍ତ ଚକିତ ହୁଏ ନାହିଁ (୧୬-୨୨) । ଏତେ ଧନ ସତ୍ତ୍ୱେ ଲୋକରେ ତାର ନିନ୍ଦା । ସେ ସଞ୍ଚିତ ଧନକୁ ଭୋଗ କରି ନ ପାରିଲେ ଲୋକେ ଆନନ୍ଦିତ ହୁଅନ୍ତି (୨୨-୨୦) ।

ସମାଜରୁ ସାହୁକାରମାନଙ୍କ ମହାଜନୀ କାରବାର କବିଙ୍କୁ କାବ୍ୟର ଉପାଦାନ ରୂପେ ସାହାଯ୍ୟ କରିଛି । ରସକଲ୍ଲୋଳରେ ପ୍ରଯୁକ୍ତ ସାହୁ, ଖାତକ, (୨୩-୧୪) କଲେ ଗୁଣେ ସେ ଦୁଇଗୁଣ କରି ଦିଅଇ (୨୩-୧୪) । କଳନ୍ତର ଲୋଡେ ଗଲା ମୂଳ (୩୩-୨୦) ପ୍ରଭୃତି ପ୍ରୟୋଗ ଏହର ଦୃଷ୍ଟାନ୍ତ । ଏଥିରୁ ସେତେବେଳେ ମଧ ସାହୁକାର ମୂଳଧନ ଖଟାଇ ସମୂଳ ସୁଧ ଓ ଚକ୍ରବୃଦ୍ଧି ସୁଧ ଆଦାୟ କରୁଥିବା ପ୍ରମାଣ ମିଳୁଛି । ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ସହାୟକ ରୂପେ ରସକଲ୍ଲୋଳରେ ପୁରୁଷ ଜାତି ମଧରୁ ସଖା (୧୨-୩), (୮-୧୫), ମିତ୍ର (୧୧-୧୨) ଦାସ (୧୩-୨୮) କୋୟର (୭-୧୭) ଓ ସେବକ (୧୫-୪) କିଙ୍କର (୧୨-୫), ପୁଣି ନାରୀ ମଧରୁ ସଖୀ (୫-୨୧), ସହୀ (୧୪-୨୬), ଦାସୀ (୭-୧୭), କିଣାଦାସୀ (୨୧-୧୬) ପରିଚାରୀ (୩୨-୨୬), ଆଳୀ (୩୧-୧୫), ମିତଣି (୯-୧୪) ଧାଇ (୫-୭), ସଜନୀ (୧୬-୧୫) ଓ ଦୂତୀମାନଙ୍କୁ (୧୨-୧୯) ଦେଖିହୁଏ । ଅନୁଗତ ହେବାହିଁ କିଣାଲୋକ (୩୦-୧୦) ବା କିଣାଦାସର ଗୁଣ । ସମାଜର ବଳିତ ବର୍ଗ ପ୍ରତି କବିଙ୍କ ଦୃଷ୍ଟିକୋଣର କେତୋଟି ପରିଚୟ ରସକଲ୍ଲୋଳରୁ ମିଳେ । ସେଥିମଧ୍ୟରୁ ରଙ୍କର ଭୋଜନ ଲାଳସା ।(୭-୨୭) କୁଟୁମ୍ବୀ ଦୀନଜନର ଦୁର୍ଦ୍ଦଶା (୧୫-୨), ମହାଦରିଦ୍ରର କୋଟିନିଧି ପ୍ରାପ୍ତି (୨୩-୧) ଓ ଦରିଦ୍ରାଣୀର ଭେକ (୩୨-୩୧), ଅନ୍ଧ ଓ କାଇ (୮-୭) ଓ ମୂକ (୨-୧୫)ର ଅପାରଗତା, ମାର୍ଗଣର ଦୁର୍ଦ୍ଦଶା (୮-୨୭) ବିଶେଷଭାବେ ଉଲ୍ଲେଖନୀୟ । ସମାଜରେ ପ୍ରଚଳିତ ବିଭିନ୍ନ ଲୋକାଚାର ମଧ୍ୟରୁ ରସକଲ୍ଲୋଳର କବି ଜାତବିଧି, ନାମକରଣ ଉତ୍ସବ, ବ୍ରତ ଓ କନ୍ୟାଦାନ (୨-୮), ବିବାହର ଉଲ୍ଲେଖ କରିଛନ୍ତି । ଏ ସବୁ ବିଧିବିଧାନ ଲୋକେ ଆନନ୍ଦରେ ପାଳନ କରନ୍ତି । ଗୀତ ଓ ନୃତ୍ୟରେ ପୁର ପରିପୂର୍ଣ୍ଣ ହୁଏ । ଦୀପାବଳୀ, ଚନ୍ଦ୍ରାତପ, କର୍ପୂର, ଚନ୍ଦନ ଛରା ପ୍ରଭୃତିଦ୍ୱାରା ଗୃହ ସୁସଜ୍ଜିତ ହୁଏ । କବି ଦୀନକୃଷ୍ଣ ସୂତଗୃହ ବିଧାନ ମଧରୁ କନ୍ୟାଖମ୍ଭରେ ଦୋଳି ଖଟାଇ, ତା ଉପରେ କୁମାରଙ୍କୁ ଶୁଆଇ ହୁଳହୁଳି ଦେବା ପ୍ରଥାକୁ ଉଲ୍ଲେଖ କରିଛନ୍ତି (୨-୧୮) । ନାମକରଣ ଉତ୍ସବ ମଧ ବ୍ରାହ୍ମଣମାନଙ୍କର ଆଗମନ, ନୃତ୍ୟକାରର ନୃତ୍ୟ, ବନ୍ଦିଗଣଙ୍କ କୟେବାର ଓ ଆଭରଣ ଦାନରେ ସମ୍ପନ୍ନ ହୁଏ (୪-୩୯, ୪୦) । ସାମବେଦୀଙ୍କ ବ୍ରତ ବେଶ (୧୬-୨୭) ଉଲ୍ଲେଖରୁ ଦଣ୍ଡ କମଣ୍ଡଳୁ ଧାରଣ କରିଥିବା ବ୍ରତଚାରୀ ବ୍ରାହ୍ମଣ ବାଳକକୁ କବି ଲକ୍ଷ୍ୟ କରିଥିବା ମନେହୁଏ ।

କୋମଳ ବସନରେ ପାଦ ପୋଛିଦେବା, (୨୯-୪୭) ଆସନ ପ୍ରଦାନ କରିବା (୩୧-୨୨), ପ୍ରଭୃତି ବିଧି ପ୍ରଚଳିତ ଥିଲା । ଲୋକେ ବନ୍ଦାପନା କରି ସେମାନଙ୍କର ସ୍ୱାଗତ ମଧ କରୁଥିଲେ । (୩୦-୨୨) ଆଦର ଓ ଅଭ୍ୟର୍ଥନା ପରି ଗାଳିଦେବା ବା ନିନ୍ଦା କରିବାର ବହୁ ଦୃଷ୍ଟାନ୍ତ ରସକଲ୍ଲୋଳରେ ସଙ୍ଗୃତ ହୋଇ ରହିଛି । ବଦନପୋଡ଼ା (୧୬-୧୭), ଘରବୁଡ଼ା (୧୬-୧୭) ବଂଶ ନିର୍ବଂଶ ହେବା (୧୬-୨୧), ମୁହଁରେ ନିଆଁ (୧୬-୨୧), ଜିର୍ଭରେ କସ୍ତୁରୀ (୧୬-୨୩), କୁଟିଳ, ଦୁଷ୍ଟ ନାସ୍ତିକ, ମହାପାପୀ ଓ ଅବିବେକ (୨-୧୩) ପ୍ରଭୃତି ଅପଶବ୍ଦ ଯେ ବିରୋଧୀ, ଶତ୍ରୁ ବା ନିନ୍ଦୁକମାନଙ୍କ ପ୍ରତି ପ୍ରଯୁକ୍ତ ହେଉଥିଲା, ଏହା ରସକଲ୍ଲୋଳର ବହୁ ଉଲ୍ଲେଖରୁ ପ୍ରମାଣିତ ହୋଇଥାଏ । କୁଟିଳ ବଚନ ମନରୁ ଶୀଘ୍ର ପାସୋର ଯାଏ ନାହିଁ । (୩୨-୧୭), ଚାଳକ କଥାରୁ କଳହ ବୃଦ୍ଧି ପାଇ ଯେ କେବଳ ଦ୍ୱନ୍ଦ ଯୁଦ୍ଧରେ ପରିଣତ ହେଉଥିଲା ତାହାନୁହେଁ, (୨୮-୧୩) ଏହା ଜୀବନନାଶର ଅନ୍ୟତମ କାରଣ (୨୫-୫)। ପରନିନ୍ଦାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିବା ଲୋକଙ୍କୁ କବି ନାସ୍ତିକ ଆଖ୍ୟା ଦେଇଛନ୍ତି (୧୬-୨୨)। ଯେତେ ପ୍ରକାରେ ବୁଝାଇ କହିଲେ ମଧ୍ୟ ସେମାନଙ୍କର କୁବୁଦ୍ଧି ସୁବୁଦ୍ଧି ହୁଏନାହିଁ । (୧୬-୨୩) । କୃଷ୍ଣ କଥାର ନିନ୍ଦୁକମାନଙ୍କ ପ୍ରତି କବି ନିଜେ ମଧ୍ୟ ଅତି ନିଷ୍ଠୁର, ବାରମ୍ବାର ସେମାନଙ୍କ ଉଦ୍ଦେଶ୍ୟରେ ସେ ଗାଳି ବର୍ଷଣ କରିଛନ୍ତି ।

ସୁଖରେ କାଳ ଯାପନ କରିବା ପାଇଁ ଲୋକେ ବିଭିନ୍ନ ପ୍ରକାର ଅଳଙ୍କାର, ବିଭିନ୍ନ ପ୍ରକାର ବସ୍ତ୍ର ଓ ପ୍ରସାଧନର ବ୍ୟବହାର କରିଥାନ୍ତି । ଏ ସବୁ ଧାରଣ କଲେ କେବଳ ଯେ ଅଙ୍ଗର ଶୋଭା ବୃଦ୍ଧି ପାଏ, ତାହାନୁହେଁ, ମନ ମଧ ପ୍ରଫୁଲ୍ଲ ହୁଏ । ଦେଖିବା ଲୋକର ମନରେ ଆନନ୍ଦ ଜାତ ହୁଏ, ଅଙ୍ଗ ପୁଲକିତ ହୁଏ । ଅଳଙ୍କାର ଧାରଣର ମୂଳ ଲକ୍ଷ୍ୟ ହେଲା ଆନନ୍ଦ ପାଇବା ଓ ଆନନ୍ଦ ଦେବା । ଏହା କରି ନ ପାରିଲେ ଏହା ମୂଲ୍ୟହୀନ । ରସକଲ୍ଲୋଳକାର ଜଗନ୍ନାଥ, ଶ୍ରୀକୃଷ୍ଣ, ଗୋପୀ, ରାଧା, କୁବ୍‌ଜା ଓ ପୁତନାର ରୂପ ବର୍ଣ୍ଣନା କଲାବେଳେ ବହୁ ପ୍ରକାର ଅଳଙ୍କାରର ଉଲ୍ଲେଖ କରିଛନ୍ତି । ଏ ସବୁ ଦୀନକୃଷ୍ଣଙ୍କ ସମକାଳୀନ ସାମାଜର ଅଳଙ୍କାରପ୍ରିୟତା ତଥା ବିଳାସୀ ମନୋବୃତ୍ତିର ପରିଚାୟକ । ଜଗନ୍ନାଥଙ୍କ ବର୍ଣ୍ଣନା କଲାବେଳେ କବି ଶିରରୁ କଟି ପର୍ଯ୍ୟନ୍ତ ଶରୀରର ବିଭିନ୍ନ ଅଙ୍ଗ ପାଇଁ ବିଭିନ୍ନ ଅଳଙ୍କାରର ଉଲ୍ଲେଖ କରିଛନ୍ତି । ସେ ଶିରରେ ଦିବ୍ୟଚୂଳ (୨୪-୧୯), କପାଳରେ ରାହୁରେଖା, (୧-୪) କର୍ଣ୍ଣରେ ମକରକୁଣ୍ଡଳ, (୧-୬) କଣ୍ଠରେ

କଉସ୍ତୁଭମଣି (୧-୭) ଶାର୍ଦ୍ଦୂଳ ନଖ, (୨୪-୧୮) କଣ୍ଠିମାଳା, (୧୨-୩୦) (କଣ୍ଠିମାଳ), ମୁକୁତା ମାଳି (୧୩-୩୨), ହୃଦରେ ପଦକ (୧-୬) କରରେ କଚଟି, (୨୪-୧୮) ବାହୁଟି (୧-୬) ଓ କଟିରେ କିଙ୍କିଣୀ (୧-୧୧) ଓ ଓଡ଼ିଆଣୀ (୨୪-୧୮) ସମସ୍ତ ଶରୀରରେ କଳାପୀକଳାପ (୧-୯) ଗ୍ରହଣ କରୁଥିଲେ । ଶ୍ରୀକୃଷ୍ଣ ମଧ୍ୟ ବିଭିନ୍ନ ଅଳଙ୍କାରରେ ନିଜକୁ ସଜ୍ଜିତ କରୁଥିଲେ । ତାଙ୍କ କପାଳରେ ଗୁଞ୍ଜରା ମୁଣ୍ଡମାଳି (୬-୨୦) କର୍ଣ୍ଣରେ ମକର କୁଣ୍ଡଳ (୨-୬,୬-୨୧, ୧୩-୭) କଣ୍ଠରେ କାଇଁଚ (୧୮-୨୫), ମୋତି (୧୪-୧୯) ଓ ମୁକ୍ତା (୧୭-୩୪) ନିର୍ମିତ ହାର ସେହି ଅର୍ଥରେ ମଳ (୧୫-୨୮), ମାଳା, (୨୨-୨୨) ଓ କଣ୍ଠ ଭୂଷଣ (୬-୩) କଉସ୍ତୁଭ ମଣି (୨-୫), ନାସାରେ ମୋତି (୬-୨୧) ବା ମୋତିବର (୨୮-୩), କରରେ କଙ୍କଣ (୨-୬) ଓ ବାହୁଟୀ (୨୮-୬), ବେଳେ ବେଳେ କାଇଁଶ ନିର୍ମିତ କଙ୍କଣ (୨୨-୨୧) କଟିରେ କିଙ୍କିଣୀ (୫-୨), କାଞ୍ଚିମାଳା (୨୮-୬) ଓ ପାଦରେ ନୂପୁର (୨-୬) ଓ ପାଦୁକା (୨୫-୧୭) ରହି ଗୋପୀମାନଙ୍କୁ ମନ୍ତ୍ରମୁଗ୍ଧ କରି ଦେଉଥିଲା । ଭାରତୀୟ ନାରୀର ଅଳଙ୍କାରପ୍ରିୟତା ସର୍ବବିଦିତ । ରସକଲ୍ଲୋଳର ନାରୀମାନେ ପୁରୁଷଙ୍କ ଅପେକ୍ଷା ଅଧିକ ସଂଖ୍ୟାରେ ଅଳଙ୍କାର ବ୍ୟବହାର କରିଛନ୍ତି । ସେମାନେ କପାଳରେ ଝିଲିମିଲି (୧୭-୧୬), ଝଲକ ମାଳୀ (୧୮-୧୩), କଳ ଧଉତ ପତ୍ର ଖଞ୍ଜିତ ଝୁମ୍ପା (୧୮-୨୨), କର୍ଣ୍ଣରେ ତାଟଙ୍କ (୪-୫), ମକର କୁଣ୍ଡଳ (୨୮-୪), ଭ୍ରମରୀ ଫୁଲ (୪-୫) ଓ କୁଣ୍ଡଳ ଦର୍ପଣ ଝଲକ (୧୮-୨୦) ନାସାରେ ମୋତି (୧୮-୨୧), ମୋତିମଣି ବା ନାସା ଆଭରଣ (୧୩-୪), କଣ୍ଠରେ ମୋତି, ଗଜମୋତି (୧୮-୨୪), ମୁକ୍ତା ଅଥବା ମଘବା ମଣିମାଳ (୩-୪୬) ମର୍କତ ନିର୍ମିତ ହାର (୨-୩), ନକ୍ଷତ୍ରମାଳା (୧୭-୨୮), କଟିରେ କାଞ୍ଚିମାଳା (୩-୨୭) ଓ କିଙ୍କିଣୀ (୧୮-୪), ହାତରେ ତାଡ଼ (୪-୯), ଚୂଡ଼ି (୪-୯), କଡିଆଳୀ (୪-୯) ଓଉଁରିଆ (୪-୧୦), କଟକ (୧୯-୬) ବାହୁରେ କଙ୍କଣ (୩୪-୪), ପାଦରେ ହଂସକ (୩-୧୬), କ୍ୱଣିତ ପାହୁଡ଼ (୪-୯), ବାଙ୍କେଣି ନୂପୁର (୧୮-୪), କେୟୁର (୩୪-୪) ବଳା (୧୮-୨୭) ଓ ଘାଘୁଡ଼ି (୧୮-୨୭) ପ୍ରଭୃତି ଅଳଙ୍କାର ପିନ୍ଧୁଥିଲେ ।

ଅଳଙ୍କାର ପରି ବସ୍ତ୍ର ମଧ୍ୟ ପୁରୁଷ ବା ନାରୀର ଶୋଭାବୃଦ୍ଧି କରିବାରେ ସାହାଯ୍ୟ କରେ । ରସକଲ୍ଲୋଳରେ ବସ୍ତ୍ର ପାଇଁ, ଅମ୍ବର (୧୫-୨୪) ବସନ

(୧୫-୨୮) ବାସ, (୧୫-୨୩) ନାଟ (୧୫-୩୦) ଦୁକୁଳ (୧୪-୧୪) ଶବ୍ଦ ବ୍ୟବହୃତ ହେଉଥିଲା । ନାରୀମାନେ ଶାଢ଼ୀ, ପାଟ, ନାଟ ଓ ବାସ ପିନ୍ଧୁଥିଲେ । ନାରୀଙ୍କ ବସ୍ତ୍ର ମଧ୍ୟରୁ କଳାମେଘୀ ଶାଢ଼ୀର (୪-୧୦) ଓ ରଙ୍ଗଶାଢ଼ୀ (୧୮-୨୩) ଉଲ୍ଲେଖ ଅଛି । ବକ୍ଷୋଜର ଆବରଣରୂପେ ରଙ୍ଗ କିତପା କାଞ୍ଚୁଲୀ (୧୮-୨୩)ର ପ୍ରଚଳନ ଥିଲା । ପିଲାମାନେ କାଛାବିଶେଷ କରି କଉଶେୟ କାଛା ପିନ୍ଧୁଥିବା ଜଣାଯାଏ । ଶୀତଦିନେ ଶରୀର ପାଇଁ କଉଶେୟ କଉପ (୧୧-୩୯) ଓ ଶିରପାଇଁ ପତଳା ପାଗ ଲାଞ୍ଛି (୨୮-୬), ମୁକୁଟ (୨-୬) ଶିରତ୍ରାଣ (୧୧-୩୯) ଓ ଉଷ୍ଣୀଷ (୨୫-୧୪)ର ଉଲ୍ଲେଖ ମିଳେ । ଉତ୍ତରୀ (୬-୨୩)ର ବ୍ୟବହାର ମଧ୍ୟ ଥିଲା । ଅଙ୍ଗର ଶୋଭା ସମ୍ପାଦନ କରିବା ପାଇଁ ବିଭିନ୍ନ ପ୍ରକାର ପ୍ରସାଧନ ସାମଗ୍ରୀ ବ୍ୟବହୃତ ହୋଇଥାଏ । ରସକଲ୍ଲୋଳର ନାରୀ ଓ ପୁରୁଷ ଉଭୟେ ପ୍ରସାଧନରେ ଆଗ୍ରହ ପ୍ରକାଶ କରିଛନ୍ତି । ତେବେ ନାରୀମାନେ କପାଳରେ ଚିତା (୧୮-୧୭), ଗନ୍ଧ ତିଳକ (୧୮-୧୬) କସ୍ତୁରୀ (୫-୮) ଓ ଗୋରୋଚନାର ତିଳକ (୨୮-୨), ନେତ୍ରରେ ଆକର୍ଣ୍ଣ ଲମ୍ବିତ କଜ୍ଜଳ (୩-୭), ଗଣ୍ଡ ଦେଶରେ କୁରଙ୍ଗ ମଦ ମକରୀ (୧୯-୩୦), ବକ୍ଷ ଦେଶରେ କର୍ପୂର ଓ ଚନ୍ଦନର ପତ୍ରାବଳୀ (୧୯-୩୦), ଶରୀରରେ କୁଙ୍କୁମ (୧୪-୨୪), ଓଷ୍ଠରେ ତାମ୍ବୁଳ ବୋଳ (୪-୬) ଓ ପାଦରେ ଅଳତା (୧୪-୨୪) ଲଗାଇ ପୁରୁଷର ମନ ହରଣ କରୁଥିଲେ । ସିନ୍ଦୂର ଲଗାଇବାର ଦୁଇପ୍ରକାର ପଦ୍ଧତି ଥିଲା । କରବାଳ ସଦୃଶ ସିନ୍ଦୂର ଚିତା ଓ ମଣ୍ଡଳାକାର ଚିତା (୪-୪) । ପ୍ରତ୍ୟେକଟିର ସୌନ୍ଦର୍ଯ୍ୟରେ ଉର୍ଦ୍ଧ୍ୱଚେତା ହତଚେତା ହୁଏ । କେବଳ ସିନ୍ଦୂର ନୁହେଁ, ପ୍ରତ୍ୟେକ ପ୍ରସାଧନ ମନ ତରଳାଇବା ପାଇଁ ଉଦ୍ଦିଷ୍ଟ । ରସକଲ୍ଲୋଳର କେଶବିନ୍ୟାସ ଶୈଳୀ ମଧ୍ୟ ବିଳାସିତାର ପରିଚୟ ଦିଏ । ବେଣୀ (୧୮-୯), କବରୀ (୩-୧୨), ଗଭା (୧୮-୧୫), ବା ଗର୍ଭକ (୩୦-୬) ଜୁଡ଼ା (୧୮-୧୪) ଓ ଖୋଷା (୪-୩) ପ୍ରସ୍ତୁତ କରି ନାରୀମାନେ କେଶକୁ ସଜ୍ଜିତ କରନ୍ତି । ବିଭିନ୍ନ ପ୍ରକାର ଫୁଲ ଏହାର ଶୋଭାକୁ ଆହୁରି ବୃଦ୍ଧି କରେ (୧୯-୨୯), କେଶକୁ ଚିକ୍‌କଣ କରିବା ପାଇଁ ଅଯେଁଲା ତେଲ ବ୍ୟବହୃତ ହେଉଥିଲା । ବିଭିନ୍ନ ପ୍ରକାରର ଜୁଡ଼ା ମଧ୍ୟରୁ ଲୋଟଣି ଜୁଡାର (୧୮-୧୪) ଉଲ୍ଲେଖ କବି କରିଛନ୍ତି । ଏହା କୃକାଟିକା ପର୍ଯ୍ୟନ୍ତ ଲମ୍ବିତ ହୋଇଥାଏ । ଗଭା ବାନ୍ଧିବାରେ ନାରୀର ଚାତୁର୍ଯ୍ୟ ପ୍ରକାଶ ପାଏ (୧୮-୧୫) ।

ରସକଲ୍ଲୋଳରେ ଖାଦ୍ୟପଦାର୍ଥର ବର୍ଣ୍ଣନା କରିବାପାଇଁ କବି ବିଶେଷ ଆଗ୍ରହ ପ୍ରକାଶ କରିନାହାନ୍ତି । ତେବେ ଖାଦ୍ୟପେୟ ସମ୍ବନ୍ଧରେ ତାଙ୍କର କେତୋଟି ଉକ୍ତି ଅତ୍ୟନ୍ତ ମୂଲ୍ୟବାନ । ଆମିଷ (୨୪-୨୪), ହବିଷ୍ୟ (୨୪-୨୪), ମଣୋହି ଓ ଶୀତଳ ମଣୋହି (୨୭-୩୬) ପ୍ରଭୃତି ଶବ୍ଦରୁ ସମାଜରେ ବିଭିନ୍ନ ପ୍ରକାର ଖାଦ୍ୟପେୟର ବ୍ୟବସ୍ଥା ଥିବା ଅନୁମିତ ହୁଏ । ପ୍ରଧାନ ଖାଦ୍ୟ ମଧ୍ୟରୁ ଦିବ୍ୟଅନ୍ନ (୫-୨୯)ର ଉଲ୍ଲେଖ ମିଳେ । ଦଧି, ଦୁଧ, ସର (୫-୧୬), ଲବଣୀ (୫-୨୩), ସାକର ମିଶ୍ରିତ ଗୋ କ୍ଷୀର (୩୪-୨୯), ଆମ୍ବିଳ ଦଧି (୩୪-୨୯) ଓ ଲଡୁ (୪-୧୨) ଖାଦ୍ୟ ବା ପାନୀୟର ଆଉ କେତୋଟି ଦୃଷ୍ଟାନ୍ତ । ଶୀତଳ ପାନୀୟଭାବେ ପୟପେଟି (୮-୨୪) ଓ ଲେମ୍ବୁ (୮-୨୪)ଆଦୃତ ହେଉଥିଲେ ହେଁ ଏଥିରେ କର୍ପୂରର ସଂଯୋଗ ଏହାକୁ ବିଷରେ ପରିଣତ କରୁଥିଲା । ଫଳ ମଧ୍ୟରୁ କୋଳି (୬-୨), କଣ୍ଟକୀ ଫଳ (୮-୨୩), ରସାଳ (୭-୨୫), ମାତୁଳଙ୍ଗ (୭-୨୪), କୁବଳ (୭-୨୨), ଶ୍ରୀଫଳ ସୋଦର (୭-୨୩), ତାଳ (୧୦-୧୩),କଦଳୀ (୨୬-୧୪) ଓ କମଳା (୨୭-୧୦)ର ଉଲ୍ଲେଖ ମିଳେ । ଇକ୍ଷୁରସ ମଧ୍ୟ ଏକ ମଧୁର ପାନୀୟ (୮-୨୩) । କଟୁ ଓ ତିକ୍ତ ସ୍ୱାଦୁଯୁକ୍ତ ଖାଦ୍ୟ ଆଦ୍ୟରେ ଅରୁଚିକର ହେଲେ ହେଁ ଶରୀର ପାଇଁ ହିତକର । ଅଥଚ ନବଗୁଡ଼ (୨୪-୨୧) ପରି ମଧୁର ଖାଦ୍ୟ ଶରୀରକୁ ଅବିଗୁଣ କରେ । ଗୁଡ଼ ପୁରୁଣା ହେଲେ ପିତା ହୋଇଯାଏ କିନ୍ତୁ ଶରୀର ପାଇଁ ଏହାର ଉପକାରିତା ଯଥେଷ୍ଟ । ଅମୃତ ସଦୃଶ ସୁମିଷ୍ଟଖାଦ୍ୟ ବହୁତ ପରିମାଣରେ ଖାଇଲେ ଏହା ସୁଖକର ହୁଏନାହିଁ । ସେହିପରି ରଙ୍କ ଉତ୍ତମ ଭୋଜନ ପାଇଲେ ଏକାବେଳେକେ ସବୁ ଖାଇ ଦେବାକୁ ଇଚ୍ଛା କରେ (୭-୨୭) । ରସକଲ୍ଲୋଳର ସାଜସଜ୍ଜାସୂଚକ ଶବ୍ଦାବଳୀରୁ ଗୃହ ଓ ନଗରର ସାଜସଜ୍ଜା ପ୍ରତି ଲୋକଙ୍କର ଆଗ୍ରହ ଥିବା ଜଣାଯାଏ । ନଗର ମଧ୍ୟରେ ସୁଧାଲେପ ପୁର (୧୭-୧୦), ଧାରାମଣ୍ଡିତ ପୁର (୧୫-୯), ଅଗୁରୁଧୂପ ପୁର (୩-୮), ବଡ଼ଭୀ ପୁର (୨୭-୧), ସଙ୍ଗୀତ ମନ୍ଦିର (୯-୧୬), ନାଟମନ୍ଦିର (୯-୨), କ୍ରୀଡ଼ାମନ୍ଦିର (୨୫-୨୨), କୃତ୍ରିମ ବନ (୨୭-୩୬), କୁସୁମ ତୋଟା (୭-୩), କୁଞ୍ଜ କାନନ (୭-୩), କ୍ରୀଡ଼ାକୁଞ୍ଜ (୨୯-୧୬), କୁଞ୍ଜ କୁଟୀର ବା କ୍ରୀଡ଼ା କୁଞ୍ଜ ମଧ୍ୟରେ ଥିବା ନିକେତନ (୨୯-୧୬), ବିନୋଦ ଠାବ (୨୯-୫୩), ଜଳକ୍ରୀଡ଼ା (୯-୮) ବା ନୌକାବିହାର ପାଇଁ ପ୍ରଶସ୍ତ ସରୋବର (୮-

୨୦) ରହି ଏହର ଶୋଭା ବୃଦ୍ଧି କରୁଥିଲେ । ଗୃହସବକୁ ସୁବାସିତ କରିବାପାଇଁ କନକପାତ୍ରମାନଙ୍କରେ ଅଗୁରୁ ଧୂପ (୨୯-୩୦)· ଓ ଆଲୋକିତ କରିବାପାଇଁ ସୁବର୍ଣ୍ଣ ଦୀପ (୨୯-୩୦) ସବୁ ଜାଳୁଥିଲେ । ଘର ସବୁ କମନୀୟ ଚନ୍ଦ୍ରାତପ, ଓ ପାଟ ଓ ପତନୀ (୨୯-୨୭) ଦ୍ୱାରା ସଜ୍ଜିତ ହେଉଥିଲା । କଳାକନାରେ ତିଆରି ହୋଇଥିବା ଚନ୍ଦ୍ରାତପର ମଧ୍ୟଭାଗରେ ଚନ୍ଦ୍ରପରି ରଜତ ଓ ନକ୍ଷତ୍ର ପରି ଚାନ୍ଦିଦର୍ପଣ ଓ ଫୁଲ ଚାମର (୨୯-୨୭) ସବୁ ରହି ଏହାର ଶୋଭା ପାଉଥିଲେ । ଅତିଥିର ଆଗମନ ପଥରେ ରଙ୍ଗ ପାଟର ପାଏଡ଼ା ପକାଇ ଓ କର୍ପୂର ଚନ୍ଦନର ଛରା (୨୯-୨୯) ଦେଇ ଲୋକେ ଅତିଥିର ସ୍ୱାଗତ କରୁଥିଲେ । ପୁରମାନଙ୍କର ଥିବା ଜଳାବିବର (୨୭-୧୧), ମେଳା ଗବାକ୍ଷ (୨୭-୧୨) ଓ ଜଳାକବାଟି (୨୭-୧୩), ଓ ମନ୍ଦିର ଭେଦ (୧୧-୩୨) ଏହାର ଗଠନ ପରିପାଟୀ ସମ୍ବନ୍ଧର ସଂକେତ ଦିଏ । ଶଯ୍ୟା-ବିନ୍ୟାସରୁ ମଧ ସମାଜର ଉନ୍ନତ ତଥା ଅଭିଜାତ ବର୍ଗର ଚିତ୍ର ମିଳେ । କରୀଦନ୍ତ ପଲ୍ୟଙ୍କ, ହଂସୁଲୀ ତୁଳି, ମୃଦୁଳି, ଶେଯ ଉପରେ କୁସୁମ ପାଖୁଡ଼ାର ଝୋଲା, ରତ୍ନବଟାରେ କର୍ପୂର ଓ ତାମ୍ବୁଳ ଓ ଚତୁଃସମର ବ୍ୟବସ୍ଥା (୨୯-୨୯, ୩୩) ଏହାର ପରିଚାୟକ ।

ସମାଜରେ ବସବାସ କରୁଥିବା ବହୁ ଜାତିର ଉଲ୍ଲେଖ ରସକଲ୍ଲୋଳରୁ ମିଳେ । ସମାଜରେ ଦୁଇଟି ବର୍ଗ । ସାମନ୍ତ ବା ନରପତିମାନେ ଅଭିଜାତ - ଶ୍ରେଣୀୟ । ଧନ ଓ କ୍ଷମତା ଯୋଗୁଁ ସେମାନେ ସମାଜରେ ପୂଜା ପାଆନ୍ତି । ସେମାନଙ୍କର ସେବା ପାଇଁ ଲୋକେ ବିଭିନ୍ନ ପନ୍ଥା ଅବଲମ୍ବନ କରନ୍ତି ଓ ସେଇଥିରୁ ଗୋଟିଏ ଗୋଟିଏ ଜାତିର ସୃଷ୍ଟି । ରସକଲ୍ଲୋଳରେ ଥିବା ଶିଳ୍ପୀ (୭-୩), କାଚରା (୭-୬), ଶଙ୍ଖାରି (୭-୬), କଇବର୍ତ୍ତ (୭-୬) ଘଟୁଆଳ (କର୍ଣ୍ଣଧାର) (୭-୬), ମାଳାକାର, ଶଙ୍ଖୁଆ, (୧୨-୪) ବ୍ରାହ୍ମଣ (୧୪-୧୮), ଚିତ୍ରକାରକ (୧୬-୨୯), ବ୍ୟାଧ (୨୧-୨୪), କୁମ୍ଭକାର (୩୨-୨୭), କଥା ପ୍ରସଙ୍ଗ ବା କେଳା (ଛାୟାଜୀବ) (୩-୨୫), ରଜକ (୨୭-୨୦), ଗଉଡ଼ (୨୭-୨୦), ଇନ୍ଦ୍ରଜାଲିକ (୨୭-୪) ଓ ଗନ୍ତାଇତ (୨୭-୨୭) ପ୍ରଭୃତି ଜାତି ସମସ୍ତେ ସେବକ ଶ୍ରେଣୀୟ । ଅଭିଜାତ ବର୍ଗକୁ ସୁଖ ଦେବା ଏମାନଙ୍କର କାର୍ଯ୍ୟ । ସେଥିପାଇଁ ପ୍ରତ୍ୟେକ ଜାତି ନିଜର କୁଳ ବେଉଷାରେ ଜୀବିକା ନିର୍ବାହ କରିବା ପାଇଁ କବି ପରାମର୍ଶ ଦେଇଛନ୍ତି । ରସକଲ୍ଲୋଳରେ ଉଲ୍ଲିଖିତ ବିଭିନ୍ନ ଜାତି ମଧ୍ୟରୁ କେବଳ କେତୋଟି ଜାତି ସଂପର୍କରେ କବିଙ୍କର ଉକ୍ତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

କୃଷକମାନଙ୍କ ସମ୍ବନ୍ଧରେ କବି କୁହନ୍ତି ଯେସେମାନେ ବର୍ଷାକାଳର ଆରମ୍ଭରେ ଅର୍ଥାତ୍ ଆଷାଢ଼ ମାସରେ ଆନନ୍ଦ ମନରେ ଚାଷ କରନ୍ତି । ସେମାନଙ୍କ ଗୀତରେ ବିଲପାଟ ମୁଖରିତ ହୁଏ (୧୬-୧୬) । କୃଷିର ସୁରକ୍ଷା ପାଇଁ ସେମାନେ ଭିତ୍ତି ନିର୍ମାଣ କରନ୍ତି (୨୬-୫), କୃଷିକର୍ମର ଉପକରଣ ଭାବେ ଲଙ୍ଗଳ ଓ ଫାଳ ବ୍ୟବହୃତ ହୁଏ (୨୩-୧୬), କୃଷକମାନଙ୍କର ପରିଶ୍ରମ ତୁଳନାରେ ଲାଭ ହୁଏନାହିଁ (୧୭-୨୭) । ମାଳାକାରମାନେ କୁସୁମମାଳା ବିକ୍ରୟକରି ଜୀବିକା ନିର୍ବାହ କରୁଥିଲେ ହେଁ ଅନେକ ସମୟରେ ଫୁଲମାଳା ମୂଲାଇ ନେବାପାଇଁ ଲୋକ ମିଳନ୍ତି ନାହିଁ (୧୬-୨୭), ଶିବ ପୂଜା ସେମାନଙ୍କର ଆଉ ଗୋଟିଏ ଜୀବିକା (୭-୩୬) । ଦେଶରେ କଷ୍ଟକାଳ ଉପସ୍ଥିତ ହେଲେ ସେଥିରୁ ଉଦ୍ଧାର ପାଇବା ପାଇଁ ଲୋକେ ବୋଇତରେ ଅମ୍ବର ଅଞ୍ଚାଳି ଉଡ଼ାଇ ବାଣିଜ୍ୟ ପାଇଁ ସମୁଦ୍ର ପଥରେ ଯାତ୍ରା କରନ୍ତି । ଏପରି ବଣିକମାନଙ୍କର କୂଳ, ଶୀଳ ବେଭାରର ବିଚାର ନ ଥାଏ । ବାଣିଜ୍ୟରେ ସୁଖ ମିଳେ । ତେବେ ବତାସ ବା ଝଡ଼ ହେଲେ ସେମାନଙ୍କୁ ଦୁଃଖ ବି ଭୋଗ କରିବାକୁ ପଡ଼େ (୨୬-୧୨) । କଥାପ୍ରସଙ୍ଗର ଶ୍ରୀରଙ୍ଗ (୨୧-୧୭), କରରେ ଶାସ୍ତ୍ର (୨୧-୨୨) ଓ ସାପ ଖେଳାଇବା ଦୃଶ୍ୟରୁ (୩-୬୨, ୧୬-୭) ସେ ଜାତିର ପେଷା ସମ୍ବନ୍ଧରେ ସବିଶେଷ ଧାରଣା କରିହୁଏ । କଥାପ୍ରସଙ୍ଗର ହାତରେ ଶାସ୍ତ୍ର ଦେଲେ ଯଶ ମିଳେ ନାହିଁ । ଏଠି ଶାସ୍ତ୍ର ବୋଧହୁଏ ମନ୍ତ୍ରଶାସ୍ତ୍ରକୁ ବୁଝାଉଛି । ମନ୍ତ୍ର ପ୍ରୟୋଗ କରି ଲୋକଙ୍କୁ ବଶ କରିବାରେ କେଳା ଅତି ପ୍ରସିଦ୍ଧ । ସେ ଖେଳ ଦେଖାଇବା ବେଳେ ସର୍ପ ଦଂଶିତ ହୋଇ ଶୋଚନୀୟ ଅବସ୍ଥା ଲାଭକରେ । ସେତେବେଳେ ସେ ଗଦ ଗଦ ପାଟିକରେ, ପଦ (ମନ୍ତ୍ର) ଜାଟୁକରେ ନାହିଁ । ଦେହ ଥରେ । ଝାଳ ବୋହିଯାଏ । ପାଟିରୁ କଥା ବାହାରେ ନାହିଁ । ରୋମ ଟାଙ୍କୁରି ଉଠେ । ବଡ଼ ପାଟିରେ ଭଗବାନଙ୍କ ନାମ ଡାକି ସେ ମାଟିରେ ଗଡ଼େ । ଦେହ ଅଧିକ ପୋଡ଼ିବାରୁ ଶବ ପରି ତଳେ ନିଶ୍ଚଳ ହୋଇ ପଡ଼ିରହେ । ବିଭିନ୍ନ ଜାତି ମଧ୍ୟରୁ ବ୍ରାହ୍ମଣମାନେ ପୁଣ୍ୟ ଲୋକଙ୍କ ପରି ସମାଜରେ ସମ୍ମାନିତ (୨୧-୧୫) ହୁଅନ୍ତି । ପ୍ରତ୍ୟୁଷରୁ ସ୍ନାନ କରି ବିଷ୍ଣୁପଦ ଧ୍ୟାନ କରିବା ସେମାନଙ୍କର ବିହିତ ଆଚରଣ (୧୯-୧୦) । ସେମାନଙ୍କୁ ଦାନ ଦେଲେ ଧର୍ମ ମିଳେ (୧୬-୮) । ସମାଜରେ ସାଧାରଣତଃ ସେମାନେ ଆଦୃତ ହେଉଥିଲେ ହେଁ କେତେକ ବ୍ରାହ୍ମଣଙ୍କର ଗର୍ହିତ କର୍ମ କବିଙ୍କୁ ବ୍ୟଥିତ କରିଛି । ସେମାନଙ୍କୁ ଲକ୍ଷ୍ୟ କରି କବି କହିଛନ୍ତି,

କଳଙ୍କୀ ହେଲେ ବେଭାର । କେବେହେଁ ନୋହଇ ସାର ।
କେଡ଼େ ଲୋକର କୁମର । କି ଅବେଭାର । ସଜନି । ୨୨-୩୨
କରେ ପଦ୍ମିନୀ ଦହିଜ । କରେ ବାରୁଣୀ ଗ୍ରାହିଜ ।
କୁହାନ୍ତି ଏ ଦ୍ୱିଜରାଜ । ନ ପାଇ ଲାଜ । ସଜନି । ୨୨-୩୩

ବେପାର ବାଣିଜ୍ୟ ମଧ୍ୟରୁ ନିକିତିରେ ତୁଳିବା; କାଇଞ୍ଚ ସାଙ୍ଗରେ ସୁନାକୁ ଓଜନ କରିବା, ମୂଲ କରିବା, 'କଳ ଧଉତ ବହୁତ ଲାଜ ପାଇ ଅନଳେ ଅଙ୍ଗକୁ ଦହିଲା' (୧୨-୧୭) ପ୍ରଭୃତି ଶବ୍ଦାବଳୀ ସୁନା କାରବାର (୩-୫୩, ୫୪) ସଂପର୍କରେ ସୂଚନା ଦିଏ । ପଦାର୍ଥ ଦୁର୍ମିଳ ହେଲେ ଲୋକେ ଆଗତୁରା କଉଡ଼ି ଦେଇ ଜିନିଷ ବରାଦ ଦେଉଥିଲେ (୩୪-୧୫) । 'କଡ଼ାକରେ ଲେଖା ନୋହେ' (୩୩-୨୭) ଉକ୍ତିରୁ ସେ କାଳରେ କଡ଼ାଗଣ୍ଡା ହିସାବ ଚଳୁଥିବା ଓ 'କଉଡ଼ି' (୩୪-୧୪) ବା 'କପର୍ଦ୍ଦି'ର ପ୍ରୟୋଗରୁ ମୂଲ୍ୟ ମାଧ୍ୟମ ରୂପେ କଉଡ଼ିର ପ୍ରଚଳନ ଥିବା ଜଣାଯାଏ । କିଣିବା, ବିକିବା ପ୍ରଭୃତି ଶବ୍ଦରୁ ସମାଜରୁ କିଣାବିକାର ଦୃଶ୍ୟ ଉପସ୍ଥିତ ହୁଏ । 'ତୁଳେ ତୁଳିବାରେ ତୁଳ ପ୍ରଶୟେ ହେଲେ ଉଶ୍ୱାସୟ', (୧୨-୧୩) ପ୍ରୟୋଗରୁ ଓଜନ କରିବା ପ୍ରଥା ଜଣାଯାଏ । ଜୀବିକା ଭେଦରେ ଆବଶ୍ୟକୀୟ ପଦାର୍ଥର ବିଭିନ୍ନତା ପରିଦୃଷ୍ଟ ହୁଏ । ଗଉଡ଼ମାନେ କଠାଉ, ଦଉଡ଼ି, ଶିକା, ଭାର, ବାଡ଼ି (୬-୧୧), ଛନ୍ଦଣି (୨୫-୧୬), ଦୁହଣୀ (୨୫-୧୬) ଓ ପଶୁ ରଜ୍ଜୁ (୬-୧୦), ବେଣୁ, ଶିଙ୍ଘା, ବଂଶୀ (୨୭-୩୫, ୪୦) ପ୍ରଭୃତିର ବ୍ୟବହାର କରିଥାନ୍ତି । ସେହିପରି କୃଷକର ଲଙ୍ଗଳ ଓ ଫାଳ, କୁମ୍ଭକାରକର ଉହା, ଚିତ୍ରକାରକର ଚିତ୍ରପଟ (୧୬-୨୯), କୁରାଳର ଚକ୍ର (୨-୧୫), ବେଶକାରୀର ଗନ୍ଧପେଡ଼ି (୨୭-୨୮), ଶଙ୍ଖାରିର ଶଙ୍ଖାକଟା କରତ (୨୧-୨୪), ଘଟୁଆଳର ନାବ (୭-୭), ମତ୍ସ୍ୟଜୀବୀର ବଟିଶ (୧୦-୩୦), ବାମଡ଼ଶୀ (୧୫-୧୪), ଧନୁକାରର କାଣ୍ଡ ଓ କୋଦଣ୍ଡ (୧୦-୬) ଅତ୍ୟନ୍ତ ଉପଯୋଗୀ ବସ୍ତୁ । ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ମଧ୍ୟରୁ କୁମ୍ଭ, ସେହି ଅର୍ଥରେ ଘଟ (୮-୧୨) ଓ କଳଶ (୩୧-୧୧), ଥାଳୀ (୪-୧୨), ପ୍ରତିଚକ୍ଷୁ (୮-୧୨), ଫରୁଆ (୭-୨୫), ସେହି ଅର୍ଥରେ ସଂପୁଟକ (୧୦-୧୩), ପଲ୍ୟଙ୍କ (୧୧-୨୬), କଙ୍କତିକା (୪-୪୪), ସେହି ଅର୍ଥରେ କେଶରଞ୍ଜନୀ (୩-୬), ଚଉକି (୨୪-୧୬), ଶେଯ (୧୪-୪), ଦର୍ପଣ (୬-୩୦), ତଇଳ (୫-୨୯) ଓ କୁଠାର (୬-୧୧) ପ୍ରଭୃତି ବିଶେଷଭାବେ ଉଲ୍ଲେଖଯୋଗ୍ୟ ।

ଏ ସବୁ ପଦାର୍ଥର ସଂଖ୍ୟା ଋତୁର ଆବଶ୍ୟକତା ଅନୁଯାୟୀ ବୃଦ୍ଧି ପାଏ । ବିଳାସୀ ଲୋକମାନେ ଗ୍ରୀଷ୍ମକାଳରେ ନଉକା (୧୫-୧୦), ଚନ୍ଦନ (୧୫-୯) ଓ ତାଳବୃନ୍ତ (୧୫-୧୦)ର ପୁଣି ଶୀତଦିନେ ତୂଳୀ (୧୧-୩୧) ସୁପାତି, (୧୧-୩୧) ନିଶାର (୧୧-୩୦), କଂଉପ (୧୧-୩୯), ଶିରତ୍ରାଣ (୧୧-୩୯), ହସନ୍ତି (୧୧-୩୪) ପ୍ରଭୃତିର ବ୍ୟବହାର କରିଥାନ୍ତି ।

ରସକଲ୍ଲୋଳରେ ବ୍ୟବହୃତ ଶବ୍ଦାବଳୀରୁ ସେ ଯୁଗରେ ଚିତ୍ରକଳା ଓ କାରୁକଳା ସମ୍ବନ୍ଧରେ କେତୋଟି ଜ୍ଞାତବ୍ୟ ତଥ୍ୟ ମିଳେ । କୁନ୍ଦନପତ୍ରେ ମରକତ ଜଡ଼ିଲା (୧୮-୧୬), ଗଜପଟେ କୁନ୍ଦନ ରେଖା (୨୦-୨), ଅମ୍ବ ଉପରେ ରତନ ଉଭା (୨୦-୨୨), କନ୍ୟାଖମ୍ବ (୨୬-୨୫) ପ୍ରଭୃତି ଯେପରି ସୁନା, ରୂପ ଓ ରତ୍ନର କାରୁକାର୍ଯ୍ୟ ବିଷୟରେ ସୂଚନା ଦିଏ, ରୂପ ପଟ (୨୬-୨୬), ଚିତ୍ରନାରୀ (୩-୩୧), ଚିତ୍ରକାରକ ପଟ (୧୬-୨୯), କାନ୍ଥମାନଙ୍କରେ ନାନା ଚିତ୍ରପ୍ରତିମା, କଥା ନ କହି ହସନ୍ତି ଯେମନ୍ତ ବାମା (୨୯-୨୮), ଅପଲକନେତ୍ରୀ ଚିତ୍ରନାରୀ (୧୮-୨୦) ପ୍ରଭୃତିରୁ ସେହିପରି ଚିତ୍ରକଳା ପ୍ରତି ଲୋକଙ୍କର ଆଗ୍ରହ ଥିବା ଜଣାଯାଏ । ଆମୋଦ ପ୍ରମୋଦ ପାଇଁ ବିଭିନ୍ନ ପ୍ରକାରର ଆୟୋଜନରୁ ରସକଲ୍ଲୋଳରେ କନ୍ଦୁ (୭-୨୩), ସାରଣି (୧୦-୩୦), ଗୁଞ୍ଜାରୀ (୨୮-୧୯), ଗୀତ ବା ସଙ୍ଗୀତ (ବିଶେଷ କରି ଖେମଟା ବନ୍ଧେ ଗୀତ, (୨୭-୩୫), ପଦ୍ମତୋଳା ଗୀତ (୭-୩୨), ଗଉଡ଼ ଗୀତ (୭-୭), ଛାୟା (୧୮-୨୮), ଚିତ୍ରପଦ (୧୮-୨୯); ପ୍ରବନ୍ଧ ଗାନ (୧୮-୨୮), ନାଗଧ୍ୱନୀ ସ୍ୱର (୭-୧୨), କୁଟୁଣୀ ପ୍ରତିମା (୧୫-୨୯), ଜାତ (୨୩-୭) (ଗୁଣ୍ଡିଚା କାଚ), (୨୫-୨୬), ଉତ୍ସବ (୨-୧୭), ଜଳକ୍ରୀଡ଼ା (୮-୨୧), ସେହି ଅର୍ଥରେ ଜଳକେଳି (୯-୮), ଜଳବିହାର (୧୫-୨୦) ଧାରାମଣ୍ଡିତ ପୁର (୧୫-୯), ପୁଷ୍ପଚୟନ (୧୫-୨୧), ନଉକା ବିହାର (୧୫-୧୦), ନାଟମନ୍ଦିର (୯-୨), ସଂଗୀତ ମନ୍ଦିର (୯-୧୬) କୃତ୍ରିମ ବନ (୨୭-୩୬), କୁସୁମ ତୋଟା (୭-୩), କ୍ରୀଡ଼ାମନ୍ଦିର (୨୫-୨୨), କ୍ରୀଡ଼ାକୁଟି (୨୯-୧୬), ବନଭୋଜନ (୬-୧୮), ଇନ୍ଦ୍ରଜାଲିକ (୨୭-୪), ନଟ (୯-୨), ନର୍ତ୍ତକୀ (୧୫-୨), ଅନ୍ତପଟ ଅନ୍ତ ନୃତ୍ୟକାରୀ (୮-୧୧), ଅଭିନୟ (୧୭-୩୩), ବିଭିନ୍ନ ପ୍ରକାର ବାଦ୍ୟ-ମର୍ଦ୍ଦଳ (୯-୧୬), ବେଣୁ (୧୩-୮), ଶୃଙ୍ଗ (୧୩-୮), ପଟର କାହାଳୀ (୧୩-୮), ବୀଣା (୧୫-୧୦), ଉପାଙ୍ଗ (୧୭-୨୯), ବଂଶୀ

(୧୭-୨୯), ମୁରଲୀ (୧୭-୨୭), ଡମ୍ବରୁ (୨୪-୭), ଶଙ୍ଖ (୨୪-୧୪), ଶୀତଳ ପବନ ଉପଭୋଗ (୧୫-୧୬), ତପତଜଳ ସ୍ନାନ (୧୧-୩୨), ଚନ୍ଦନ ପିଚିକାର ବ୍ୟବହାର (୧୫-୧୦), ସନ୍ଧ୍ୟାସ୍ନାନ (୧୫-୧୫), ବିଭିନ୍ନ ପ୍ରକାର ସୁବାସିତ ଦ୍ରବ୍ୟ-କର୍ପୂର (୭-୨୧), କସ୍ତୁରୀ (୭-୧୧), ଅଗୁରୁ (୧୧-୩୫),ଚନ୍ଦନ (୭-୧), ଧୂପ (୧୧-୩୫), ଚତୁସମ (୨୯-୩୩), ଗୋରୋଚନା (୨୮-୨) ପ୍ରଭୃତିର ଉଲ୍ଲେଖ ମିଳେ । ଗୋପାଳ ବାଳକମାନଙ୍କ ଖେଳକଉତୁକ ବର୍ଣ୍ଣନା ପ୍ରସଙ୍ଗରେ କବି କେକୀନୃତ୍ୟ, ବକ ଧ୍ୟାନ ଓ ଭୃଙ୍ଗଝଙ୍କାରର ଅନୁକରଣ, ମର୍କଟ ଶିଶୁର ଅନୁଧାବନ, ବାହୁସ୍ଫୋଟମାରି ପ୍ରତିଜ୍ଞା (୬-୧୫), ଦୋଳି (୧୫-୨୩) ପ୍ରଭୃତି ଖେଳର ବର୍ଣ୍ଣନା କରିଛନ୍ତି । ଜଳକ୍ରୀଡ଼ା କରି ଲୋକେ ଅଶେଷ ଆନନ୍ଦ ଉପଭୋଗ କରୁଥିଲେ । ରସକଲ୍ଲୋଳରେ ଗୋପୀମାନଙ୍କ ଜଳକ୍ରୀଡ଼ା ଦୃଶ୍ୟ ଅତ୍ୟନ୍ତ ଉପଭୋଗ୍ୟ ।

> କନକଲତା ନୀଳମଣି ସ୍ଥଳରେ ପବନେ ଢଳିଲା ପରାୟେ
> କେ କାହାକୁ ପାଣି ପାଣିରେ ପୂରୋଇ ଆନନକୁ ମାରି ପକାୟେ ।
> କେ ଜଳ କରଟ ପରାୟେ ବୁଡ଼ଇ ।
> କାହିଁ ଯିବୁ ବୋଲି କରି କେ ପାଣିରେ ପାଣି ଘେନିକରି ଲୋଡ଼ଇ ।
> ୧୫-୨୦|

କୀର, ବସନ୍ତ ପକ୍ଷୀ (୨୦-୩), କୋକିଳ ଓ ଖଞ୍ଜନ (୨୭-୧୩) ପ୍ରଭୃତି ପକ୍ଷୀକୁ ପଞ୍ଜରୀରେ ପାଳନ କରି ଲୋକେ ଅଶେଷ ଆନନ୍ଦ ଉପଭୋଗ କରୁଥିଲେ । କରଗତ କୀର କହିବା ମଧୁର (୩୩-୨୬), ପଢ଼ାଶାରୀ (୧୦-୧୧), କୀର ଶାରୀକାପଢ଼ିଲେ ଏକା ଶ୍ରୀ ରାଧା କୃଷ୍ଣ ନାମ (୧୪-୨୦) ପ୍ରଭୃତି ଉକ୍ତିରୁ ଶୁଆ ବା ଶାରୀଙ୍କୁ କଥା କହି ଶିଖାଇବା ଓ ସେମାନଙ୍କ କଥା ଶୁଣିବା ସମାଜରେ ବିଶେଷ ଭାବେ ପ୍ରଚଳିତ ଥିବା ଜଣାଯାଏ । ରସକଲ୍ଲୋଳରେ ବ୍ୟସନ-ସୂଚକ କ୍ରିୟାକଳାପ ମଧ୍ୟରୁ କବି ଜୁଡ, ମଦ୍ୟପାନ (ବାରୁଣୀ ଗ୍ରାହିତା (୨୨-୩୩), ରମଣୀ ହରଣ । ପଦ୍ମିନୀ ଦହିଜ (୨୨-୩୩) ଓ ବେଶ୍ୟା ପୁର ଗମନ (୧୪-୨୩) ଉଲ୍ଲେଖ କରିଛନ୍ତି । ଜୁଡକ୍ରୀଡ଼ାରେ ମନ ଚଞ୍ଚଳ ହୁଏ (୨୨-୧୩) । ମଦ୍ୟପାନ ଓ ରମଣୀ ହରଣ ସମାଜରେ ଲଜ୍ଜାର କାରଣ ସ୍ୱରୂପ (୨୨-୩୩) । ବେଶ୍ୟାପୁର ଗମନକୁ କବି ଦୂଷଣ କଥା (୧୪-୨୮) କହିଛନ୍ତି । କବିଙ୍କର ମନ୍ତବ୍ୟ ସବୁରୁ ସମାଜରେ ଏ ସବୁ କର୍ମ ଅନାଦୃତ

ହେଉଥିବା ଜଣାଯାଏ, ବାରନାରୀ ପୁରରୁ ଫେରୁଥିବା ଶଠ ପୁରୁଷର ଦୁର୍ଦ୍ଦଶା ବର୍ଣ୍ଣନା କରି କବି ଲେଖିଛନ୍ତି,

କେ ବାରନାରୀ ପୁରୁଁ ପ୍ରସରି ଚଉକତିକି ଚାହିଁ;

କରଇ ଗତି କମ୍ପଇ ଛାତି ରାତି ଯିବାରୁ ପାହି । (୧୪-୨୩) ଆମୋଦ ପ୍ରମୋଦ, ବିଳାସ-ବ୍ୟସନ ବର୍ଣ୍ଣନା କରିବା ପାଇଁ କବିଙ୍କର ଆଗ୍ରହ, ବ୍ୟାଧି ବା ରୋଗ ବର୍ଣ୍ଣନା କଲାବେଳେ ଦେଖିବାକୁ ମିଳେ ନାହିଁ । ବ୍ୟାଧି କହିଲେ କବି କାମ ବ୍ୟାଧି ବା ବିରହ ବାଧା କଥା କୁହନ୍ତି । (୩୧-୪) । ରୋଗ ମଧ୍ୟରୁ ସେ କେବଳ ଜ୍ବର ରୋଗର ଉଲ୍ଲେଖ କରିଛନ୍ତି । ଜ୍ବର ଥିବାବେଳେ ରୋଗୀକୁ ଜଳ ଶୀତଳ ଲାଗେ ଓ ନିର୍ଜ୍ଜର ସମୟରେ ସେ ଜଳବିହୀନରେ ବିକଳ ହୁଏ (୧୬-୩) । ଜ୍ବର ରୋଗରେ ଶରୀର କୃଶ ଓ ପାଣ୍ଡୁର ହୁଏ (୧୪-୭) । ସମାଜରେ ପ୍ରଚଳିତ ଅସଂଖ୍ୟ ଜନବିଶ୍ୱାସ ମଧ୍ୟରୁ କବି ଦୀନକୃଷ୍ଣ ମନ୍ତ୍ର ଶକ୍ତି ଓ ଭୂତପ୍ରେତ ଉପରେ ବିଶେଷ ବିଶ୍ୱାସ କରୁଥିବା ଜଣାଯାଏ । ମନ୍ତ୍ରବଳରେ ଅଦୃଶ୍ୟ ହେବା (୨୧-୨୬), ମୋହିତ କରିବା (୨୨-୬), ହୃଦୟକୁ ଦଗ୍ଧ ଦେବା (୨୬-୧), ଦୁଃଖ ଦୂର କରିବା (୩୧-୨୪), ଏକ ସ୍ଥାନରୁ ଅନ୍ୟସ୍ଥାନକୁ ଚଳାଇ ନେବା (୨୦-୨୫) ପ୍ରଭୃତି କାର୍ଯ୍ୟ ସମ୍ଭବ ହୋଇଥାଏ । ମନ୍ତ୍ର ଦ୍ୱାରା ଭୂତ ବି ଲଗାଇ ଦିଆଯାଏ (୮-୩) । ଭୂତ ଲାଗିଲେ ଚିତ୍ତ ଅଥୟ ହୁଏ ଓ ବିଭିନ୍ନ ପ୍ରକାର ଉତପାତ କରେ (୩୩-୮) । ବିନାୟକ ଚତୁର୍ଥୀ ଚନ୍ଦ୍ରମା (୮-୧୦) ଓ ଅକାଳ ଫଳ ଦର୍ଶନରେ ଦୁଃଖ ଓ ଅପବାଦ ଲାଭ ହୁଏ । ରାଣ ପକାଇ (୧୩-୧୩) ଓ ଶମ୍ଭୁଶିରେ ହାତ ଦେଇ (୧୩-୧୩) ଲୋକେ ଶପଥ କରୁଥିଲେ । ଅକାଳ ଚଡ଼କ (୨୯-୬), ବିନାୟକ ଚତୁର୍ଥୀ ଚନ୍ଦ୍ରମା (୮-୧୦) ଦୁଃଖର କାରଣ ରୂପେ ଓ ଦକ୍ଷିଣ ନେତ୍ର ଓ ଗାତ୍ରର କମ୍ପନ ମଙ୍ଗଳସୂଚକ ସଂକେତ (୨୫-୧୦) ରୂପେ ଗୃହୀତ ହେଉଥିଲା ।

କାବ୍ୟରେ ପ୍ରଯୁକ୍ତ ହୋଇଥିବା ପ୍ରସିଦ୍ଧିସୂଚକ ଶବ୍ଦାବଳୀକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ- (୧) କବି ପ୍ରସିଦ୍ଧି, (୨) ଶାସ୍ତ୍ର ପ୍ରସିଦ୍ଧି । କବି ପ୍ରସିଦ୍ଧି ମଧ୍ୟରୁ ଚାତକର ବର୍ଷାଜଳ ପାନ (୭-୯, ୧୪-୪, ୧୬-୯, ୨୦-୨୧, ୩୧-୨୪, ୩୨-୧୫), ଚକୋର ଓ ଚକୋରୀର (୧୭-୨୧) ଅମୃତ ପାନ (୧୩-୨୪), ଚକ୍ରବାକ (କୋକ), ମିଥୁନର ବିରହ (୧୪-୧୭, ୨୨-୨୮, ୩୩-୨୫), ମେଘ ଦର୍ଶନରେ ମହାମତ୍ତ ମୟୂରୀର ନୃତ୍ୟ (୭-୯, ୧୭-

୨୨), ଅମୃତର ମଧୁର ସ୍ୱାଦ (୧୨-୩୫), ପରଶ ପଥରର ସ୍ପର୍ଶରେ ଲୁହାସୁନା ହେବା (୩୩-୧୪), କାଦମ୍ବିନୀ କାଳ କୋକିଳ (୩୪-୮), ଶରତ କାଳରେକାଦମ୍ବ ଫୁଲ ନୋହି ଦେଖା ଦେଖି (୧୭-୯), କଦମ୍ବ ଓ କୁରୁବକ ଦୋହଦ (୮-୨୦) ପ୍ରଭୃତି ଉଲ୍ଲେଖଯୋଗ୍ୟ । ଶାସ୍ତ୍ର ପ୍ରସିଦ୍ଧି ମଧ୍ୟରୁ ସମୁଦ୍ରରୁ ଚନ୍ଦ୍ରଙ୍କ ଜାତ (୨୨-୪୦), ଅମୃତରେ ଗଢ଼ା ଚନ୍ଦ୍ରଙ୍କ ଶରୀର (୨-୨୦), ଗରୁଡ଼ର ସର୍ପଭକ୍ଷଣ (୨୮-୧୮), ପାରିଜାତକ କୁସୁମ (୩-୬୯), ବୃହସ୍ପତିଙ୍କ କହିବାର ଆଡ଼ମ୍ବର (୩୧-୧୧), ଭଗୀରଥଙ୍କର ଗଙ୍ଗା ଆନୟନ (୩୨-୨୯), ଅଗସ୍ତିଙ୍କର ସମୁଦ୍ର ପାନ (୨୨-୪୨), କଳ୍ପଲତା (୩୧-୭), କାମଧେନୁ, କ୍ଷୀରସାଗର ମନ୍ଥନ (୩୪-୨୪), ସୂର୍ଯ୍ୟଙ୍କର ମେରୁ ପରିକ୍ରମା (୨୧-୨୬), କାମଦ୍ୱାରା ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ ଓ ବ୍ରହ୍ମାଙ୍କର ଅପମାନ (୨୧-୨୯), ଅଳକାପୁର (୨୯-୨୬), ସ୍ୱର୍ଗପୁର (୩୧-୧୩), କାମ (୨-୪), କୁବେର, ଅପସରୀ (୪-୧୪), ରମ୍ଭା (୧୨-୧୩) ଓ ସ୍ୱର୍ଗବାସୀ (୧୨-୧୮)ଙ୍କ ଶୋଭା (୩-୫୫), ଶିବଙ୍କ କୃତ କାମଦେବର ଦହନ (୨୧-୨୭) ପ୍ରଭୃତିର ଗଣନା କରାଯାଇ ପାରେ ।

ରାଜା, ନରପତି ବା ଦଣ୍ଡଧରଙ୍କ ସହ ସଂପୃକ୍ତ ଶବ୍ଦାବଳୀରୁ ସମସାମୟିକ ରାଜଦରବାରର ଏକ ସ୍ପଷ୍ଟ ଚିତ୍ର ମିଳେ । ରାଜ୍ୟରେ ରାଜାର ଉପସ୍ଥିତି ଲୋକମାନଙ୍କୁ ଆନନ୍ଦ ଦାନ କରେ । ଦରିଦ୍ର ଲୋକଙ୍କର ଦୁଃଖ ଦୂରହୁଏ । ଦୁଷ୍ଟ, ବିଟପୀ ଓ ଚୋରମାନେ ଅସୁବିଧାର ସମ୍ମୁଖୀନ ହୁଅନ୍ତି (୧୩-୨୧) । ରଜାମାନେ ସାଧାରଣତଃ ଭାଗ୍ୟବନ୍ତ (୧୩-୨) । କର୍କଶ ଓ ତେଜସ୍ୱୀ ମହାରାଜା ସମସ୍ତଙ୍କର ପ୍ରିୟ । ଏହାଙ୍କ ତଳେ ପରଜା ହେଲେ କର ଦେଇ ନିରନ୍ତର ସେବା କରିବାର ସୌଭାଗ୍ୟ ପ୍ରାପ୍ତ ହୁଏ । ରାଜାଶ୍ରୟ ମିଳିଲେ ମନୁଷ୍ୟର ସବୁ ଦୁଃଖ ଚାଲିଯାଏ (୭-୨୮) । ଦେଶରେ ରାଜା ନଥିଲେ ଦେଶ ଅପାଣ୍ଡବ ହୁଏ । ମେଳିଆ ମାନେ ପ୍ରତାପୀ ହୋଇ ନଗର ଏପରିକି ରାଜନବରରେ ଡକାୟତି କରି ଧନ ଅର୍ଜନ କରନ୍ତି । ଏହିପରି ମେଳିଆମାନଙ୍କୁ ସାବଧାନ କରି କବି ଦୀନକୃଷ୍ଣ କହିଛନ୍ତି ।

କଣ୍ଠୀରବପୁରେ ଏବେ କୁରଙ୍ଗନାଟ
କାହାବଳ ପାଇ ଏଡ଼େ କରିଛ ଆଣ୍ଟ ।
କହୁଛି ଏବେହେଁ ବେଳାବେଳି ଲେଉଟ
କାଳଦେବତା ସଙ୍ଗରେ ହେବଟି ଭେଟ (୨୭-୨୧)

ପ୍ରତାପୀ ରାଜା ବହୁ ଆଡ଼ମ୍ବରରେ ଦରବାର କରେ । ଶ୍ୱେତ ଛତ୍ର (୧୮-୪), ପତାକା (୮-୨୩), ଫୁଲଛତି (୧୩-୮), ଆଲଟ (୧୩-୯), ଚାମର (୧୩-୯), ଛତ୍ରୀ (୧୩-୧୦), ଖଦି (୧୭-୨୯), ଶଙ୍ଖଧ୍ୱନି (୧୨-୪), ବାଦ୍ୟଦଣ୍ଡ ଗନ୍ଧ ଧୂପ (୧୧-୩୫) ଏସବୁ ରାଜ ଆଡ଼ମ୍ବରର ପ୍ରତୀକ । ରାଜାଙ୍କୁ ଉପଯୁକ୍ତ ଉପଦେଶ ଦେବାପାଇଁ ରାଜସଭାରେ ନୀତିବନ୍ତ ବିଚକ୍ଷଣମନ୍ତ୍ରୀ (୩୨-୧୮), ପଣ୍ଡିତ (୨୫-୨୪), ଭାଟ (୮-୭) ଓ ପ୍ରାଣସଖା (୧୨-୩) ମାନେ ଥାନ୍ତି । ଏମାନଙ୍କ ମଣିମା ମଣିମା ଡାକରେ ରାଜସଭା ମୁଖରିତ ହୋଇଥାଏ (୨୫-୩) । ନ୍ୟାଯ ବିଚାର ପାଇଁ ଲୋକେ ରାଜାଙ୍କ ଚାମୁରେ ଗୁହାରି କରୁଥିଲେ ହେଁ ଅନେକ ସମୟରେ ରାଜା ତୋଷାମୋଦକାରୀଙ୍କ ପ୍ରଭାବରେ ପଡ଼ି ପକ୍ଷପାତ ବିଚାର କରିଥାନ୍ତି (୨୫-୪) । ପ୍ରଭୁ ଆଶକୁ ଅନୁସରଣ କରି ପ୍ରଭୁଙ୍କ ମନ ନେବାପାଇଁ ଅନେକ ପଣ୍ଡିତ ତୁମ୍ଭ ଠହୁଁ କେ ଅଛି ବଡ଼ କହି ରାଜାଙ୍କର ସ୍ତୁତିଗାନ କରିଥାନ୍ତି (୨୫-୩) । ଛାମୁ ଆଜ୍ଞା ସବୁବେଳେ ଶିରୋଧାର୍ଯ୍ୟ । ଅବଜ୍ଞା କରିବା ଅନୁଚିତ (୨୫-୧୯) । ଦୋଷ କଲେ ଦଣ୍ଡ ଦେବା ଓ ଭଲ କାମରେ ମଣ୍ଡନ କରିବା ରାଜାଙ୍କର କର୍ତ୍ତବ୍ୟ (୨୬-୮) । ପୁରସ୍କାର ସ୍ୱରୂପ ଅଳଙ୍କାର, ହାର, ଅମ୍ବର, କୁଣ୍ଡଳ, କର୍ପୂର ଓ ତାମ୍ବୁଳ ଦେବାର ବିଧି ଥିଲା (୨୩-୨୬,୨୭) ।

ସମର ବର୍ଣ୍ଣନାର ବିଭିନ୍ନ ଦୃଶ୍ୟ ରସକଲ୍ଲୋଳର ଶବ୍ଦାବଳୀରୁ ଉପଲବ୍ଧ ହୁଏ । ରଥ, ଗଜ, ଅଶ୍ୱ, ମଲ୍ଲ ଓ ଧନୁକୀ (୧୪-୪) ମାନଙ୍କ ଦ୍ୱାରା ରଣକ୍ଷେତ୍ର ପରିପୂର୍ଣ୍ଣ ହେଉଥିଲା । ଅମ୍ବର ଓ ଚକ୍ର ଶୋଭିତ ରଥ ଆରୋହଣ କରି ରଜା ଦିଗବିଜେ କରୁଥିଲେ (୮-୧୭) । ରଥ ଉପରୁ କାଣ୍ଡ ପ୍ରୟୋଗ କରି ପ୍ରତିବାଦୀର ଜ୍ଞାନ ଲୋପ କରିବା ସହଜ । 'ସଂଗ୍ରାମ ଭୂମି ଅଶ୍ୱବତ' (୧୫ -୧), ଓ ମାହୁନ୍ତ (୨୮-୧୨) ବା ହସ୍ତୀପାଳକ (୨୮-୨୩) ବାରଣ-ଆରଣ (୧୭-୧୦)ର ଉଲ୍ଲେଖରୁ ସଂଗ୍ରାମ କାଳରେ ଏସବୁର ବ୍ୟବହାର ହେଉଥିବା ଜଣାଯାଏ । କାଣ୍ଡ ଧାଡ଼ି ଘାତ (୩୦-୧), କାଣ୍ଡର ଲାଖ (୩୦-୬), ସନ୍ଧାନ (୧୩-୯), ହାଣିବା (୨୯-୫୮), କାଣ୍ଡ ଘାତରେ ଦେହ ଜର ଜର କରିବା ହାବୋଡ଼ା କାଣ୍ଡ (୧୬-୬) ଓ ଅର୍ଦ୍ଧଚନ୍ଦ୍ର ବାଣ (୧୨-୨୫)ର ପ୍ରୟୋଗରୁ କୋଦଣ୍ଡ ଓ କାଣ୍ଡସାହାଯ୍ୟରେ ଯୁଦ୍ଧର ଚିତ୍ର ମିଳେ । ଏପରି ଜଣେ ଯୋଦ୍ଧାର ଚିତ୍ର ବର୍ଣ୍ଣନା କରି କବି ଲେଖିଛନ୍ତି,

କାଣ୍ଡ କୋଦଣ୍ଡ କରେ । କର ଦେଇ ନିଶରେ
କରେ ଇଚ୍ଛା ମନରେ କଟାଳିବାକୁ ଥରେ ସେ । ୨୩-୩୧ ।

ମଲ୍ଲଯୁଦ୍ଧ ବର୍ଣ୍ଣନା କରିବାପାଇଁ କବିଙ୍କର ବିଶେଷ ଆଗ୍ରହ ଥିଲା । ମାଲ ବିନ୍ଧାଣ (୨୯-୩୨), ମୁଥ ପ୍ରହାର (୨୮-୩୦), ଭିଡ଼ନ୍ତି, ଜଡ଼ନ୍ତି, ଗଡ଼ନ୍ତି, କରଘାତେ ପୀଡ଼ନ୍ତି (୨୩-୧୨), ଯୁଦ୍ଧ ଆରମ୍ଭ ପୂର୍ବରୁ ବାହାସ୍ଫୋଟ ମାରି ପ୍ରତିଜ୍ଞା କରିବା (୨୮-୨୮) ପ୍ରଭୃତି ଶବ୍ଦ ପ୍ରୟୋଗରୁ ଏହା ଜାଣି ହୁଏ । ମଲ୍ଲଯୁଦ୍ଧରେ କୃପାଣ, ତୋମର ପ୍ରଭୃତି ବ୍ୟବହୃତ ହୁଏ ନାହିଁ । କର ଏକାର ଏକମାତ୍ର ଆୟୁଧ (୨୮-୩୧) । ସମରରେ ବ୍ୟବହୃତ ହେଉଥିଲା ଅନ୍ୟାନ୍ୟ ଆୟୁଧ ମଧ୍ୟରୁ କବି କରବାଳ (୧୮-୧୭), କୁନ୍ତ (୧୩-୩୨), ଫଳକ (୧୩-୨୨), ଅଙ୍କୁଶ (୨୪-୫), କାତି (୨୧-୧୦) ଓ କରବାଳ ପୁତ୍ରୀ (୨୨-୩୫), ଗଦା (୧୪-୩୩)ର ଉଲ୍ଲେଖ କରିଛନ୍ତି । ପାଶ (୧୪-୩) ଓ ଶାଙ୍କୋଳି (୨-୮) ବା ଶାଙ୍କୁଳି (୨୯-୧୧) ଯୁଦ୍ଧ-ଲାଞ୍ଛିତ ଯୋଦ୍ଧାମାନଙ୍କୁ ବନ୍ଦୀ କରିବା କାର୍ଯ୍ୟରେ ଲାଗୁଥିଲା । ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ବୀରଡାକ (୨୩-୧୦), ବୀରମାନଙ୍କର ହୁଙ୍କାର (୧୨-୨୧), ଅହଙ୍କାର ତର୍ଜନ (୧୨-୨୧), ଧନୁ ଟଙ୍କାର (୧୨-୨୦) ଓ ସମର ବାଦ୍ୟ (୨୩-୧୦)ରେ ରଣକ୍ଷେତ୍ର ମୁଖରିତ ହେଉଥିଲା । ଯୁଦ୍ଧ କ୍ଷେତ୍ରରେ ଯେଉଁମାନେ ନିଜର ଯୋଗ୍ୟତା ଦେଖାଇବାକୁ ସମର୍ଥ ହେଉଥିଲେ, ସେମାନେ ଯେପରି ଯୁଦ୍ଧ ଶେଷରେ ପୁରସ୍କୃତ ହେଉଥିଲେ, ଯେଉଁମାନେ ପଛେଇ ରହୁଥିଲେ ଅର୍ଥାତ୍ ଯୁଦ୍ଧରେ ଯୋଗ୍ୟତା ଦେକାଇ ପାରୁ ନ ଥିଲେ, ସେମାନେ ସେହିପରି ନିନ୍ଦିତ ହେଉଥିଲେ (୨୩-୨୬, ୨୭) । ରାଜସେବକମାନଙ୍କ ମଧ୍ୟରୁ କବି ଦେଶାଉର ଆଜ୍ଞାକାରୀ (୧୭-୩୦), କାରାରକ୍ଷକ (୨-୧୦), ନିଯୋଗୀ (୨୭-୨୯), ପରିକ୍ଷା (୭-୩୬), ଚାର (୨୮-୨୯) ଓ କଟୁଆଳ ପାହାରୀ (୨-୭) ମାନଙ୍କର ଉଲ୍ଲେଖ କରିଛନ୍ତି । ରାଜା ଆଜ୍ଞା (୨୫-୧୯), ଉଲ୍ଲୁରୀ (୧୫-୨୦) ଓ ଉଦନ୍ତ (୩୦-୨୩), ବାର୍ତ୍ତା (୨୧-୧୭) ଦେଇ ହକରା (୨୫-୨) କରିବାରେ ଦେଶାଉର ବା ଚାରମାନେ ସାହାଯ୍ୟ କରୁଥିଲେ । ନିଯୋଗୀ, ସେବକ ଓ ପରିଚ୍ଛାମାନେ ରାଜ୍ୟ-ଶାସନର ବିଭିନ୍ନ କାର୍ଯ୍ୟରେ ଲିପ୍ତଥାନ୍ତି । ଦେଶକୁ ଚୋର, ତସ୍କର ଓ ଡକାୟତଙ୍କ ପ୍ରକୋପରୁ ରାତ୍ରିରେ ରକ୍ଷା କରିବା କଟୁଆଳମାନଙ୍କର କାର୍ଯ୍ୟ । ଲୋକେ ଲାଞ୍ଚ (୧୩-୧୨) ଦେଇ ରାଜକର୍ମଚାରୀମାନଙ୍କୁ ସନ୍ତୁଷ୍ଟ କରୁଥିଲେ । ରାଜାମାନଙ୍କର ସ୍ତୁତିଗାନ କରିବାପାଇଁ ରାଜସଭାରେ କଯେବାରବା ଭାଟମାନେ ଥିବା ପରି ନୃପତିଙ୍କ ସୁଖ ପାଇଁ ନର୍ତ୍ତକୀମାନେ ମଧ ରହୁଥିଲେ । ସେମାନଙ୍କର ଗୀତ ଓ ନୃତ୍ୟରେ ରାସଭା ମୁଖରିତ ହେଉଥିଲା ।

ରସକଲ୍ଲୋଳରେ ରାଜା ବା ଦେବତାଙ୍କ ଦିନଚର୍ଯ୍ୟା ବା ନିତ୍ୟକୃତ୍ୟ (୨୭-୩୮) ପାଇଁ ପ୍ରଯୁକ୍ତ ବିଭିନ୍ନ ଶବ୍ଦାବଳୀ କବି ଦୀନକୃଷ୍ଣଙ୍କୁ ଜାଣିବାରେ ବିଶେଷ ସାହାଯ୍ୟ କରେ । ସେ ଖାଇବା ପାଇଁ ମଣୋହି, ଖୋଇବା ପାଇଁ ଭୁଞ୍ଜାଇବା, ମୁହଁ ଧୋଇବା ପାଇଁ ଆଚମନ, ଶୋଇବା ପାଇଁ ପହୁଡ଼ିବା (୫-୨୭), ଶଯ୍ୟାତ୍ୟାଗ ପାଇଁ ଅପହୁଡ଼, ସ୍ନାନ ପାଇଁ ମାଜଣା ବା ମାର୍ଜନ, ଓ ପହଞ୍ଚିବା ବା ଉପସ୍ଥିତ ହେବା ପାଇଁ ବିଜେ କରିବା ପ୍ରଭୃତି ବ୍ୟବହାର କରି ଜଗନ୍ନାଥକ୍ଷେତ୍ର ସହ ନିଜର ବିଶେଷ ସଂପର୍କ ଥିବା ସୂଚିତ କରନ୍ତି । ଏହା ବ୍ୟତୀତ କାଠିଲାଗି (୨୪-୧୬), କବାଟଫିଟା ଅବକାଶ (୬-୩୫), କବାଟ ଉଲାଗି ହେବା (୨୭-୩୮), ତଡ଼ପ ଲାଗି (୨୪-୧୪), ମୁଖ ପଖାଳିବା (୨୪-୧୭), ବାସଲାଗି (୨୪-୧୭), ପରିକ୍ରମା (୨୪-୨୪), ଶ୍ରୀଅଙ୍ଗ ମର୍ଦ୍ଦନ (୫-୨୯), ଶ୍ରୀମୁଖ ପୋଛା (୫-୨୯), ସେବା (୭-୨୮) ଓ ନିଯୋଗ (୨୭-୨୯) ପ୍ରଭୃତି ବ୍ୟବହାର ଏକ ସ୍ୱତନ୍ତ୍ର କହିବା ଶୈଳୀର ପରିଚୟ ଦିଏ ।

ରସକଲ୍ଲୋଳର ଲୋକ ସଂସ୍କୃତି ସହସଂପୃକ୍ତ ଶବ୍ଦାବଳୀର ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ କବି ଦୀନକୃଷ୍ଣ ତାଙ୍କ ଜୀବନରେ ପୋଡ଼ା ପେଟର ଜ୍ୱାଳା, ଦଣ୍ଡଧରଙ୍କ ଦଣ୍ଡବ୍ୟଥା, ପୁଣି ପ୍ରିୟ କ୍ଷେତ୍ର ପୁରୀରୁ ନିର୍ବାସିତ ହେବାର ଦୁଃଖ ବହନ କରି କାବ୍ୟର ବିଷୟବସ୍ତୁ ବା ପୃଷ୍ଠଭୂମି ରୂପେ ସେ ଯେଉଁ ସମାଜରୁ ଉପାଦନ ଆହରଣ କରିଛନ୍ତି, ତାହା ହେଉଛି ସମୃଦ୍ଧ ରାଜପରିବାରର ଭୋଗବିଳାସର ସମାଜ । ଦୀନ, ଦରିଦ୍ରମାନଙ୍କର ମଳିନ ବେଶ, ଦରିଦ୍ରାଣୀର ଭେକ, ରଙ୍କର ଭୋଜନ ଲାଳସା, ଦରିଦ୍ରର ଧନପ୍ରାପ୍ତିର ଅପୂର୍ବ ଉଲ୍ଲାସ, ପୁଣି ନିର୍ଯ୍ୟାତିତ କିଣାଦାସର ସାମାଜିକ ଦୂରବସ୍ଥା, ପ୍ରଭୃତି କବିଙ୍କୁ କେବଳ ଉପମାନ ରୂପେ ସାହାଯ୍ୟ କରିଛନ୍ତି । ଏ ସବୁଙ୍କ ପ୍ରତି କବିଙ୍କର ସହୃଦୟତା ଥାଇ ମଧ୍ୟ କବି ରୀତିକାଳୀନ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ରାଜାଶ୍ରୟକୁ କବି ବା କବିତାର ପରମଗତି ରୂପେ ଗ୍ରହଣ କରିଥିବା ମନେ ହୁଏ । ସେଥିପାଇଁ ରାଜାଙ୍କ ଆଦର ବା ଅନାଦର କବିଙ୍କ କବିତାରେ କୌଣସି ଭାବାନ୍ତର ଆଣିବାକୁ କ୍ଷମ ହୋଇନାହିଁ । କବି ରାଜଦରବାରର ଆଦରରୁ ବଞ୍ଚିତ ହୋଇ ମଧ ସୁନ୍ଦରୀ ନର୍ତ୍ତକୀର କମନୀୟ ନୃତ୍ୟ ଓ ଅଭିନୟ, ମଧୁର ଅଙ୍ଗଭଙ୍ଗୀ, ସୁଲଳିତ ସଙ୍ଗୀତ, ମର୍ଦ୍ଦଳର ମୃଦୁଘାତ, ରାଜନବରର ବିଳାସପୂର୍ଣ୍ଣ ପରିବେଶ-ଯେଉଁଠି ଅଗୁରୁ ଧୂପର ସୁଗନ୍ଧ, ଚନ୍ଦନ ପିଚିକାର ଶୀତଳତା, ଜଳକ୍ରୀଡ଼ା ଓ ନୌକା ବିହାରର ବିପୁଳ ଆୟୋଜନ,

ଚନ୍ଦ୍ରାତପ, କନକ ଦୀପ, ଚିତ୍ରପଟସଜ୍ଜିତ ଗୃହ କବିଙ୍କୁ ମୁଗ୍ଧ କରୁଥିଲା, ସେ ସବୁକୁ ଭୁଲି ପାରିନାହାନ୍ତି । ଗ୍ରାମର କୁତ୍ସିତ ବାତାବରଣ କବି ହୃଦୟକୁ ଦଗ୍ଧ କରିଛି । ସେଥିପାଇଁ କବି ଲେଖିଛନ୍ତି,

କୁତ୍ସିତ ଗ୍ରାମେ ଥିଲେ ମହାପଣ୍ଡିତ ହେଲେ
କି କି ହୋଇ ହୁଅଇ ଦୁଃଖୀ । ସେ ।

ନିଜକୁ ବଗଡ଼ା ଭାତ ମିଳୁ ନ ଥିଲେ ହେଁ, ସେ ଦିବ୍ୟ ଅନ୍ନର ସ୍ୱାଦକୁ ସ୍ମରଣ କରିଛନ୍ତି । ନିଜର ଆଶ୍ରୟ ପାଇଁ କୁଡ଼ିଆ ଖଣ୍ଡେ ନ ଥିଲେ ହେଁ, ସେ ସୁଧାଲେପିତ ପୁରର ସ୍ୱପ୍ନ ଦେଖିଛନ୍ତି ।

କେବଳ କବି ଦୀନକୃଷ୍ଣ ନୁହନ୍ତି, ରୀତିକାଳୀନ କବି ସମାଜର ଏହାହିଁ ଥିଲା ସାଧାରଣ ମାନସ ପ୍ରକ୍ରିୟା । ଡକ୍ଟର ନଗେନ୍ଦ୍ର ମଧ କହନ୍ତି, ରୀତି କବିର ସ୍ଥିତି, ଉତ୍ପାଦକ ବର୍ଗ ଆଉ ଭୋକ୍ତା-ବର୍ଗର ମଝିରେ । ସେ ନିମ୍ନ ବର୍ଗରେ ଜନ୍ମ ହୋଇ ମଧ୍ୟ ଉଚ୍ଚବର୍ଗର ସଂସ୍କାର, ଆଶା ଓ ଆକାଂକ୍ଷା ଚିତ୍ରଣରେ ନିଜକୁ ନିୟୋଜିତ କରିଥିଲା । ରାଜାଙ୍କ ଦ୍ୱାରା ନିରାଶ ହୋଇ କବି ନିଜ ସମାଜକୁ ନ ଫେରି ଶ୍ରୀକୃଷ୍ଣଙ୍କ କଥା ଗାନରେ ବିଭୋର ହେଉଥିଲା । କବିତାର ଶ୍ରେଷ୍ଠତା ତାର ଉତ୍‌ଥାନର ମୂଳ କାରଣ ହେଲେ ବି ନିଜ ଦୁର୍ଭାଗ୍ୟରୁ ରାଜକୃପାରୁ ବଞ୍ଚିତ ହେଲେ ସଂସାରର ସବୁ ସୁଖ ଭରସା ତାର ଲୋପ ପାଇ ଯାଉଥିଲା । ଏହିସବୁ କାରଣରୁ ରସକଲ୍ଲୋଳର ପ୍ରଚ୍ଛଦପଟ ରୂପେ କବି ଯେଉଁ ସମାଜରୁ ଉପାଦାନ ଆହରଣ କରିଛନ୍ତି, ତାହା ଥିଲା ସମସାମୟିକ ବିଳାସୀ ରାଜଦରବାରର ସମାଜ । ଓଡ଼ିଶାର ଜନସାଧାରଣ ସେଥିରୁ ଚିରଦିନ ପାଇଁ ଉପେକ୍ଷିତ ।

(୮)

## କଅ ଅକ୍ଷରେ ହୋଇଛି ନିୟମ

କଅ ଅକ୍ଷର ନିୟମ ରସକଲ୍ଲୋଳ ରଚନାର ଏକ ଅପରିହାର୍ଯ୍ୟ ଅଙ୍ଗ । କାବ୍ୟର ପରିକଳ୍ପନା କଲାବେଳେ କବି ଏହି ନିୟମକୁ ଅନୁସରଣ କରିବାପାଇଁ ମନସ୍ଥ କରି ବହୁ ପରିଶ୍ରମର ସହିତ ଏହାର ନିର୍ବାହ କରିଛନ୍ତି । ଏ କଥା ତାଙ୍କ ଘୋଷଣାରୁ ଜଣାଯାଏ ।

କଅ ଅକ୍ଷରେ କଲି ଯେଗୀତ,/କେବେ ହେଁ ଏଥି ନ ହେବ ଘାତ

କବି ହେଲେ ତ ଜାଣିବ ଏଥି ଶ୍ରମହିଁ ଯେତେ ଯେ ।

ଅକ୍ଷର ନିୟମ ପ୍ରତି ସେ ପୁଣି ଥରେ ପାଠକମାନଙ୍କୁ ସଚେତନ କରାଇ କହିଛନ୍ତି କଅ ଅକ୍ଷରେ ହୋଇଛି ନିୟମ ଏ ପ୍ରକାର ନିୟମର ମୂଳ ବୋଧହୁଏ ମଧକାଳୀନ ପରଂପରାରେ ପାଣ୍ଡିତ୍ୟ ଦେଖାଇବାର ଏକ ସାଧନା । ଉପେନ୍ଦ୍ର ଭଞ୍ଜଙ୍କ ମତରେ ଅକ୍ଷର ନିୟମ କାବ୍ୟ ବା କବିତାକୁ ପ୍ରଦୀପ୍ତ କରେ । 'ପ୍ରଦୀପ୍ତ' ଶବ୍ଦ ଦ୍ୱାରା ସେ ବୋଧହୁଏ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ପ୍ରତି ଲକ୍ଷ୍ୟ କରିଛନ୍ତି । କବି ଦୀନକୃଷ୍ଣ ଏ ପ୍ରକାର ଅକ୍ଷର ନିୟମ ପୁଣି ବିଭିନ୍ନ ଅକ୍ଷର ମଧ୍ୟରୁ କଅ କୁ କାହିଁକି ବାଛିଥିଲେ, କାବ୍ୟରେ ତାର ଉତ୍ତର ନାହିଁ । ସେ ନିଜ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିବାପାଇଁ କେବଳ ଅକ୍ଷର ନିୟମକୁ ଗ୍ରହଣ କରିନାହାନ୍ତି । ବକ୍ରୋକ୍ତି, ରସ, କଥା ଓ ଅଳଙ୍କାରକୁ ମଧ୍ୟ ପ୍ରାଧାନ୍ୟ ଦେଇଛନ୍ତି । ତେବେ ଏହି ନିୟମକୁ କାବ୍ୟରେ ପ୍ରୟୋଗ କଲା ପରେ ଏହା ପ୍ରତି କବିଙ୍କର ଆନ୍ତରିକ ଶ୍ରଦ୍ଧା ବୃଦ୍ଧି ପାଇଥିବା ସ୍ୱାଭାବିକ । ଏତେ କଷ୍ଟରେ ଲିଖିତ କାବ୍ୟର ଅକ୍ଷର ନିୟମ ପାଳନରେ ଦୋଷତ୍ରୁଟି ଦର୍ଶାଇ କାଳେ କେହି ଭବିଷ୍ୟତରେ ସମାଲୋଚନା କରିବ ସେ ଭୟରେ କବି ତାଙ୍କର ଅଜାତ ସମାଲୋଚକମାନଙ୍କୁ ଖଳ, ବାଳିଶ, ନାସ୍ତିକ ଓ ପରନିନ୍ଦୁକ କହି ସାବଧାନ କରି ଦେଇଛନ୍ତି । ଅର୍ଥାତ୍ ଏତେ ସତର୍କତାର ସହିତ ବ୍ୟବହୃତ କଅ ନିୟମ କାବ୍ୟରେ କେଉଁ ରୂପ ପରିଗ୍ରହ କରିଛି, ତାହାହିଁ ଏ ପ୍ରବନ୍ଧରେ ଆଲୋଚ୍ୟ ।

### କଅ ନିୟମର କେତୋଟି ବ୍ୟତିକ୍ରମ

କାବ୍ୟର ପ୍ରଥମ ଛାନ୍ଦରେ କ ଅଛି ପାଦର ଆରମ୍ଭରେ ଓ ଶେଷରେ । ନବମ ଛାନ୍ଦର ଷଷ୍ଠ ପଦ ଠାରୁ ଦ୍ୱାଦଶ ପଦର ଅର୍ଦ୍ଧ ପର୍ଯ୍ୟନ୍ତ ପଂକ୍ତି ଶେଷରେ

କ ଯୋଗକରି କବି ଏହି ନିୟମକୁ ଆଉଥରେ ସ୍ମରଣ କରିଛନ୍ତି । ଅନ୍ୟ ଛାନ୍ଦ ସବୁରେ ଅକ୍ଷର ନିୟମର ଏ ରୂପ ଦେଖିବାକୁ ମିଳେ ନାହିଁ । କେତୋଟି ବ୍ୟତୀତ କବି ପ୍ରତ୍ୟେକ ପାଦର ପ୍ରଥମ ଅକ୍ଷରକୁ କଅ ରଖିଛନ୍ତି । ରସକଲ୍ଲୋଳରେ କଅ ନିୟମ କହିଲେ ଏହାକୁ ହିଁ ବୁଝାଏ । ରସକଲ୍ଲୋଳରେ ଚଉତ୍ରିଶ ଛାନ୍ଦ । ସଙ୍ଗମ ତିଆରି (୧ମ), କେଦାର (୩ୟ), ଆହାରି (୪ର୍ଥ), ଗୁଜ୍ଜରୀ ପଡ଼ିତାଳ (୫ମ), ପଞ୍ଚମ ବରାଡ଼ୀ (୭ମ), ବଙ୍ଗଳାଶ୍ରୀ (୧୦ମ), ଚକ୍ରକେଳି (୧୧ଶ), କାଳୀ (୧୪ଶ,୨୪ଶ), କଲ୍ୟାଣ ପଡ଼ିତାଳ (୧୭ଶ), ମୁଖାରୀ ପଡ଼ିତାଳ (୧୮ଶ), କେଦାର କାମୋଦୀ (୨୦ଶ), ଗୁଜ୍ଜରୀ (୨୭ଶ), କଳହଂସ କେଦାର (୨୮ଶ), ଚିନ୍ତାଦେଶାକ୍ଷ (୨୯ଶ), କାଫୀ (୩୦ଶ), କାମୋଦି (୩୩), ଓ ବରାଡ଼ୀ (ଆଷାଢ଼ ଶୁକ୍ଳବାଣୀ) (୩୪) ପ୍ରଭୃତି ରାଗ ଦୁଇ ବା ଚାରିପାଦ ବିଶିଷ୍ଟ ହୋଇଥିବାରୁ ପ୍ରତ୍ୟେକ ପାଦର ଆଦ୍ୟରେ କଅ ରଖିବାରେ ବିଶେଷ କିଛି ଅସୁବିଧା ନାହିଁ । ଆଉ କେତେକ ରାଗ ଅଛି, ଯେଉଁଥିରେ ପ୍ରତ୍ୟେକ ପାଦ ଯତିପାତ ଦୃଷ୍ଟିରୁ ବିଭିନ୍ନ ଭାବେ ବିଭାଜିତ । ସେତେବେଳେ କବି ପ୍ରତ୍ୟେକ ପାଦର ଆଦ୍ୟ ଅକ୍ଷର ସହ ପ୍ରତ୍ୟେକ ବିଭାଗର ପ୍ରଥମ ଅକ୍ଷରକୁ କ ରଖିବାକୁ ଚାହିଁଥିଲେ ବି ବେଳେବେଳେ ଏହାର ବ୍ୟତିକ୍ରମ କରିଛନ୍ତି । ଉଦାହରଣ ସ୍ୱରୂପ ପଞ୍ଚଦଶ ଛାନ୍ଦକୁ ଗ୍ରହଣ କରାଯାଇପାରେ । ଏଥିରେ ଚାଳିଶଟି ପଦ । କବି ପ୍ରଥମରୁ ପଞ୍ଚମ ଓ ନବମରୁ ପଞ୍ଚଦଶ ପଦ ପର୍ଯ୍ୟନ୍ତ ତୃତୀୟ ପାଦର ଆରମ୍ଭରେ 'ସୁଜନେ' ଶବ୍ଦ ରଖି ପରବର୍ତ୍ତୀ ଶବ୍ଦକୁ କ ରେ ଆରମ୍ଭ କରିଛନ୍ତି । ଅଥଚ ଅନ୍ୟ ଅଠେଇଶିଟି ପଦରେ କଅ ନିୟମର ଅନ୍ୟରୂପ । ସୁଜନେ ସ୍ଥାନରେ କୋବିଦେ, କରିବା, କେଶବ, କାମିନୀ, କହନ୍ତେ ପ୍ରଭୃତି କ ଆଦ୍ୟବର୍ଣ୍ଣ ବିଶିଷ୍ଟ ଶବ୍ଦ ବ୍ୟବହୃତ । ଏଥିମଧ୍ୟରୁ ଷଷ୍ଠ, ସପ୍ତମ, ଅଷ୍ଟମ, ଷୋଡଶ, ଊନବିଂଶ, ବିଂଶ, ଷଡ଼୍‌ବିଂଶ, ସପ୍ତବିଂଶ, ଊନତ୍ରିଂଶ, ତ୍ରୟତ୍ରିଂଶତ୍ ଓ ସପ୍ତତ୍ରିଂଶତ୍ ପ୍ରଭୃତି ପଦରେ କ ଆଦ୍ୟବର୍ଣ୍ଣ ବିଶିଷ୍ଟ ଶବ୍ଦର ପରବର୍ତ୍ତୀ ଶବ୍ଦ ମଧ୍ୟ କ ରେ ଆରମ୍ଭ । ଅବଶିଷ୍ଟ ପଦସବୁରେ ଏ ନିୟମ ନାହିଁ । ବର୍ଣ୍ଣମାଳାର ଯେ କୌଣସି ବର୍ଣ୍ଣର ବ୍ୟବହାର ହୋଇଛି । ଏପରି ଦେଖିଲେ ପଞ୍ଚଦଶ ଛାନ୍ଦରେ କ ନିୟମର ତିନୋଟି ରୂପ :

(କ) ସୁଜନେ, କୁଞ୍ଜ ଭିତରେ ପକ୍ଷୀମାନେ । ୧୫-୫ । (ଖ) କୋବିଦେ, କୁଣ୍ଡଳୀକୁଳ ଏହିରୂପେ । ୧୫-୬ । (ଗ) କେବଳ, ଯେ ଯାହାକୁ

ଗୁଣେ ବଳର । ୧୫-୧୮ । କବିଙ୍କ ପ୍ରୟୋଗକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ତୃତୀୟ ପାଦର ଆଦ୍ୟାକ୍ଷରକୁ କ ରଖିବା କ ନିୟମର ଅନ୍ତର୍ଭୁକ୍ତ ହେଲେ ହେଁ, ବାରୋଟି ପଦରେ କବି ଏହାର ସ୍ଥାନ ପରିବର୍ତ୍ତନ କରିଛନ୍ତି ।

ଏହିପରି ଆଉଗୋଟିଏ ଉଦାହରଣ ହେଉଛି, ଦ୍ୱାବିଂଶ ଛାନ୍ଦ । ଏହାର ରାଗ ମୁଖାରୀ । ଏଥିରେ ଦୁଇ ପାଦ । ପ୍ରଥମ ପାଦରେ ଦୁଇଟି ଓ ଦ୍ୱିତୀୟ ପାଦରେ ତିନୋଟି ଭାଗ ଅଛି ।

କଲେ ଯାଇ ଅବଲୋକ/କେ ବୋଲେ ଏ ତ କୀଚକ ।
କଲା ଆମ୍ଭଙ୍କୁ ଉତ୍ସୁକ / ବଂଶୀ ପ୍ରୟୋଗ / ସଜନୀ ଗୋ ।

ଏହି ଛାନ୍ଦର ଛପନ ପଦ ମଧ୍ୟରୁ ବତିଶିଟି ପଦରେ କବି ପ୍ରଥମ ପାଦର ଦୁଇଭାଗ ଓ ଦ୍ୱିତୀୟ ପାଦର ପ୍ରଥମ ଭାଗର ଆଦ୍ୟ ବର୍ଣ୍ଣକୁ କ ରଖିଛନ୍ତି । ଉପରେ ଉଦ୍ଧୃତ ପଦ ଏହାର ଉଦାହରଣ । କେତେକ ପଦରେ (୬,୧୨, ୧୩, ୧୪, ୨୬, ୩୦, ୩୧, ୩୬, ୩୮, ୩୯, ୪୦, ୪୧, ୪୩, ୪୪, ୪୫, ୫୦, ୫୪, ୫୫, ୫୬) ପ୍ରଥମ ପାଦର ଦ୍ୱିତୀୟ ଭାଗରେ କ ନାହିଁ ।

କହ ତୁ କି ମନ୍ତ୍ର କଲୁ । ମୋହନକୁ ମୋହି ନେଲୁ
କି ତପସ୍ୟା କରିଥିଲୁ । କି ସୁଖୀ ହେଲୁ । ସଜନି ।

ପୁଣି ଆଉ କେତେକ ପଦରେ (୯,୧୦, ୧୨, ୧୬, ୨୭, ୩୧, ୫୩, ୫୬) ଦ୍ୱିତୀୟ ପାଦର ପ୍ରଥମ ଭାଗରେ କ ପରିବର୍ତ୍ତେ ଅନ୍ୟ ବର୍ଣ୍ଣ ସ୍ଥାନ ପାଇଛି ।

କେ ବୋଲେ ଆମ୍ଭଙ୍କୁ ଛାଡ଼ି । କେଶବ ସଙ୍ଗତେ ପଡ଼ି ।
ଗଲୁ ଯେ ସୁଖକୁ ଲୋଡ଼ି । ବେଳରେ ହୁଡ଼ି । ସଜନି ।

ଏପରି କେତେକ ପଦ ଅଛି ଯେଉଁଥିରେ କେବଳ ଶେଷଭାଗକୁ ଛାଡ଼ି ଆଉ ସବୁ ଭାଗରେ ଆଦ୍ୟରେ କ ରହିଛି ।

କରି ତାକୁ ବିଲୋକନ । କେ ବୋଲେ ରେ ପ୍ରାଣଧନ
କାହିଁ ରଖିଲୁ ମୋହନ । କହ ବହନ । ସଜନି ।

ଏ ସବୁ ଦୃଷ୍ଟାନ୍ତରୁ ଏ କଥା ସ୍ପଷ୍ଟ ଯେ ଏ ଛାନ୍ଦରେ କ ନିୟମ କହିଲେ ପ୍ରତି ପଦର ପ୍ରଥମ ଅକ୍ଷରକୁ ହିଁ ବୁଝାଏ । ଅନ୍ୟ ସ୍ଥଳରେ କବି ନିଜର ସୁବିଧା ଅନୁଯାୟୀ କେତେବେଳେ କ ରଖିଛନ୍ତି ତ କେତେବେଳେ କ ନାହିଁ । ରସକଲ୍ଲୋଳରେ କ ନିୟମର ଏହା ଆଉ ଗୋଟିଏ ପ୍ରଧାନ ବ୍ୟତିକ୍ରମ ।

ତ୍ରୟୋବିଂଶ ଛାନ୍ଦ ମଧ୍ୟ କଅ ନିୟମ ବ୍ୟତିକ୍ରମର ଆଉ ଗୋଟିଏ ଦୃଷ୍ଟାନ୍ତ । ଏହି ଛାନ୍ଦର ରାଗ ହେଉଛି, ଆନନ୍ଦ ଭୈରବ । କ ନିୟମ ଦୃଷ୍ଟିରୁ ଏହି ରାଗ ଛ ଭାଗରେ ବିଭକ୍ତ କେଶବ ବୋଇଲେ ତୁମ୍ଭ ନିମିତ୍ତେ । କୁଞ୍ଜବନଯାକ ବୁଲିଲି କେତେ । କରିବାକୁ ସୁବେଶ । କଲି କୁସୁମେ ଆଶ, କିପାଁ କରିଛ ରୋଷ । କିଛି ନାହିଁ ମୋ ଦୋଷ ଗୋ । ୨୩-୫ । ଏହି ପଦ ପରି ଆଉ ଷୋଳଟି ପଦରେ (୩, ୪, ୬, ୭, ୮, ୧୭, ୧୮, ୨୪, ୨୫, ୨୭, ୨୮, ୨୯, ୩୦, ୩୧, ୩୨, ୩୪) ପ୍ରତ୍ୟେକ ଭାଗର ଆଦ୍ୟବର୍ଣ୍ଣ ହେଉଛି କ । ଅବଶିଷ୍ଟ ସତର ପଦରେ କ ନିୟମର ଅନ୍ୟରୂପ । କେତେକ ପଦରେ ୧, ୨, ୯, ୧୦, ୧୧, ୧୪, ୧୫, ୧୬, ୧୯, ୨୦, ୨୧, ୨୨, ୨୩, ୨୬, ଓ ୩୩) ଶେଷଭାଗର ଆଦ୍ୟବର୍ଣ୍ଣ କ ନୁହେଁ । "କୋଟିନିଧି ପାଇଲା/ ମହା ଦରିଦ୍ର ଜନ ।" ବା ୨୩୧ । ଏଠି କ ସ୍ଥାନରେମ ଅଛି । ସେହିପରି ଆଉ କେତେକ ପଦରେ (୧୨ ଓ ୧୩) ଚତୁର୍ଥ ଭାଗର ଆଦ୍ୟବର୍ଣ୍ଣ କ ନୁହେଁ - "କେତେବେଳେ ଭିଡ଼ନ୍ତି । ମାଲ ପ୍ରାୟେ ଛଡ଼ନ୍ତି ।" ୨୩-୧୨ ଏଠି ମଧ୍ୟ କ ସ୍ଥାନରେ ମ ଅଛି ।

କ ନିୟମ ଦୃଷ୍ଟିରୁ ପଞ୍ଚବିଂଶ ଓ ଷଡ଼୍‌ବିଂଶ ଛାନ୍ଦରେ ମଧ୍ୟ କେତୋଟି ବ୍ୟତିକ୍ରମ ପରିଲକ୍ଷିତ ହୁଏ । ପଞ୍ଚବିଂଶ ଛାନ୍ଦର ପ୍ରଥମ ପଦର ଦ୍ୱିତୀୟ ପାଦ ଶେଷରେ 'ଆହେ ଜନେ' ଅଛି । ଏ ପ୍ରକାର ବ୍ୟବହାର ଏ ଛାନ୍ଦର ଆଉ ଛଅଟି ପଦରେ(୪, ୫, ୬, ୯, ୨୨, ୨୪) ରହିଛି । ଅଥଚ ଅନ୍ୟ ପଦସବୁରେ କବି କ ନିୟମକୁ ଅନୁସରଣକରି କୋବିଦେ ହେ, କି, କଲେ, କୃପାସିନ୍ଧୁ ପ୍ରଭୃତି ଶବ୍ଦ ପ୍ରୟୋଗ କରିଛନ୍ତି । ଠିକ୍ ସେହିପରି ଷଡ଼୍‌ବିଂଶ ଛାନ୍ଦର ସତର, ଅଠର ଏକୋଇଶି, ବାଇଶି, ତେଇଶି ଓ ଚବିଶ ପଦର ଯେଉଁ ସ୍ଥାନରେ 'ଗୋପୀମାନେ' ଅଛି, ଅବଶିଷ୍ଟ ପଦସବୁର ସେହି ସ୍ଥଳରେ କୃପାନିଧି, କଉଁ, କୃଶୋଦରୀ, କଲା ପ୍ରଭୃତି ଶବ୍ଦ ବ୍ୟବହାର କରି କବି କ ନିୟମକୁ ରକ୍ଷା କରିଛନ୍ତି । କାବ୍ୟ ମଧ୍ୟରେ ଆଉ ଦୁଇଟି ବ୍ୟତିକ୍ରମ ମଧ୍ୟ ଦେଖିବାକୁ ମିଳେ । ଅଷ୍ଟବିଂଶ ଛାନ୍ଦର ପ୍ରଥମ ପଦର ଦ୍ୱିତୀୟ ପାଦ ଓ ଊନବିଂଶ ଛାନ୍ଦର ବାଅାନ ପଦର ଦ୍ୱିତୀୟ ପାଦରେ କବି କ ନିୟମକୁ ରଖି ପାରିନାହାନ୍ତି ।

(କ) କୃଷ୍ଣ ବିଜୟ ମଥୁରା ଦାଣ୍ଡେ । କାନ୍ତି କୋଟି କାମ ଛବି ଖଣ୍ଡେ ।
ମେଘେ ଇନ୍ଦ୍ର କୋଦଣ୍ଡ ପରାୟେ କଳାପି କଳାପ ମୁଣ୍ଡେ ।୨୮-୧

(ଖ) କାମିନୀମାନଙ୍କର କଳପତରୁ ।

ମହିମା ସାଗର ପ୍ରଭୁ ମହିମା ମେରୁ । ୨୯-୪୨ ।

କଅ ନିୟମର ବ୍ୟତିକ୍ରମରୁ କବିଙ୍କ ଶବ୍ଦ ଜ୍ଞାନ ସମ୍ବନ୍ଧରେ କୌଣସି ସୂଚନା ମିଳେନାହିଁ । କବି ଇଚ୍ଛା କରିଥିଲେ ରସକଲ୍ଲୋଳରେ ବହୁଳ ଭାବେ ବ୍ୟବହୃତ କି, କେ, କେଉଁ, କେହି, କରି କଲା, ପ୍ରଭୃତି ଶବ୍ଦରୁ କୌଣସି ଗୋଟିକୁ ରଖି କ ନିୟମ ରଖି ପାରିଥାଆନ୍ତେ ଓ ଭବିଷ୍ୟତରେ କଅ ନିୟମ ବ୍ୟତିକ୍ରମର ଆଉ ଆଲୋଚନା ହୋଇ ନ ଥାନ୍ତା । କବି ତାହା କରି ନାହାନ୍ତି । ମଧ୍ୟକାଳୀନ ପରଂପରାରୁ ଗୃହୀତ ଅକ୍ଷର ନିୟମକୁ ସେ ଅନ୍ଧ ଭାବରେ ଅନୁସରଣ ନ କରି, କାବ୍ୟର ନାମକରଣ କଲାବେଳେ କାବ୍ୟର ଆତ୍ମାରସକୁ ପ୍ରାଧାନ୍ୟ ଦେବା ପରି କାବ୍ୟର ବିଭିନ୍ନ ଛାନ୍ଦରେ ପ୍ରସଙ୍ଗକୁ ଗୁରୁତ୍ୱ ପ୍ରଦାନ କରି କ ନିୟମର ବ୍ୟତିକ୍ରମ ମଧ କରିଛନ୍ତି । ଏଥିରୁ କବିଙ୍କ ସ୍ୱକୀୟ ବୈଶିଷ୍ଟ ତଥା ସ୍ୱାଧୀନ ଚେତନାର ପ୍ରମାଣ ମିଳିଥାଏ ।

ରସକଲ୍ଲୋଳର କଅ ନିୟମକୁ ପରୀକ୍ଷା କରିବାର ଆଉ ଗୋଟିଏ ଉପାୟ ହେଉଛି ଏହାର ଶବ୍ଦସଂଖ୍ୟା । ଳ ଓ ଣ ବ୍ୟତୀତ ବର୍ଣ୍ଣମାଳାର ଆଉ ସବୁ ବର୍ଣ୍ଣର ଶବ୍ଦ ଏଥିରେ ଅଛି । ଏମାନଙ୍କର ସଂଖ୍ୟା ହେଉଛି ଅଠର ହଜାର ଏକଶ ଅଣାନବେ । କାବ୍ୟର କଅ ନିୟମ ହେତୁ କ କୁ ପ୍ରାଧାନ୍ୟ ମିଳିଛି । କ ଆଦ୍ୟବର୍ଣ୍ଣ ବିଶିଷ୍ଟ ଶବ୍ଦମାଳାର ସଂଖ୍ୟା କାବ୍ୟରେ, ସାତ ହଜାର ଛଅଶ ବାଇଶି । ମୋଟ ଶବ୍ଦର ଅଧିକରୁ କିଛି କମ । ଏଥି ମଧ୍ୟରୁ ରସକଲ୍ଲୋଳର ପ୍ରତ୍ୟେକ ପଦ, ଅଧିକାଂଶ ପାଦ ଓ ଅନେକ ସମୟରେ ପାଦ ବିଭାଗର ଆଦ୍ୟକୁ ସୁଶୋଭିତ କରିଥିବା ଶବ୍ଦମାଳାର ସଂଖ୍ୟା ହେଉଛି ଚାରିହଜାର ତିନିଶ ତେଇଶି । ଗୋଟିଏ ବର୍ଣ୍ଣର ଏତେଗୁଡ଼ିଏ ଶବ୍ଦକୁ ବାକ୍ୟରେ ବ୍ୟବହାର କଲାବେଳେ କୌଣସି କୌଣସି ଶବ୍ଦ ବାରମ୍ବାର ବ୍ୟବହୃତ ହୋଇଥିବା ସ୍ୱାଭାବିକ, ସେଥିମଧ୍ୟରୁ କି, କେ, କଉଁ, କଥା, କର୍ଣ୍ଣ, କଳା, କଲା, କବି, କର୍ମ, କଷ୍ଟ, କଂସ, କାନ୍ତ, କାନ୍ତା, କାମ, କାଳ, କାହା, କାହିଁ, କାଣ୍ଡ, କିଛି, କୁଞ୍ଜ, କୁଚ, କୁମ୍ଭ, କେତେ , କେହି, କ୍ରୀଡ଼ା, କୃଷ୍ଣ, କୃପା, କୋଟୀ, କନକ, କନ୍ଦର୍ପ, କମଳ, କରୁଣା, କରିବା, କହିବା, କର୍ପୂର, କାନନ, କାମିନୀ, କୁଟିଳ, କୁରଙ୍ଗ, କୁସୁମ, କେବଳ, କୋକିଳ, କୋମଳ, କଉତୁକ, କମନୀୟ, କଳାକର, କଳେବର ପ୍ରଭୃତି ଶବ୍ଦ ପ୍ରଧାନ । କାବ୍ୟରେ ଏପରି କେତେକ ଶବ୍ଦ ଅଛନ୍ତି,

ଯିଏ ସବୁ କେବଳ ଥରେ ବା ଦୁଇଥର ଦେଖାଦେଇ ଅଦୃଶ୍ୟ ହୋଇ ଯାଇଛନ୍ତି । ସେ ସବୁ ଶବ୍ଦ ମଧ୍ୟରୁ କାଚ, କୁଣ୍ଡୀ, କୋଳି, କଞ୍ଚନ, କଠାଉ, କର୍ଣ୍ଣିକା, କରଣୀ, କଳଭ, କପିଳ, କବନ୍ଧ, କମଳୀ, କାଇଁଶ, କାଞ୍ଚନ, କାନ୍ତାର, କାର୍ତିକ, କାହାଳି, କୁଟୁମ୍ବ,କୁଟୀର, କୂପକ, କୋୟର, କଇବର୍ତ୍ତ, କଡ଼ାଆଳୀ, କଳବେଣୁ, କଳାଭୂତ, କୟେବାର, କଙ୍କତିକା, କାରଣ୍ଡବ, କୀଶଶିଶୁ, କୁସିତ, କୁରୁକୂଳ, କ୍ୱଣକିତ, କୃତମୁଖ ଓ କୃକକାକ ପ୍ରଭୃତି ଶବ୍ଦକୁ ଉଲ୍ଲେଖ କରାଯାଇପାରେ । ହିସାବ କରି ଦେଖିଲେ ରସକଲ୍ଲୋଳରେ କେବଳ ତିନିଶ ପଚାଶଟି ଶବ୍ଦ ବିଭିନ୍ନ ରୂପ ଓ ଅର୍ଥ ଗ୍ରହଣ କରି ସାତହଜାର ଛଅଶ ବାଇଶି ଶବ୍ଦ ହୋଇ କ ବର୍ଣ୍ଣର କଲ୍ଲୋଳ ସୃଷ୍ଟି କରିଛନ୍ତି ।

କ ଶବ୍ଦମାଳାରେ କରିବା କ୍ରିୟାହିଁ ସବୁଠାରୁ ଅଧିକ ବ୍ୟବହୃତ । କର ଶବ୍ଦ ଦ୍ୱାରା କାବ୍ୟର ଆରମ୍ଭ ପୁଣି ଶେଷ ହୋଇଛି । କାବ୍ୟକୁ ଆରମ୍ଭ କରି କବି ଲେଖିଛନ୍ତି-

କର ସାଧୁଜନମାନେ ମନକୁ ଏକ ।
କରଧୀର ଧ୍ୟାନ ଧ୍ୟାନ ନୀଳାଚଳ ନାୟକ ।

କାବ୍ୟର ଉପସଂହାରରେ କର ଶବ୍ଦର ଦୁଇ ଅର୍ଥ-ହାତ ଓ କରିବା । ସୁଧୀ ପାଠକମାନଙ୍କୁ ଅନୁରୋଧ କରି କବି ଲେଖିଛନ୍ତି -

କର ଧରି କହୁଅଛି ହେ ଜନେ
କ୍ରୋଧ ଅଭିମାନ ନ ଧର ମନେ
କରୁଣା ହୃଦୟ ନିରତେ ହୁଅ
କୃଷ୍ଣ କଥାରେ ଏକା ମନ ଦିଅ
କର ଦୀନେ ଦାନ
କହୁଁ କହୁଁ ଯିବଟି ଏ ଜୀବନ ।

କେବଳ ଆରମ୍ଭ ବା ଉପସଂହାର ନୁହେଁ, କାବ୍ୟର କଳେବର ଭିତରେ କରିବା କ୍ରିୟାର ପ୍ରାୟ ବୟାଳିଶିଯି ରୂପ ଦେଖିବାକୁ ମିଳେ । କ ଶବ୍ଦାବଳୀର ପ୍ରାୟ ଏକ ସପ୍ତମାଂଶ ସ୍ଥାନ କରିବା କ୍ରିୟା ଦ୍ୱାରା ଅଧିକୃତ । କରିବା କ୍ରିୟା କିପରି ବିଭିନ୍ନ ରୂପ ଗ୍ରହଣ କରି ପ୍ରକାଶ ପାଇଛି, ତାହା ନିମ୍ନ ତାଲିକାରୁ ଜଣାଯାଏ : -କର, କରି, କରୁ, କରେ; -କରଇ, କରନ୍ତି, କରନ୍ତା, କରନ୍ତୁ, କରନ୍ତେ, କରାଇ, କରାଇଁ, କରିବ, କରିବା, କରିବି, କରିବେ, କରିଛି, କରୁଛ, କରୁଛୁଁ,

କରିଣ; - କରାଇଲ, କରାଇଲେ, କରାଇବି, କରିଅଛି, କରିଅଛୁଁ, କରିଥାଇଁ, କରିଥାନ୍ତା, କରିଦେଇ, କରିନାହିଁ,କରିଥିଲା, କରିଥିଲି, କରିଥିଲେ, କରୁଥିଲ, କରୁଥିଲେ, କରୁଥାନ୍ତି; - କରିଅଛନ୍ତି, କରୁଅଛନ୍ତି, କରୁଥିବାରୁ । ସେହିପରି କହିବା କ୍ରିୟା କହ, କହି, କହୁଁ, କହେ, କହଇ, କହିବି, କହିବା, କହନ୍ତି କହିବ, କହିଲା, କହିଲେ, କହୁଛି, କୁହାଇ, କହୁଥିଲେ, କହିପାରି, କହିବାକୁ, କହିବାର, କୁହାନ୍ତି, କୁହାଇବା, କୁହାକୁହି, କହୁଅଛିନି, କହକହ, କହୁଁ କହୁଁ ରୂପରେ ତିନିଶ ଚଉଷଠି ଥର ବ୍ୟବହୃତ । ସଂଖ୍ୟା ଦୃଷ୍ଟିରୁ କଲା କ୍ରିୟା କହିବା ପରେ ହେଲେବି ମୋଟେ ଛଅଟି ରୂପ- କଲ, କଲା, କଲି, କଲୁଁ, କଲେ, କଲେହେଁ ।

ରସକଲ୍ଲୋଳରେ କ ର ବହୁଳ ବ୍ୟବହାର ବୀମ୍‌ସ ସାହେବଙ୍କ ଦୃଷ୍ଟି ଆକର୍ଷଣ କରିଛି । ସଂଖ୍ୟାଦୃଷ୍ଟିରୁ ଏହା କରିବା ଓ କହିବା କ୍ରିୟା ପରେ । କାବ୍ୟ ଭିତରେ ଏହା ତିନିଶ ତେପନ ଥର ବ୍ୟବହୃତ ହୋଇଥିଲେ ହେଁ ଆଦ୍ୟ ଶବ୍ଦ ଭାବରେ ଏହା ଦୁଇଶ ଛୟାଳିଶ ଥର ଆସିଛି । ଆଦ୍ୟ ଶବ୍ଦ ରୂପେ ବ୍ୟବହାର କଲାବେଳେ କବି ପ୍ରାୟ ବୋଲେ, ବୋଲଇ ଓ କହି ଶବ୍ଦକୁ ଏହାର ପରବର୍ତ୍ତୀ ଶବ୍ଦ ରୂପେ ଗ୍ରହଣ କରିଛନ୍ତି । ପ୍ରଥମ, ତ୍ରିଂଶ ଓ ଦ୍ୱାତ୍ରିଂଶ ଛାନ୍ଦରେ ଏହାର ବ୍ୟବହାର ନାହିଁ । ଅଥବା ଦ୍ୱାବିଂଶ ଛାନ୍ଦରେ ଏହା ପୂର୍ବାପେକ୍ଷା ଅଧିକ, ଛପନ ପଦରେ ଅଣତ୍ରିଶି ଥର । ଏହାପରେ କି ର ସ୍ଥାନ । କାବ୍ୟରେ ଦୁଇଶ ଶତାଅଂଶୀ ଥର ଆସିଥିଲେ ହେଁ ଆଦ୍ୟଶବ୍ଦ ଭାବେ ମୋଟେ ଶହେ ଅଣତିରିଶି ଥର ବ୍ୟବହୃତ । ଆଦ୍ୟ ଶବ୍ଦ ଦୃଷ୍ଟିରୁ କେ ତୁଳନାରେ ଏହାର ଗୁରୁତ୍ୱ କମ୍ । ପ୍ରୟୋଗ କଲାବେଳେ କି ବି ଭିନ୍ନ ଅର୍ଥ ଘେନି ପ୍ରକାଶ ପାଇଛି । କବି ଯେତେବେଳେ ନବମ ଛାନ୍ଦରେ ଲେଖିଛନ୍ତି, କି ହୁଅନ୍ତା ଅବା ନୟନେ ଦେଖିଲେ କର୍ଣ୍ଣେ ଶୁଣିବାକୁ ଏ ରଙ୍ଗ ସେତେବେଳେ କି ର ଅର୍ଥ ହେଉଛି କଣ । ସେହି ଛାନ୍ଦର ପଞ୍ଚମ ପଦର 'କି ବା କାଳୀହତ କାଛେ ଉତଘାତ ଇନ୍ଦ୍ରଧନୁ ଉଦେ ଜଳରେ' ପଂକ୍ତିରେ ଥିବା କି ଉପମାବାଚକ ଶବ୍ଦ ରୂପେ ବ୍ୟବହୃତ । ପୁଣି ସେହି ପଦର ଦ୍ୱିତୀୟ ପାଦରେ କି କିମ୍ବା ଅର୍ଥରେ ପ୍ରଯୁକ୍ତ । 'କାଦମ୍ବିନୀ କୋଳେ କି ନବତମାଳେ କେକୀ ନାଚେ ମର୍ତ୍ତ ଭୋଳରେ ।' ପୁଣି ଯେତେବେଳେ କବି ଆଳୀକି, ବାଳୀକି ପ୍ରଭୃତି ଶବ୍ଦ ପ୍ରୟୋଗ କରିଛନ୍ତି, ସେତେବେଳେ କି ଦ୍ୱିତୀୟା କର୍ମକାରକର ଚିହ୍ନ ରୂପେ କାମ କରେ । ଅଥଚ ତୋଳିକି, ତୁଳିକ, ନିଉଛାଳିକି ବ୍ୟବହାରରେ ଏହା କେବଳ ଯତିପାତ ଦୃଷ୍ଟିରୁ ବ୍ୟବହୃତ ।

କାବ୍ୟରେ ବହୁଳ ଭାବେ ବ୍ୟବହୃତ ଶବ୍ଦମାଳାକୁ ବିଶ୍ଳେଷଣ କଲେ କେତୋଟି କଥା ମନକୁ ଆସେ । ଏ ସବୁ ଶବ୍ଦ ଓଡ଼ିଆ ଭାଷାରେ ହୁଏତ ଅତି ଆବଶ୍ୟକ । କରିବା, କହିବା, କଲା ପ୍ରଭୃତି କ୍ରିୟା ବ୍ୟତୀତ ଚଳନ୍ତି ଓଡ଼ିଆ ଭାଷାରେ କଥା କହି ହୁଏନାହିଁ । କି, କେ, କଉଁ, କେତେ, କେହିକାହା, କିଛି ଓ କାହିଁ ପ୍ରଭୃତି ଶବ୍ଦ କବିଙ୍କୁ କେବଳ ସହଜରେ ଯେ ମିଳି ପାରିଛି ତାହା ନୁହେଁ, ରସକଲ୍ଲୋଳ କାବ୍ୟର ପ୍ରକୃତି ଦୃଷ୍ଟିରୁ ଏ ସବୁର ଆବଶ୍ୟକତା ସମ୍ବନ୍ଧରେ ସନ୍ଦେହ ହୁଏ ନାହିଁ । ଜଣକ ପରେ ଜଣେ ଗୋପୀ କୃଷ୍ଣଙ୍କ ବିଷୟରେ ମନ୍ତବ୍ୟ ଦେଉଥିବାବେଳେ କେ, କଉଁ କାହା, କେହି ପ୍ରଭୃତି ଶବ୍ଦ ବାରମ୍ବାର ଆସିବା ସ୍ୱାଭାବିକ । ଉପମା ପରେ ଉପମା ସଂଯୋଜନା କରିବାପାଇଁ କବି କି କୁ ପ୍ରିୟ କରିଛନ୍ତି । ଶୃଙ୍ଗାର ରସର ଯଥୋଚିତ ପ୍ରକାଶ ପାଇଁ କାମ, କାମିନୀ, କନ୍ଦର୍ପ, କମନୀୟ, କୁଚ, କାନ୍ତ ଓ କାନ୍ତା ପ୍ରଭୃତି ଶବ୍ଦର ନିର୍ବାଚନ । ଉପମାନର କୋଠଭଣ୍ଡାରରୁ କବି କନକ, କମଳ, କଳାକର, କୁରଙ୍ଗ, କର୍ପୂର, କୋକିଳ ଓ କୁମ୍ଭ ଶବ୍ଦକୁ ସଂଗ୍ରହ କରିଛନ୍ତି । କବି ହେତୁ କବି ଶବ୍ଦ କବିଙ୍କର ପ୍ରିୟ । କର୍ମ ବା ଭାଗ୍ୟ ଉପରେ ଅଗାଧ ବିଶ୍ୱାସ ହେତୁ କାବ୍ୟର ବିଷୟ ବସ୍ତୁକୁ ଏହା ପ୍ରଭାବିତ କରିଛି । କାଳ, କୁଟିଳ, କଉତୁକ କରୁଣା, କୋମଳ, କୃପା ଓ କଷ୍ଟ ପ୍ରଭୃତି ଶବ୍ଦ କବିଙ୍କ ଜୀବନ ସହ ସଂପୃକ୍ତ । କୃଷ୍ଣ କଥା କହୁଥିବାରୁ କବି କୃଷ୍ଣ ଓ କଂସ ଶବ୍ଦର ବାରମ୍ବାର ବ୍ୟବହାର କରିଛନ୍ତି । ଏହିପରି ଦେଖିଲେ ବହୁଳ ଭାବେ ବ୍ୟବହୃତ ଶବ୍ଦସବୁ କାବ୍ୟର ଅନାବଶ୍ୟକ ଅଙ୍ଗ ନ ହୋଇ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ସାହାଯ୍ୟ କରିଛନ୍ତି ।

ଥରେ ବା ଦୁଇଥର ବ୍ୟବହୃତ ଶବ୍ଦ ସହ ବହୁଳ ଭାବେ ବ୍ୟବହୃତ ଶବ୍ଦ ସବୁର ତୁଳନା କଲେ ଏ ତର୍କ ଆହୁରି ସ୍ପଷ୍ଟ ହୁଏ । କାଚ, କୋଳି, କାହାଳି କଞ୍ଚନ, କାର୍ତ୍ତିକ, କଠାଉ, କୁଟୁମ୍ବ, କାଇଁଶ, କାଞ୍ଚନ, କଳାଭୂତ ଓ କମଳୀ ପ୍ରଭୃତି ଶବ୍ଦ ମଧ୍ୟ ଓଡ଼ିଆ ଭାଷାର ଅତି ପ୍ରଚଳିତ ଶବ୍ଦ । ବ୍ୟବହାରପାଇଁ ବିଶେଷ ପାଣ୍ଡିତ୍ୟର ଆବଶ୍ୟକ ହୁଏନାହିଁ । ଅଥଚ କାବ୍ୟରେ ଏ ସବୁର ଦରକାର ନାହିଁ । ତେଣୁ ସହଜରେ ମିଳୁଥିବା ଏ ସବୁ ଶବ୍ଦକୁ କବି ବାରମ୍ବାର ବ୍ୟବହାର କରିବାପାଇଁ ନିର୍ବାଚନ କରି ନାହାନ୍ତି । କୃଷ୍ଣକାକ, କଳଭ, କବନ୍ଧ, କପିଳ, କୂପଳ , କରବାଳ, ପୁତ୍ରୀ କୃତମୁଖ, କବୀଶଶିଶୁ ଓ କଙ୍କତିକା ପ୍ରଭୃତି ଅପ୍ରଚଳିତ ଶବ୍ଦଶ୍ରେଣୀଭୁକ୍ତ । ଏ ସବୁ କବିଙ୍କ ଶବ୍ଦପାଣ୍ଡିତ୍ୟର ପରିଚୟ ଦେଉଥିଲେ ହେଁ କବି ଏ ସବୁକୁ ଅନାଦର କରିଛନ୍ତି । କବିଙ୍କ କ ଶବ୍ଦମାଳାର ଚୟନରୁ

ଜଣାଯାଏ ଯେ କବି ପାଣ୍ଡିତ୍ୟ ଦେଖାଇବାର ପକ୍ଷପାତୀ ନ ଥିଲେ । କାବ୍ୟକୁ ସରଳ, ସହଜ, ସୁନ୍ଦର ଓ ସ୍ୱାଭାବିକ କରିବା ପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ସେଥିପାଇଁ ସେ ଅଭିଧାନରୁ ଶବ୍ଦ ସଂଗ୍ରହ ନ କରି ଲୋକମୁଖରେ ପ୍ରଚଳିତ ଶବ୍ଦମାଳାର ବହୁଳ ବ୍ୟବହାରକରି କାବ୍ୟକୁ କମନୀୟ କରିପାରିଛନ୍ତି । କଥାରେ ଅଛି, "ବାଇଗଣ, ବାଇଗଣ/ଏକା ବାଇଗଣ ତିନି ତିଉଣ/ରାନ୍ଧିବାରେ ଅଛି ଗୁଣ ।" ରସକଲ୍ଲୋଳରେ କବି ଦୀନକୃଷ୍ଣ ସେହି କୁଶଳ ରାନ୍ଧୁଣିଆ । ସାଧାରଣ ଓ ସହଜଲଭ୍ୟ ପରିବାରୁ ସେ ଅମୃତବ୍ୟଞ୍ଜନ ପ୍ରସ୍ତୁତ କରି ପରଷିଛନ୍ତି ।

ରସକଲ୍ଲୋଳରେ ମୋଟେ ତିନିଶ ପଚାଶଟି କ ଶବ୍ଦ । ତୁଳନାରେ ବ ଓ ପ ଶବ୍ଦମାଳାକୁ ଗ୍ରହଣ କରା ଯାଇପାରେ । ବ ଶବ୍ଦର ମୂଳ ଶବ୍ଦ ହେଉଛି ଦୁଇଶ ଏକସ୍ତରି । ଏଥିରୁ କେତୋଟି ଶବ୍ଦକୁ ବାରମ୍ବାର ବ୍ୟବହାର କରିବା ଫଳରେ ଦୁଇଶ ଏକସ୍ତରି ଶବ୍ଦ ବାରଶ ସତୁରି ହୋଇଛି । ସେହିପରି ଦୁଇଶ ପଚିଶିଟି ପ ଶବ୍ଦ କାବ୍ୟରେ ଏଗାରଶ ଅଣାଅଣୀ ଥର ପ୍ରକାଶ ପାଇଛି । ମୂଳ ସଂଖ୍ୟା ଦୃଷ୍ଟିରୁ କ ବ ଓ ପ ମଧ୍ୟରେ ବିଶେଷ ପାର୍ଥକ୍ୟ ନ ଥିଲେ ହେଁ ପ୍ରୟୋଗରେ କ ଶବ୍ଦ ସବୁ ବ ଓ ପ ତୁଳନାରେ ବହୁଗୁଣ ହୋଇ ପ୍ରକାଶ ପାଇଛି । ଏହାହିଁ କବିଙ୍କ କ ନିୟମର ଫଳ । ତେଣୁ ଜଣାପଡୁଛି କାବ୍ୟରେ କ ନିୟମ ପାଇଁ କବି ଯେଉଁ ପରିଶ୍ରମ କରିଛନ୍ତି, ତାହା କ ଆଦ୍ୟ ଶବ୍ଦମାଳାର ସଂଗ୍ରହ ପାଇଁ ନୁହେଁ, ଯଥୋଚିତ ବ୍ୟବହାର କରିବା ପାଇଁ । ସେଥିପାଇଁ ଗୋଟିଏ ଗୋଟିଏ ଶବ୍ଦ କାବ୍ୟର କଳେବର ଭିତରେ ବାରମ୍ବାର ଆସିଥିଲେ ହେଁ ପାଠକମାନଙ୍କୁ କଷ୍ଟ ଦିଏ ନାହିଁ । ବରଂ ରସକଲ୍ଲୋଳର ପାଠକ ଏହାର ମଧୁର କୋମଳ ପଦାବଳୀର ଭୂୟସୀ ପ୍ରଶଂସା କରିଛନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଭାଷାରେ ଦୀନକୃଷ୍ଣଙ୍କ ରସକଲ୍ଲୋଳ 'କାନ୍ତ ପଦ ସରୋଜର ଅମୃତରସ ।' କର୍ଣ୍ଣସୁଖ ପାଇଁ କ ବର୍ଣ୍ଣ ପ ବା ବ ପରି କୋମଳ ଓ ମଧୁର ନ ହେଲେ ହେଁ ଖ ବା ଘ ପରି କର୍କଶ ବା କଠୋର ନୁହେଁ । ଏହି ମଧ୍ୟସ୍ୱର କ ର ବହୁଳ ବ୍ୟବହାର ସତ୍ତ୍ୱେ ରସକଲ୍ଲୋଳ ଶତ୍ରୁର ଭାଷା ପରି କର୍କଶ ନ ହୋଇ ନିଜ ଲୋକର ଭାଷା ପରି ମଧୁର ହୋଇଛି । ମଧ୍ୟସ୍ୱରର ଗୁଣ ଗାନ କରି କବି ଦୀନକୃଷ୍ଣ ଲେଖିଛନ୍ତି,

କେବଳ ତୁମ୍ଭଲୋକ ବୋଲି ମୋତେ ।<br>
କହିଲେ ମଧ୍ୟସ୍ୱରେ ଯେତେ ଯେତେ ।<br>
କିଛି ପ୍ରବେଶ ହୁଅଇ କର୍ଣ୍ଣରେ<br>
କିଛି ରହଇ ତାହାଙ୍କ ଅଧରେ

କାମକର ବୀଣା
କ୍ୱଣନ ସେକାଳେ ହୋଇବ ଭଣା । ୩୪-୧୬

ଗୋପୀମାନଙ୍କ ମଧ୍ୟସ୍ୱର ପରି ରସକଲ୍ଲୋଳର ମଧୁର ପଦାବଳୀ ପାଠକଙ୍କୁ ମୋହିତ କରିଥାଏ । କବିଙ୍କ ପ୍ରୟୋଗ କୁଶଳତା ଯୋଗୁଁ କ ବର୍ଣ୍ଣର ଏ ପରିବର୍ତ୍ତନ । କବି କ ସ୍ୱରକୁ ଅନ୍ୟ କୋମଳ ସ୍ୱରସବୁ ସହ ସଂଯୋଗ କରି ଯେଉଁ ସ୍ୱରସଂଘାତର ସୃଷ୍ଟି କରିଛନ୍ତି, ତାହା କାବ୍ୟର ମାଧୁର୍ଯ୍ୟକୁ ବୃଦ୍ଧି କରିବାରେ ସାହାଯ୍ୟ କରିଛି ।

ରସକଲ୍ଲୋଳ ପ୍ରକୃତରେ କ ବର୍ଣ୍ଣର କଲ୍ଲୋଳ । ପଦ, ପାଦ, ଓ ପାଦ ବିଭାଗର ଆରମ୍ଭରେ କ ରହି କେବଳ ଯେ କ ଅନୁପ୍ରାସ ସୃଷ୍ଟି କରିବାରେ ସାହାଯ୍ୟ କରିଛି ତାହା ନୁହେଁ, ପଦ ମଧ୍ୟରେ କ ଶବ୍ଦମାଳା ବାରମ୍ବାର ଆସି କ ବର୍ଣ୍ଣର ମହିମା ଘୋଷଣା କରିଛନ୍ତି । ରସକଲ୍ଲୋଳରେ ଏପରି ବ୍ୟବହାରର ଅଜସ୍ର ଉଦାହରଣ ମିଳେ । ଦୃଷ୍ଟାନ୍ତ ପାଇଁ କେବଳ କେତୋଟିକୁ ଉଦ୍ଧାର କରାଯାଇଛି :

(୧) କଥା କହି କରି କେଉଁ ସୁଖ ଶିରୀ ଦିଅନ୍ତା କହ ହେ ସୁମତି ।
(୨) କିଅୂତ କରି କଲା ଯା କୋଣ ଦୃଷ୍ଟି । ୮-୮
(୩) କହୁଥାଅ  କି କରି କଥା ହେ ପଦ୍ମନେତ୍ର । ୭-୧୫
(୪) କଳୀପି କଳାପ କଳାୟେ  କଳାପ କମନୀୟ ବେଶ ଯାହାର । ୬-୩୫
(୫) କଳାକର କରେ କୁମୁଦିନୀ କରେ ଯେସନ ହଂସକୁ ରଖାଇ ।୬-୩୪

ଏଠିତ କେବଳ ପାଦର ଆରମ୍ଭରେ କ ଶବ୍ଦମାଳାର ପ୍ରାଚୁର୍ଯ୍ୟ । ବେଳେ ବେଳେ ପଦର ସମସ୍ତ ଶବ୍ଦ କ ରେ ଆରମ୍ଭ ।

କାଳିନ୍ଦୀଜଳ କଲ୍ଲୋଳ କଉତୁକକାରୀ
କଦମ୍ବ ତଳବିହାରୀ କଳବେଣୁଧାରୀ
କେକୀ ପୁଚ୍ଛ ମଣ୍ଡନ କନକ ନିଭ ବାସ ।
କାମକେଳି କରିବାକୁ କଲେ ଅଭିଳାଷ । ୭-୨

ଏହିପରି ଆଉ ଗୋଟିଏ ପଦ ହେଉଛି -

କୁଟିଳକୁନ୍ତଳା କାମକେଳିକଳା କୁଶଳା କମଳ ବଦନା ।
କରୀନ୍ଦ୍ର ଗମନା କରିକୁମ୍ଭସ୍ତନା କୁନ୍ଦକଳିଜିତ ରଦନା ।

ନିଜର ନାଁ ଯୋଗୁଁ ହେଉବା ନିଜର ଆରାଧ୍ୟ ଦେବତା ଶ୍ରୀକୃଷ୍ଣଙ୍କ ଯୋଗୁଁ ହେଉ, କବି କୃଷ୍ଣ ଦାସ କ ବର୍ଣ୍ଣ ପ୍ରତି ନିଜର ଆତ୍ମୀୟତା ଦର୍ଶାଇ ରସକଲ୍ଲୋଳରେ କ ବର୍ଣ୍ଣର ସାର୍ଥକ  ପ୍ରୟୋଗ କରି ନିଜ ଉକ୍ତି କ ଅକ୍ଷରେ ହୋଇଛି ନିୟମର ମୂଲ୍ୟ ରଖି ପାରିଛନ୍ତି । ଦୀନକୃଷ୍ଣଙ୍କ ପ୍ରତିଭାର କ ନିୟମ ଏକ ମୂକସାକ୍ଷୀ ।

# (୯)
# କାଳ ଓ କଉତୁକ

ରସକଲ୍ଲୋଳ ଅତୀତ ଓଡ଼ିଆ ସାହିତ୍ୟର ଅନ୍ୟତମ ଅମୂଲ୍ୟଗ୍ରନ୍ଥ । ପଇସା ନେଲାବେଳେ ସନଚିହ୍ନି, ଛାପଦେଖି, ବଜେଇ, ଗଣି, ଚଳନ୍ତି ଓ ଅଚଳନ୍ତି ବାରିନେଲା ପରି ସେଇ ସେଇ ମାନ୍ଧାତା ଅଷ୍ଟାଦଶ ଶତାବ୍ଦୀଠାରୁ ଏପର୍ଯ୍ୟନ୍ତ କେତେ ଚତୁର, ରସିକ, କବି, ସୁବୁଦ୍ଧି, ବୁଧ, ମେଧାବୀ ଓ ସମାଲୋଚକ ଏଇ କାବ୍ୟ ଉପରେ ନିଜ ନିଜର ବିଚାର, ବିବେଚନା ଓ ଦୃଷ୍ଟିଭଙ୍ଗୀ ପ୍ରୟୋଗ କରିଯାଇଛନ୍ତି । ସମାଲୋଚନା ନିକିତିରେ କେତେବେଳେ କେଉଁ ଗୁଣ ଗୁରୁହୋଇ ଉଠିଛି, ସେ କଥା ଠିକ୍ ଭାବରେ କହି ହେଉନି । କିନ୍ତୁ 'କଲ୍ଲୋଳ ପଦ୍ମ ଲାଳିତ୍ୟଂ' ଉକ୍ତି ସବୁ ସମାଲୋଚକର ଲେଖନୀରୁ ସମସ୍ୱରରେ ପ୍ରକାଶ ପାଇଛି ।

ରସକଲ୍ଲୋଳ ରଚନାର ମୂଳସୂତ୍ର ହେଉଛି, 'କଅ ଅକ୍ଷରେ ହୋଇଛି ନିୟମ' ବା 'କ ଅ ଅକ୍ଷରେ କଲି ଯେ ଗୀତ' । କବି କ ଅକ୍ଷରକୁ ଆଦ୍ୟରେ ରଖି ସମସ୍ତ କାବ୍ୟ ରଚନା କରିବାକୁ ସ୍ଥିର କଲାବେଳେ କଅ ଆଦ୍ୟ ବର୍ଣ୍ଣ ଶବ୍ଦ ସବୁ କବିର ଅତି ପ୍ରିୟ ହୋଇ ଉଠିଥିବେ । ଉତ୍କଳର ଗୃହେ ଗୃହେ ପରିଚିତ ଅତି ସାଧାରଣ ଶବ୍ଦଠାରୁ ଅଭିଧାନର ଅପ୍ରଚଳିତ ଶବ୍ଦମାଳା ପର୍ଯ୍ୟନ୍ତ ସମସ୍ତେ କବି ଦୃଷ୍ଟିକୁ ସମାନ ଭାବରେ ଆକୃଷ୍ଟ କରିଥିବେ । ସେଥିପାଇଁ କବି, କଥା, କୋଳ, କଅଁଳା, କାଚ, କାଇଁଚ, କାଚରା, କାଖ, କାନ୍ଧ, କପାଳ, କାଠି, କାଠ, କଠାଉ ପ୍ରଭୃତି ଅତି ସାଧାରଣ ଗ୍ରାମ୍ୟଶବ୍ଦ; କୁହାଁ କୁହାଁ, କରକର, କିରି କିରି ପ୍ରଭୃତି ଧ୍ୱନ୍ୟାନୁକରଣ ମୂଳକ ଶବ୍ଦ; କର, କରି, କବରୀ, କମଳ, କୋକିଳ, କଳାକର, କର୍ପୂର, କୁଙ୍କୁମ, କସ୍ତୁରୀ ପ୍ରଭୃତି ସର୍ବ କବିପ୍ରିୟ ଶବ୍ଦ; ପୁଣି କଙ୍କତିକା, କେଶରଞ୍ଜନୀ, କରବାଳପୁତ୍ରୀ, କ୍ରତୁଭୁଜ ପ୍ରଭୃତି ବହୁ ଅପ୍ରଚଳିତ କ୍ଲିଷ୍ଟ ଶବ୍ଦ ବ୍ୟବହାର କରିଛନ୍ତି । ଏପରିକି କର (କରିବା ଅର୍ଥରେ) ଶବ୍ଦ କରଇ, କରି, କରନ୍ତି, କରିବାକୁ, କରିବା, କରାଇ, କରିବି, କରଇଁ, କରନ୍ତେ, କରୁଥାଇ ପ୍ରଭୃତି ବିଭିନ୍ନ କ୍ରିୟା ରୂପରେ, ପୁଣି କୃତ୍ୟ, କାରକ, କର୍ତ୍ତବ୍ୟ, କର୍ମ, କର୍ମଣୀ ପ୍ରଭୃତି ବିଭିନ୍ନ ବିଶେଷ୍ୟ ରୂପରେ ଆତ୍ମପ୍ରକାଶ କରିଛି । ଏସବୁ ଶବ୍ଦ ସୃଷ୍ଟିର କଥା । କବି କାବ୍ୟରେ କଳାର ପରିଚୟ ଦେବାକୁ ଯାଇ ଗୋଟିଏ ଗୋଟିଏ ଶବ୍ଦକୁ ବିଭିନ୍ନ ଅର୍ଥରେ ବ୍ୟବହାର କରିଛନ୍ତି । କଳାପ, କେତେବେଳେ

ଭୂଷଣ, କେତେବେଳେ ପୁଚ୍ଛ, ପୁଣି କେତେବେଳେ ସମୂହ । ସେଇପରି କର (କରିବା, ହାତ, ଖଜଣା, କିରଣ); କୋଳ (କ୍ରୋଡ଼, ଘୁସୁରୀ); କମଳ (ଜଳପଦ୍ମ) ପ୍ରଭୃତି ଶବ୍ଦ ଗୋଟିଏ ଗୋଟିଏ ଦୃଷ୍ଟାନ୍ତ । ପକ୍ଷାନ୍ତରରେ ପାନିଆଁ ପାଇଁ କଙ୍କତିକା ଓ କେଶରଞ୍ଜନୀ; ପଦ୍ମପାଇଁ କଞ୍ଜ, କମଳ ଓ କାସାର; କଇଁ ପାଇଁ କୁମୁଦ, କହ୍ଲାର, କୋକନଦ ଓ  କଇରବ; ଚନ୍ଦ୍ର ପାଇଁ କଳାକର, କଳାନିଧି ଓ କଉମୁଦୀ ପ୍ରଭୃତି କଅ ଆଦ୍ୟବର୍ଣ୍ଣ ଶବ୍ଦ ସବୁକୁ ଦେଖିବାକୁ ମିଳିଥାଏ । ପୁଣି କବି ଗୋଟିଏ ଗୋଟିଏ କଅ ଆଦ୍ୟ ବର୍ଣ୍ଣ ଶବ୍ଦକୁ ମୂଳରେ ରଖି, ସେଇଥିରେ ଶବ୍ଦ ସଂଯୋଗକରି ବହୁ ଶବ୍ଦର ସୃଷ୍ଟି କରିଛନ୍ତି ।  କନକ ଶବ୍ଦ, କନକମହୀ, କନକ ବଲ୍ଲରୀ, କନକ ପଲ୍ୟଙ୍କ,କନକ ମହୀଧର,କନକ କାନ୍ତି, କନକ ନିଭପତନୀ, କକ କମଳ, କନକ ପଲ୍ୟଙ୍କ, କନକ ମହୀଧର, କନକ କାନ୍ତି, କନକ ପିଭପତନୀ, କନକ କମଳ, କନକ ଗୌରୀ, କନକଗିରି ରୂପରେ ପ୍ରକାଶ ପାଇ ସମସ୍ତ  କାବ୍ୟକୁ କନକମୟ କରିଦେଇଛି । ସେଇପରି କାମ ଶବ୍ଦକୁ ମୂଳରେ ରଖି କାମସିନ୍ଧୁ, କାମଦୁହା, କାମରୂପୀ, କାମବ୍ରହ୍ମ ଓ କାମଧନୁଜିତା; ପୁଣି କମଳ ଶବ୍ଦକୁ ମୂଳରେ ରଖି, କମଳ, ପତ୍ରାକ୍ଷ, କମଳମଣ୍ଡକ, କମଳକୁମାର ପ୍ରଭୃତି  ଶବ୍ଦ ରସକଲ୍ଲୋଳକୁ ଶବ୍ଦକଲ୍ଲୋଳରେ ପରିଣତ କରିଛି । ଏଇ ଶବ୍ଦ  ସୃଷ୍ଟି ଓ ଶବ୍ଦ ସଞ୍ଚୟନ ପ୍ରକ୍ରିୟାରେ, ଏପରି ବହୁ ଶବ୍ଦ ଅଛନ୍ତି, ଯେଉଁମାନେ  କବିର ମନ, ପ୍ରାଣ ଓ ହୃଦୟକୁ ଅଭିଭୂତ କରି କାବ୍ୟ ମଧ୍ୟରେ ବାରମ୍ବାର ଆତ୍ମପ୍ରକାଶ କରିଛନ୍ତି । ସେଗୁଡ଼ିକ କବି ଜୀବନଦର୍ଶନ ସହ ଅତି ନିବିଡ଼ ଭାବରେ ପରିଚିତ । ରସକଲ୍ଲୋଳରେ କାଳ, କୃଷ୍ଣ ଓ କଉତୁକ ଏଇପରି  ତିନୋଟି ଶବ୍ଦ ।

ଶ୍ରୀକୃଷ୍ଣ କାବ୍ୟର ପ୍ରଧାନ ନାୟକ ପୁଣି କବିର ଆରାଧ୍ୟ ଦେବତା । ରସକଲ୍ଲୋଳ ରଚନାର ମୂଳ ଉଦ୍ଦେଶ୍ୟ ହେଉଛି, ଶ୍ରୀକୃଷ୍ଣ ନାମକୀର୍ତ୍ତନ, କୃଷ୍ଣକଥାଗାନ ଓ କୃଷ୍ଣ ରୂପଧ୍ୟାନ (୧୧-୧୬) । କବିଙ୍କ ଦୃଷ୍ଟିରେ, କୃଷ୍ଣ ହେଉଚି ଜଗତ ଓ ଜଗତ ହେଉଛି କୃଷ୍ଣମୟ (୧୧-୯୭) । ମୂର୍ତ୍ତିମନ୍ତ ଅମୃତବିନ୍ଦୁ ସଦୃଶ ଶ୍ରୀକୃଷ୍ଣଙ୍କ ବିଚିତ୍ର ମହିମା ରସକଲ୍ଲୋଳରେ ସ୍ରୋତ ରୂପରେ ପ୍ରବାହିତ (୫-୩୩) । ସେତେବେଳେ କାବ୍ୟ ମଧରେ କୃଷ୍ଣ ନାମ  ବାରମ୍ବାର ଉଚ୍ଚାରିତ ହେବା ସ୍ୱାଭାବିକ । କିନ୍ତୁ କାଳ ଓ କଉତୁକ ଶବ୍ଦର କଥା ସ୍ୱତନ୍ତ୍ର । ଏଇ ଦୁଇଟି ଶବ୍ଦର କୃଷ୍ଣ କଥା ସହ କୌଣସି ପ୍ରତ୍ୟକ୍ଷ ସଂପର୍କ ନାହିଁ । ଅନ୍ୟ ପକ୍ଷରେ

କାଳକୁ ସାର୍ବଭୌମ ସ୍ୱୀକାର କରୁଥିବା ଗ୍ରନ୍ଥସବୁ ବୈଷ୍ଣବ ରସିକମାନଙ୍କ ଦ୍ୱାରା ଅନାଦୃତ । ଅଥଚ କବିଙ୍କର ଏ ଦୁଇଟି ପ୍ରିୟ ଶବ୍ଦ, ଏପରିକି କାବ୍ୟର ଗତି ଏହି ଦୁଇଟି ଶବ୍ଦଦ୍ୱାରା ମୁଖ୍ୟ ଭାବରେ ନିୟନ୍ତ୍ରିତ ମନେହୁଏ, ସତେ ଯେପରି ରସକଲ୍ଲୋଳର ଶ୍ରୀକୃଷ୍ଣ ଗୋଟିଏ ପାଖରେ 'କାଳ' ଓ ଅନ୍ୟପକ୍ଷରେ 'କଉତୁକ'କୁ ନେଇ ଗତି କରିଛନ୍ତି । ତାଙ୍କ ଜୀବନରେ ଯାହା ଘଟିଯାଉଛି ସେ ସବୁ କାଳରେ ଘଟିଛି ଓ ସେ ଯାହା କରିଛନ୍ତି ସବୁ କଉତୁକରେ କରିଛନ୍ତି । କାଳଶବ୍ଦ ବହୁ ଅର୍ଥଦ୍ୟୋତକ । ମ୍ୟାକ୍‌ଡୋନାଲ ଏଇ ଶବ୍ଦର ବିଭିନ୍ନ ବ୍ୟବହାରର ଉଣେଇଶିଟି ଶବ୍ଦର ସନ୍ଧାନ ଦିଅନ୍ତି । ଏଇ ସବୁ ଅର୍ଥକୁ ସ୍ଥୂଳତଃ ସମୟ, କଳା, ମୃତ୍ୟୁ ଓ ମୃତ୍ୟୁଦେବତା ଏଇ ଚାରୋଟି ବିଭାଗ କରାଯାଇ ପାରେ । ବିଚାର କରି ଦେଖିଲେ ଏଇ ସଂପୂର୍ଣ୍ଣ ସ୍ୱତନ୍ତ୍ର ଚାରୋଟି ବିଭାଗ ଏକ ରୂପର ଚତୁର୍ଦ୍ଧାମୂର୍ତ୍ତି । ଯମ କହିଲେ ଆମେ କଳା ଓ ମୃତ୍ୟୁ ଦୁଇଟି କଥା ବୁଝୁ । ଅନ୍ୟପକ୍ଷରେ ଯମ ହେଉଚି କାଳଗତିର ପ୍ରତୀକ ଦେବତା । ଲୌକିକ ବ୍ୟବହାରରେ କାଳ ଶବ୍ଦରୁ ଚାରୋଟି ବିଭିନ୍ନ ଅର୍ଥ ଦେଖି ହେଉଥିଲେ ବି ସମୂହ ଦୃଷ୍ଟିରେ ଏହା ହେଉଛି ଏକ ଓ ଅଭିନ୍ନ ଅର୍ଥ ବ୍ୟାକରଣରେ କାଳକୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଭାଗରେ ବିଭକ୍ତ କରାଯାଇଥାଏ । ଏହାର ଉତ୍ତରରେ ମାଧ୍ୟମିକ କାରିକାର ଲେଖକ କହିଛନ୍ତି,

ଅନାଗତ ମତିକ୍ରାନ୍ତଂ ବର୍ତ୍ତମାନ ମିତିକ୍ରୟଂ
ସର୍ବତ୍ର ଚ ଗତିର୍ନାସ୍ତି ଗଚ୍ଛତୀତି କି ମୁଚ୍ୟତେ ।

ନୈୟାୟିକମାନେ କାଳକୁ ଦ୍ରବ୍ୟ ବୋଲି କହିଥାନ୍ତି । କିନ୍ତୁ ପ୍ରକୃତରେ କାଳକୁ ଦ୍ରବ୍ୟ ନ କହି ଦ୍ରବ୍ୟ - ନିହିତ ଶକ୍ତିରୂପେ ଗ୍ରହଣ କରିବା ଉଚିତ । ସେତେବେଳେ କାଳୋହି 'କାଳୋହି ଜଗଦାଧାରଃ କଳାଧାରୋ ନ ବିଦ୍ୟତ' ଉକ୍ତି ସାର୍ଥକ ହୋଇ ଉଠେ । କବି ଦୀନକୃଷ୍ଣଙ୍କ ବ୍ୟବହୃତ କାଳ ଶବ୍ଦ ଏଇ ବିସ୍ତୃତ ପରିସରର ନିର୍ଦ୍ଦେଶକ । ତାଙ୍କ ମତରେ କାଳ ହେଉଚି ସବୁ । ସମସ୍ତେ ତାରି ଆୟତ୍ତାଧୀନ । (୬-୧୦, ୨୬-୧୫) । କାଳ ଗ୍ରାସିଲେ ମଣିଷର ବୁଦ୍ଧି ହଜିଯାଏ, (୨୭-୧୬) । ସେ ପାଗଳପରି ବିକୃତବାଣୀ କହେ, (୨୫-୬); ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ସବୁଠି କାଳର ଗତି (୨୬-୧୪), ତେଣୁ କେବଳ ମଣିଷ ନୁହଁନ୍ତି, ନିଜେ ଭଗବାନ ଶ୍ରୀକୃଷ୍ଣ ମଧ୍ୟ ଏହାର ଅଧୀନ । କାଳବଶରେ ତାଙ୍କୁ ବହୁ କାର୍ଯ୍ୟ କରିବାକୁ ହୋଇଛି । ରସକଲ୍ଲୋଳ କାବ୍ୟରେ ଶ୍ରୀକୃଷ୍ଣଙ୍କ ଅବତାର, କଂସ ପ୍ରତି

ଶତ୍ରୁତା ଓ ତାର ପରିଣତି ସବୁ କାଳଦ୍ୱାରା ସାଧିତ ହେଉଛି (୨୬-୧୫) । ସେତେବେଳେ ଶ୍ରୀକୃଷ୍ଣ ନୁହଁନ୍ତି କି ନୀଳାଚଳବାସୀ ଶ୍ରୀଜଗନ୍ନାଥ ନୁହଁନ୍ତି, ନିଜେ କାଳହିଁ ସାର୍ବଭୌମ । ସେଥିପାଇଁ ଦୀନକୃଷ୍ଣଙ୍କ କାବ୍ୟର ପ୍ରତି ପୃଷ୍ଠାରେ ଯାହା ଘଟିଯାଇଛି ସବୁ କାଳ ଗତିରେ (କାଳେ) ଘଟିଛି । ଶ୍ରୀକୃଷ୍ଣଙ୍କ ଜନ୍ମପରେ ବସୁଦେବଙ୍କ ଚରଣରୁ ଲୌହ ଶୃଙ୍ଖଳ ଫିଟିଯିବାରେ କବି କହୁଛନ୍ତି, 'କାଳେ ସେ ଚରଣୁ ଫିଟିଲା' (୨-୮) । ଶ୍ରୀକୃଷ୍ଣଙ୍କ ଅନିନ୍ଦ୍ୟସୁନ୍ଦର ରୂପମାଧୁରୀ ବର୍ଣ୍ଣନା କରିବାକୁ ଗଲାବେଳେ କବିଙ୍କୁ ଚିରପ୍ରଚଳିତ ଉପମା ସବୁ ଭଲ ଲାଗିନି । କିନ୍ତୁ କବି କାବ୍ୟ ମଧ୍ୟରେ ଏ କଥା କେଉଠି କହି ନାହାନ୍ତି । ସେ କୁହନ୍ତି, 'କାଳେ ସବୁ ସେ ଆସି ହେଲାମିଛ' (୩-୪୨) । ରସକଲ୍ଲୋଳର କାଳ ଶବ୍ଦର ପ୍ରୟୋଗରେ ଏପରି ଗୁରୁତ୍ୱ ସବୁଠି ମିଳେ । ପୁଣି ଅତି ଗୁରୁତ୍ୱ ଦେବା ଫଳରେ ବା ବହୁଳ ବ୍ୟବହାର ହେତୁରୁ ଏଇ ଶବ୍ଦ ଅନେକ ସ୍ଥଳରେ ଅର୍ଥହୀନ ହୋଇପଡ଼ିଛି ଓ ଶବ୍ଦପ୍ରତି କବିର ଅତିଶ୍ରଦ୍ଧାର ପରିଚୟ ଦେଇଛି । କାଳ କେବଳ ନିର୍ଦ୍ଦିଷ୍ଟ ସମୟ ବା ଋତୁ ନୁହେଁ, ମୃତ୍ୟୁ ନୁହେଁ ବା ମୃତ୍ୟୁଦେବତା ନୁହେଁ, କଂସ ପକ୍ଷରେ ନିଜେ ଶ୍ରୀକୃଷ୍ଣ ହେଉଛନ୍ତି କାଳ ସ୍ୱରୂପ । 'କାଳ ମୋର ଜନମିଛି ତୁମ୍ଭ କୋଳରେ' (୨-୧୧) । ଶ୍ରୀକୃଷ୍ଣଙ୍କ ମଥୁରାଗମନ ପରେ କନ୍ଦର୍ପ ଗୋପୀମାନଙ୍କୁ କାଳସ୍ୱରୂପ ଗ୍ରାସ କରିଛି (୨୧-୨୧), ପୁଣି ବର୍ଷାଋତୁ ବର୍ଣ୍ଣନା କରିବା ପ୍ରସଙ୍ଗରେ କାଳ, 'କି ଅବା ବିଷ୍ଣୁ ସମାନ ସର୍ବବ୍ୟାପୀ ଅଛିଦ୍ର ନିବିଡ଼ ମୟେ' ହେବା ସଙ୍ଗେ ସଙ୍ଗେ 'କାଳପ୍ରାୟେ ବିକରାଳ' ହୋଇ ଉଠିଛି (୧୩-୧୯) । ବିରହରେ ବସନ୍ତ କାଳ ମଧ୍ୟ ଯୋଗୀମାନଙ୍କ ପାଇଁ କାଳ ହୋଇଯାଏ (୧୬-୧) । ଏ ସବୁ ପ୍ରୟୋଗରେ କାଳ ଶବ୍ଦ ଶ୍ରୀକୃଷ୍ଣ,କନ୍ଦର୍ପ, ବର୍ଷା,ବସନ୍ତ ପ୍ରାୟେ ପ୍ରତୀତ ହେବା ସଙ୍ଗେ ସଙ୍ଗେ ଏକ ସର୍ବବ୍ୟାପୀ ତଥା ସର୍ବଗ୍ରାସୀ ଅର୍ଥ ପରିଗ୍ରହ କରି କାବ୍ୟ, କବି, ପୁଣି କବିର ଦେବତା ସମସ୍ତଙ୍କୁ ଗ୍ରାସକରିଛି । ସେତେବେଳେ 'କାଳବଳୟେ, କାହାରି ଆୟତ ନୁହଁଇ' କବିର ଏ ବାଣୀ ସୁସ୍ପଷ୍ଟ ଓ ଅର୍ଥଯୁକ୍ତ !

କାଳ ଶବ୍ଦ ପରି କଉତୁକ ଶବ୍ଦ ରସକଲ୍ଲୋଳର ଏକ ବିଚିତ୍ର ସୃଷ୍ଟି । ସାଧାରଣତଃ କଉତୁକ ବା କଉତୁକ କଥା କହିଲେ, ରସକଲ୍ଲୋଳର ସୁଯୋଗ୍ୟ ସଂପାଦକଙ୍କ ପରି ସମସ୍ତେ ମନମଉଜିଆ ଅର୍ଥହିଁ ଗ୍ରହଣ କରିବେ । ଖୁବ୍ ବେଶୀରେ ଉତ୍କଣ୍ଠା, ସ୍ୱାର୍ଥ, ଆଗ୍ରହ ବା ବିସ୍ମୟ ପ୍ରଭୃତି ଅର୍ଥ ନିଆଯାଇ ପାରେ । କିନ୍ତୁ ରସକଲ୍ଲୋଳରେ କଉତୁକ କେବଳ ଆକ୍ଷରିକ ଦୃଷ୍ଟିରୁ ଏତେ ମହତ୍ତ୍ୱପୂର୍ଣ୍ଣ ନୁହେଁ, ଏହାର ବ୍ୟବହାରରେ କାବ୍ୟରେ ଏକ ବିଶିଷ୍ଟ ଓ ସ୍ୱତନ୍ତ୍ର ଶୈଳୀର ସୃଷ୍ଟି

ହୋଇଛି । ମନେହୁଏ ସତେ ଯେପରି ଏଇସବୁ ସାଧାରଣ ଆକ୍ଷରିକ ଅର୍ଥ କଉତୁକ ଶବ୍ଦର ଅନ୍ତର ବାଣୀ ପ୍ରକାଶ କରିବାକୁ ଅସମର୍ଥ । ସେଥିପାଇଁ ରସକଲ୍ଲୋଳ ପଢ଼ିଲାବେଳେ ଏଇସବୁ ସାଧାରଣ ଅର୍ଥରେ ମନ ବୁଝେନି । ସବୁବେଳେ କିଛିନା କିଛି ଅଭାବ ରହିଗଲା ପରି ଜଣାପଡ଼େ । ରସକଲ୍ଲୋଳ କାବ୍ୟର ପ୍ରଧାନ ନାୟକ ଶ୍ରୀକୃଷ୍ଣ ହେଉଛନ୍ତି, 'କଉତୁକ କଥାମାନଙ୍କରେ ରସିକ', ପୁଣି 'କାଳନ୍ଦୀ-ଜଳ-କଲ୍ଲୋଳ-କଉତୁକକାରୀ' (୧-୧୨, ୬-୨); ନାୟିକା ଗୋପୀ ହେଉଛନ୍ତି, କଉତୁକ ସୀମା (୧୫-୧୩); କାମ ହେଉଛି କଉତୁକୀ (୨୦-୪, ୨୭-୧୩, ୧୭-୧୭) ଓ ନିଜେ କାବ୍ୟ ହେଉଛି 'କଉତୁକ କଥା ରଚନା' (୯-୧୮) । ଶ୍ରୀକୃଷ୍ଣ ଗୋପପୁରରେ ଅବତୀର୍ଣ୍ଣ ହୋଇ ପଶୁପାଳକ ବୋଲାଇବା ପ୍ରସଙ୍ଗରେ କେବଳ କଉତୁକ ହିଁ ପୂରିରହିଛି । 'କଉତୁକେ ବୋଲାଇବା ପଶୁପାଳକ' (୧-୧୫) । ଗୋପପୁରରେ ଦିନ କଟାଇବା ସମୟକୁ ଲକ୍ଷ୍ୟପରି କବି କହିଛନ୍ତି, 'କଉତୁକେ ଦିନ ନେଲେ ଶ୍ରୀରଙ୍ଗ' (୫-୧୨) । ତାଙ୍କ ରୂପ କଳ୍ପନା କଲାବେଳେକୁ କବିଙ୍କ ମନରେ ଠିକ୍ ସେଇ ଧାରଣା । 'କେତୋକାଳ ବିହି କଉତୁକ ବହି ଗଢ଼ିଲା ଏ ରୂପ ରତନ ।' (୬-୮) ବସ୍ତ୍ର, ପ୍ରଳମ୍ବ ବଧ, ଗୋଧନ ରକ୍ଷା, ବନ ବିହାର, ପୁର ପ୍ରବେଶ, ରାଧା ଓ ଗୋପୀମାନଙ୍କର ଉକ୍ତି ପ୍ରତ୍ୟୁକ୍ତି, ଶ୍ରୀକୃଷ୍ଣଙ୍କ ହାସ ପରିହାସ, ସବୁଠି କଉତୁକ । (୮) ଶ୍ରୀକୃଷ୍ଣ ଓ ଗୋପୀମାନଙ୍କର କନ୍ଦର୍ପଲୀଳାରେ ଏଇ ଶବ୍ଦର ମାଧୁର୍ଯ୍ୟ ଆହୁରି ସ୍ପଷ୍ଟ ହୋଇ ଉଠିଛି । ହିମ ଋତୁର ରାତ୍ରୀରେ ଶ୍ରୀକୃଷ୍ଣ କଳାବତୀମାନଙ୍କର ପ୍ରୀତି ପାଇବାପାଇଁ କଉତୁକରେ ବୁଲୁଥାନ୍ତି । ଗୋପପୁରରେ ପ୍ରବେଶ କରି କଉତୁକରେ ପରିହାସ କରନ୍ତି, ପୁଣି ବିଦାୟ ନେଲାବେଳେ କଉତୁକରେ ଚୁମ୍ବମେଲାଣି ମାଗି ଚାଲିଯାଆନ୍ତି (୧୧-୭୨) । ଗୋପ ବାଳିକାର ଶ୍ରୀମୁଖ ଚୁମ୍ବନ, ଅଙ୍ଗ ଆଲିଙ୍ଗନ, ଚିବୁକ ସ୍ପର୍ଶ ଓ ସେମାନଙ୍କ ପ୍ରତି କୋମଳଭାଷା ପ୍ରୟୋଗରେ ଶ୍ରୀକୃଷ୍ଣଙ୍କ କଉତୁକହିଁ ବିସ୍ତୃତି ଲାଭକରେ (୨୩-୨୮) । ସେଥିପାଇଁ ରସକଲ୍ଲୋଳରେ ଶ୍ରୀକୃଷ୍ଣଙ୍କ ବାଳଲୀଳାର ପ୍ରକୃତ ଅଙ୍ଗ ହେଉଛି କଉତୁକ । ମଥୁରା ଗଲାବେଳେ ଶ୍ରୀକୃଷ୍ଣ ଗୋପୀମାନଙ୍କୁ ସାନ୍ତ୍ୱନା ଦେଇକହୁଛନ୍ତି, ''କଉତୁକ ଦେଖିବୁ ରାଜା ଆଜ୍ଞା ରଖିବୁ ପ୍ରବେଶ ହେବୁ ତୁମ୍ଭ ପାଶେ'' (୨୬-୧୭), ଅକ୍ରୁର ରଥରେ ବସି ଆସିଲାବେଳେ ସେ କଉତୁକରେ ଆସିଛନ୍ତି (୨୬-୩୦) । ମଥୁରା ଦାଣ୍ଡରେ କଉତୁକ ପାଇ ଲୋକେ, ଅମରେ ତାଙ୍କର ଶୋଭା ଦେଖୁଛନ୍ତି (୨୭-୪, ୨୮-୨୦) । ଶ୍ରୀକୃଷ୍ଣଙ୍କ ମଥୁରା ଆଗମନରେ 'କଉତୁକେ ମାମୁଁ ମୁଖ ଦେଖିବା ପାଇଁ'

(୨୯-୩) ଭାବନା ସ୍ପଷ୍ଟ ସବୁଠି କଉତୁକ । ରସକଲ୍ଲୋଳ ପ୍ରକୃତରେ କଉତୁକର କଲ୍ଲୋଳ । କବି ମଧ୍ୟ ଏକଥା ସ୍ୱୀକାରକରି କହିଛନ୍ତି, 'କେତେ କଉତୁକ ଅଛନ୍ତି ଏଥି' (୩୪-୨୪) ।

କାଳ ଶବ୍ଦର ସର୍ବଗ୍ରାସୀ ଶକ୍ତି ଓ କଉତୁକ ଶବ୍ଦର ମର୍ମବାଣୀ କବି ଜୀବନୀରେ ମଧ୍ୟ ପ୍ରତିବିମ୍ବିତ । କିମ୍ବଦନ୍ତୀରୁ ତଥା ରସକଲ୍ଲୋଳରେ କବି ଜୀବନୀକୁ ପ୍ରତିଧ୍ୱନିତ କରୁଥିବା ଅସଂଲଗ୍ନ ପଂକ୍ତି ସବୁରୁ ଯେଉଁ ପ୍ରମାଣ ମିଳେ ସେଥିରୁ ଜଣାଯାଏ କବିଙ୍କ ସାଂସାରିକ ଜୀବନ ସୁଖମୟ ନ ଥିଲା । ଛାର ପୋଡ଼ାପେଟ ପାଇଁ ଭଗତି ବାଟ ଛାଡ଼ି ତାଙ୍କୁ ଅନେକ ରୂପରେ ଆତ୍ମପ୍ରକାଶ କରିବାକୁ ହେଲା । ସେତିକି ନୁହେଁ, ଯେଉଁ ନୀଳାଚଳ ନାଥଙ୍କୁ ସେ ନିଜର ଆଜ୍ଞାସୁର ରୂପେ ବନ୍ଦନା କରି ରସକଲ୍ଲୋଳର ଶୁଭ ଦେଇଥିଲେ, ସେଇ ଜଗନ୍ମିତା ଜଗନ୍ନାଥ କବିଙ୍କୁ ନିଜର ବିଜେସ୍ଥଳୀ ନୀଳାଚଳରେ ରଖିବାକୁ ସକ୍ଷମ ହେଲେ ନାହିଁ । କବି ବା କାହାକୁ ଦୋଷ ଦେବେ, ଦୋଷ ଦେଲେ ନିଜର ଭାଗ୍ୟକୁ, କର୍ମକୁ ଓ କପାଳକୁ । ଜୀବ କର୍ମବଶ ହେଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କେହି ରଖିବାକୁ ସମର୍ଥ ହେବ ନାହିଁ (୧୧-୪, ୫, ୬, ୭) । ସେଥିପାଇଁ କବି ବାଧ୍ୟ ହୋଇ ନିଜ ଜୀବନ ଉପରେ କାଳର ପ୍ରଭାବକୁ ଗ୍ରହଣ କରି ନେଇଛନ୍ତି । ସାଂସାରିକ ନିର୍ଯ୍ୟାତନାରେ କବିଙ୍କ ସ୍ଥୂଳ ଶରୀର ପ୍ରପୀଡ଼ିତ ସତ, କିନ୍ତୁ କବିର ମନ ଶ୍ରୀକୃଷ୍ଣ ନାମାମୃତ ପାନରେ ନିମଗ୍ନ । ସେ ଜଗତର ପ୍ରତି ଧୂଳିକଣାରେ ଶ୍ରୀକୃଷ୍ଣଙ୍କ ଲୀଳା କଉତୁକ ଦେଖି ମୁଗଧ । ମନ, ବଚନ, କର୍ତ୍ତବ୍ୟ, ସବୁ ସେଇ ସର୍ବବ୍ୟାପୀ ତ୍ରୈଲୋକ୍ୟନାଥ, ଭୁବନାନନ୍ଦ ଶ୍ରୀକୃଷ୍ଣଙ୍କ ଚରଣ ତଳେ ଅର୍ପଣ କରିଦେଇ ତୃପ୍ତ ଚିତ୍ତରେ ତାଙ୍କରି ମହିମା ଗାନ କରି କବି ନିଜକୁ କୃତାର୍ଥ ମନେ କରିଛନ୍ତି । ପେଟାର ଜ୍ୱାଳା ଶ୍ରୀକୃଷ୍ଣଙ୍କ ନାମାମୃତରେ ନିର୍ବାପିତ ହୋଇଛି ।

ରସକଲ୍ଲୋଳରେ ଶବ୍ଦର ଲୀଳା ଓ ଶବ୍ଦ ଲୀଳାରେ କାଳ ଓ କଉତୁକର ନୃତ୍ୟ ରସକଲ୍ଲୋଳକୁ କବିଙ୍କ ଅନ୍ୟାନ୍ୟ କାବ୍ୟଠାରୁ ସ୍ୱତନ୍ତ୍ର କରି ଦେଇଛି । ଦୀନକୃଷ୍ଣଙ୍କର ସମଗ୍ର କାବ୍ୟ ଧାରଣାର ଆଲୋଚନାରେ ଏହି ଶବ୍ଦଗୁଡ଼ିକର ଗୁରୁତ୍ୱ ସ୍ୱୀକାର୍ଯ୍ୟ । ପୁଣି ଏହି ବିଚାର ଯେ ରସକଲ୍ଲୋଳର କବି ଓ ରସ ବିନୋଦରେ ଉଲ୍ଲେଖ ଥିବା ଅନ୍ୟାନ୍ୟ କାବ୍ୟମାନଙ୍କର କବିଙ୍କର ସଂପର୍କ ପ୍ରତି ନୂତନ ଆଲୋକପାତ କରିବ, ସନ୍ଦେହ ନାହିଁ ।

## (୧୦)
## କହିବି କେତେ

ରସକଲ୍ଲୋଳକୁ ପଢ଼ି ନିଜ ଦୃଷ୍ଟିରୁ ବିଚାର କରିବା ପୁଣି କବି ଦୃଷ୍ଟିରୁ ପଢ଼ି ବିଚାର କରିବାରେ ପାର୍ଥକ୍ୟ ଅଛି । ଆଜିର ଅନୁଭୂତି କାଲି ଆସେ ନାହିଁ। ସେତେବେଳେ କବି ହୃଦୟକୁ ଅବଲମ୍ବନ କରି ଅଷ୍ଟାଦଶ ଶତାବ୍ଦୀରେ ଜାତ ହୋଇଥିବା ରସକଲ୍ଲୋଳକୁ ପଢ଼ି ବୁଝିବାରେ ସମୟହିଁ ପ୍ରଧାନ ଅନ୍ତରାୟ । ସେବକାଙ୍କର ବୈଷ୍ଣବ ମନୋବୃତ୍ତି ନେଇ କାବ୍ୟ ରଚନା, କାବ୍ୟ ମଧ୍ୟରେ ଧର୍ମାର୍ଥ କାମ ମୋକ୍ଷ ଚାରିର ବ୍ୟବସ୍ଥା, ପୁଣି କର୍ଣ୍ଣମନ ଦେଇ ଶ୍ରଦ୍ଧାବନ୍ତ ହୋଇ ଶୁଣୁଥିବା ପାଠକ ପ୍ରତି ଭବଭୟ ଦୁଃଖ ନିବାରଣର ଆସ୍ଥା ଦେଇ, ଏକପକ୍ଷରେ ଯଶପ୍ରାପ୍ତି ଓ ଅନ୍ୟ ପକ୍ଷରେ ନାଶଯିବାର ଭୟ ଦେଖାଇ କାବ୍ୟ ପଢ଼ାଇବା ଯୁଗ ଆଉ ନାହିଁ । ସେଥିପାଇଁ ରସକଲ୍ଲୋଳ ପରି ପ୍ରାଚୀନ କାବ୍ୟ ଆଲୋଚନା କଲାବେଳେ କବିର ଅତୀତ ପରମ୍ପରା ପୁଣି ଆଧୁନିକ ପାଠକର ଅଭିନବ ଦୃଷ୍ଟିକୋଣ ଉଭୟ ଦିଗ ପ୍ରତି ଦୃଷ୍ଟିରଖି ବିଚାରକରିବା ଆବଶ୍ୟକ ।

କବି ଦୀନକୃଷ୍ଣ ରସକଲ୍ଲୋଳ ରଚନା କରିସାରି ଶେଷ ଛାନ୍ଦରେ କାବ୍ୟର ବିଚାର ବି କରିଛନ୍ତି । ସେଥିରେ ଥିବା ବହୁ କଥା ମଧ୍ୟରେ ପାଞ୍ଚୋଟି ସନ୍ଧି କଥା

(କ) କ ଅକ୍ଷରେ ହୋଇଛି ନିୟମ (ଖ) କଥା ନୋହେ ଦିବ୍ୟ ଅଦିବ୍ୟ ସମ (ଗ) କେତେ କଉତୁକ ଅଛନ୍ତି ଏଥି (ଘ) କୁଟିଳ ବର୍ଣ୍ଣାବଳିରେ ଅଦ୍ଭୁତ । (ଙ)କବି ହୃଦ-ଅବଲମ୍ବକୁ ଜାତ । ପ୍ରତ୍ୟେକ ପଂକ୍ତି ଭାବ - ବୈଶିଷ୍ଟ ପୂର୍ଣ୍ଣ ଓ ସବୁଥିରେ କାବ୍ୟ ରଚନାର ଗତି ଓ ପରିଣତି ପ୍ରତିଫଳିତ ।

କ ଅକ୍ଷରେ ହୋଇଛି ନିୟମ । କାବ୍ୟପାଠ ଆରମ୍ଭ କରିବାକ୍ଷଣି ପ୍ରତ୍ୟେକ ପାଠକ ଏହି ନିୟମ ସହିତ ନିବିଡ଼ ଭାବରେ ପରିଚିତ ହୁଏ । ଟିକିଏ ଅନୁଶୀଳନ କଲେ ଏହି ନିୟମର ସୃଷ୍ଟି ହୋଇଥିବା ଶବ୍ଦ ଶୃଙ୍ଗାର ପାଠକକୁ ଅଭିଭୂତ କରେ । ସମସ୍ତ କାବ୍ୟରେ ଏହି ନିୟମ ଅନୁସୃତ । କବି ଉପେନ୍ଦ୍ରଙ୍କ ଭାଷାରେ ଏହି ନିୟମ କାବ୍ୟକୁ ପ୍ରଦୀପ୍ତ କରିଛି ।

କଥା ନୋହେ ଦିବ୍ୟ ଅଦିବ୍ୟ ସମ । କଥା କହିଲେ କୃଷ୍ଣ କଥା । ଏହା ହେଉଛି କାବ୍ୟର ବିଷୟବସ୍ତୁ । ଦୀନକୃଷ୍ଣଙ୍କ ସମୟକୁ ଉତ୍କଳରେ କୃଷ୍ଣ କଥାର ଦୁଇଟି ସ୍ରୋତ ବର୍ତ୍ତମାନ, ପ୍ରଥମଟି ସଂସ୍କୃତ (ଦିବ୍ୟ), ଦ୍ବିତୀୟଟି ପ୍ରାକୃତ (ଅଦିବ୍ୟ) । ରସକଲ୍ଲୋଳ ରଚନାରେକବି ଉଭୟ ଦିବ୍ୟ ଓ ଅଦିବ୍ୟ ପଥର ଆଶ୍ରୟ ନେଇଛନ୍ତି । କେତେ କଉତୁକ ଅଛନ୍ତି ଏଥି, ଏହି ପଂକ୍ତି ଶ୍ରୀକୃଷ୍ଣଙ୍କର ମନୋମୁଗ୍ଧକର ଲୀଳା ପୁଣି କାବ୍ୟର କଲ୍ଲୋଳ ଉଭୟକୁ ପ୍ରକାଶ କରେ । ସୀମିତ ଅର୍ଥରେ କଉତୁକ କବିର ପ୍ରିୟଶବ୍ଦ ପର୍ଯ୍ୟାୟଭୁକ୍ତ । ସେତେବେଳେ କେତେ କଉତୁକ କଉତୁକ ଶବ୍ଦର ବହୁଳ ବ୍ୟବହାର ପ୍ରତି ସଙ୍କେତ ଦିଏ ।

କବିହୃଦ ଅବଲମ୍ବକୁ ଜାତ । କାବ୍ୟ ହେଉଛି କବି ହୃଦୟର ପ୍ରକାଶ । କବିର ମନ, ବଚନ, ଅନୁଭବ, ଅନୁମାନ, କଳନା ଓ କଳ୍ପନା ଦ୍ୱାରା ଏହା ଅନୁପ୍ରାଣିତ । ଏଥିରେ କବିର ସାମାଜିକ ପରିବେଶ, ସାମାଜିକ ଚଳଣି, ଶିକ୍ଷା, ଦୀକ୍ଷା, ଜୀବିକା, ଜୀବନର ଆଦର୍ଶ, ସବୁର ମୂର୍ତ୍ତିମନ୍ତ ପ୍ରତିଛବି ବିଦ୍ୟମାନ ।

କୁଟିଳ ବର୍ଣ୍ଣବଳୀରେ ଅଦ୍ଭୁତ । ମଣିଷ କୁଟିଳ ହେଲେ ଦୁଷ୍ଟ, ନାସ୍ତିକ, ମହାପାପୀ, ଅବିବେକ ଶ୍ରେଣୀଭୁକ୍ତ ହୁଏ କିନ୍ତୁ କେଶ, କଟାକ୍ଷ ଓ ଦର୍ଶନ (ହାସ୍ୟ) କୁଟିଳ ହେଲେ ତାହା ଶ୍ରେଷ୍ଠ ସୌନ୍ଦର୍ଯ୍ୟରେ ପରିଗଣିତ ହୁଏ । କବି ଦୀନକୃଷ୍ଣଙ୍କ ଗୋପୀ ସେଥିପାଇଁ କୁଟିଳ କୁନ୍ତଳା, କୁଟିଳ ଦଶନା ଓ କୁଟିଳ କଟାକ୍ଷ । ଶ୍ରୀକୃଷ୍ଣ ହେଉଛନ୍ତି 'କୁଟିଳ ନୀଳ ଅଳକା ବଳୀୟା ।' କାବ୍ୟ ମଧ୍ୟରେ କୁଟିଳ ଶବ୍ଦ ସବ୍ୟସାଚୀ ପରି ଦୁଇ ବିପରୀତ ଦିଗକୁ ଶରସନ୍ଧାନ କରିଛି । ଗୋଟିଏ ହାତରେ ବିଷ ଓ ଅନ୍ୟ ହାତରେ ଅମୃତ ରଖି ଏହା ରସକଲ୍ଲୋଳରୂପୀ କ୍ଷୀରସିନ୍ଧୁରୁ ଉଦ୍‌ଥିତ ଉର୍ବଶୀ । ଏହିପରି କୁଟିଳ ପ୍ରକୃତି ବିଶିଷ୍ଟବର୍ଣ୍ଣାବଳୀ ଶବ୍ଦ ବା ବାଣୀର ଯୋଜନା କାବ୍ୟକୁ ଯେ ବୈଚିତ୍ର୍ୟଯୁକ୍ତ କରିବ ଏହା ନିଃସନ୍ଦେହ । ପ୍ରାଚୀନ ଆଳଂକାରିକ ସେଥିପାଇଁ ବକ୍ରୋକ୍ତିକୁ କାବ୍ୟର ପ୍ରାଣରୂପେ ସ୍ଥିର କରିଛନ୍ତି । ବକ୍ରୋକ୍ତି କାବ୍ୟ ଜୀବିତାମ । ଇଂରେଜୀ ସାହିତ୍ୟର ବିଶିଷ୍ଟ ସମାଲୋଚକ ଉଇଲିୟମ୍ ଏମ୍ପସନ ଏହିପରି ପ୍ରକୃତିବିଶିଷ୍ଟ ଶବ୍ଦ ସବୁକୁ କମ୍ପ୍ଲେକ୍ସ ଓ୍ୟାର୍ଡ୍‌ସ କୁହନ୍ତି । ରସକଲ୍ଲୋଳରୁ ପୂର୍ବେ ଆଲୋଚିତ

ହୋଇଥିବା କାଳ ଓ କଉତୁକ ଶବ୍ଦ ଦ୍ୱୟ ଏହି ଶ୍ରେଣୀର । ଏଥିରେ ଅର୍ଥର ବିଭିନ୍ନତା ଅଛି ।

କିନ୍ତୁ କହିବି କେତେରେ ଅର୍ଥର ବିଭିନ୍ନତା ସଙ୍ଗେ ରୂପରେ ମଧ୍ୟ ଦେଖା ଦିଏ । ତେଣୁ 'କହିବି କେତେ' ଉପରେ କୌଣସି ବିଶ୍ଳେଷଣାତ୍ମକ ବିଚାର କରିବା ପୂର୍ବରୁ ସମଜାତୀୟ ଓ ସମଭାବାପନ୍ନ ପଂକ୍ତି ସବୁକୁ ସଜେଇଦେବା ଆଲୋଚନା ଦୃଷ୍ଟିରୁ ଅନୁକୂଳ-

କହି ଶବ୍ଦକୁ ଆଦ୍ୟରେ ରଖି (୨୭ଥର) କହି ନୋହେ କହି ନୋହଇ, କହି ନପାରି, କହି ନୋହେ ବଚନେ କହି କେ ପାରିବ, କହିକି ପାରିବ ଶେଷ, କହି ଇତ୍ୟାଦି କେ ବଚନେ କରିବ ଭେଦ । (୧୪ଥର)

କହିବାକୁ ଶବ୍ଦକୁ ଆଦ୍ୟରେ ରଖି-

କହିବାକୁ ବଚନେ କେ ଅବା ସିହାଣ, କହିବାକୁ ତା ବଚନେ ନ ପାରି, କହିବାକୁ ସେ ଅତିହିଁ ଅଗୋଚର, କହିବାକୁ ସେ ଅଗୋଚର ମୋତେ, କହିବାକୁ ଆଉ ନଇଲା ଭାଷା, କହିବାକୁ ସେ କଥା ଅସମ୍ଭବ, କହିବାକୁ କେ ବା ସାମରଥା ସେ, କହିବାକୁ ଏ ଶଲ ଯେ, କହିବାକୁ ଅଛି କେଉଁ କବି, କହିବାକୁ ସେମାନେ କଳିନାହିଁ ମୁଁ ମନ, କହିବାକୁ ଆଉ, କିଛି ନାହିଁ କହିବାକୁ ଆଉ ପ୍ରାଣ କାହିଁ ସେ ।

କହିଲେ ଶବ୍ଦଦ୍ୱାରା (୭ଥର)-ଆରମ୍ଭ କହିଲେ ପଦ ବହୁତ ହୋଇବ, କହିଲେ ନସରେ, କହିଲେ ବହୁତ ହେବ ଏ ଚରିତ, କହିଲେ ଶେଷ ନୋହିବ ଲେଶ, କହିଲେ ଅନେକ ହୋଇବ ସିନା, କହିଲେ ନିକି ବଚନେ ସରିବ, କହିଲେ ହେବ ବହୁତ ।

ଅନେକ ସମୟରେ କେ କୁ ଆଦ୍ୟରେ ରଖାଯାଇଛି, (୧୦ଥର)-

କେ କହିବ କେ ଅବା କହିବ କହିବ ଅବା କହିବ ତାହା, କେ ତାହା କହିବ କେ ଅବା ତାହା କହିବ, କେ କହିବ ଅବା ବଚନେ ତାହା ।

ସବୁ ପଂକ୍ତିରେ ସମାନ କଥା, ଗୋଟିଏ ଭାବନା । ବ୍ୟବହାରରେ ମଧ୍ୟ ସବୁଠି ଏକା ନିୟମ, ଏକ ପ୍ରକାର ଗତି, ଏହିସବୁ ପଂକ୍ତି ମଧ୍ୟରେ କବିର ଭାବନାକୁ ଅଧିକ ଜୀବନ୍ତ ଓ ମୂର୍ତ୍ତିମନ୍ତ କରି ପ୍ରକାଶ କରିଛି । କେତେ କହିବି ବା କହିବି କେତେ (୩୦ଥର ଓ ଅନ୍ୟାନ୍ୟ ୨୨ଥର ସର୍ବମୋଟ ୧୨୦

ଥର) ସେଥିପାଇଁ ଏସବୁ ପଂକ୍ତିର ଏକକ ବା ଠୁଳରୂପ ବୃପେ କହିବି କେତେକୁ ଗ୍ରହଣ କରାଯାଇ ପ୍ରବନ୍ଧର ନାମ ରଖାଯାଇଛି । ରସକଲ୍ଲୋଳରେ ଏହିସବୁ ପଂକ୍ତିର ଗତି ଓ ବ୍ୟବହାର ଦେଖି କେହି ହୁଏତ କହିପାରନ୍ତି ଯେ କାବ୍ୟରେ ଏ ସବୁ କବିର ଅଜ୍ଞାତସାରରେ ହିଁ ପ୍ରବେଶ କରିଛି । କିନ୍ତୁ କାବ୍ୟ ମଧ୍ୟରେ ଏହା ଏପରି ସୁଶୃଙ୍ଖଳ ଓ ନିୟମବଦ୍ଧ ଭାବରେ ପାଦର ପ୍ରଥମାଂଶରେ ପ୍ରକାଶ ପାଇଛି ଯେଉଁଥିରୁ କି କାବ୍ୟର କ ଆଦ୍ୟ ନିୟମ ପରିପୂରଣ ହେବା ସଙ୍ଗେ ସଙ୍ଗେ କବିବାଣୀର ବୈଶିଷ୍ଟ ପ୍ରତିପାଦିତ ହୋଥିବା ଜଣାପଡ଼େ। କାଇ ଓ କଉତୁକ ଶବ୍ଦର ବ୍ୟବହାରରେକବିର ସଚେତନତା ଆହୁରି ସ୍ପଷ୍ଟ । ଏଇ ସମଜାତୀୟ ଓ ସମଭାବାପନ୍ନ ପଂକ୍ତିସବୁକୁ ଅନୁଶୀଳନ କଲେ କବି ହୃଦୟର ଦୁଇଟି ସ୍ପଷ୍ଟ ଭାବନାର ପରିଚୟ ମିଳେ । ପ୍ରଥମଟିରେ ଭାବନାର ପ୍ରାଚୁର୍ଯ୍ୟ । କବି ଦୀନକୃଷ୍ଣ ରସକଲ୍ଲୋଳ ମଧ୍ୟରେ ଯେଉଁ ବିଷୟବସ୍ତୁ ଗ୍ରହଣ କରିଛନ୍ତି, ଯେଉଁ ଉପମାରାଜିର ବ୍ୟବହାର କରିଛନ୍ତି ବା ଯେଉଁ ରଚନା ଶୈଳୀ (ରାଗ, ରାଗିଣୀ)ର ଆଶ୍ରୟ ନେଇଛନ୍ତି ସେ ସବୁ ତାଙ୍କ ପୂର୍ବରୁ ତାଙ୍କ ପାଇଁ ସଞ୍ଚିତ ଥିଲା । ଏ ସବୁପାଇଁ କବିକୁ ଭାବିବାକୁ ପଡ଼ିନାହିଁ। କବିଙ୍କର ବୈଶିଷ୍ଟ୍ୟ ହେଉଛି, ସେ ସେଇ ପ୍ରଚଳିତ ଉପାଦାନ ସବୁକୁ ଅତି ନିବିଡ଼ ଭାବରେ ନିଜର କରିପାରିଛନ୍ତି ଓ ପ୍ରକାଶ କଲାବେଳେ ନିଜ ହୃଦୟର ଅନୁଭବ ଭାବି ପ୍ରକାଶ କରୁଛନ୍ତି । 'କେତେ ବା କହିବି ଅନୁଭବ କଥା', ବା କବିଙ୍କର ଅନୁଭୂତି ଏ ସବୁ ଉପାଦାନ ସହ ଏପରି ଭାବରେ ଜଡ଼ିତ ହୋଇଯାଇଛି ଯେ କବି ଆପଣା ପର ଭେଦ ବାରି ପାରି ନାହାତି ଓ ସବୁକୁ ଆପଣାର ଭାବି ପ୍ରକାଶ କରିଛନ୍ତି । କାବ୍ୟ ମଧ୍ୟରେ ଶ୍ରୀକୃଷ୍ଣଙ୍କର ଶୋଭା, ମହିମା, ବାଳଲୀଳା, ଗୋପପୁରର ଆନନ୍ଦ ଉତ୍ସବ ଗୋପବାଳୀମାନଙ୍କର ଲଳିତ ଗମନ, କୃଷ୍ଣ ଓ ଗୋପୀଙ୍କର ଘେନାଘେନି ବାଣୀ, ଶରତ ବର୍ଷା ଓ ବସନ୍ତ ବା ଅନ୍ୟାନ୍ୟ ପ୍ରସଙ୍ଗର ବର୍ଣ୍ଣନା କଲାବେଳେ କବିର ଭାବନାଧାରା ଗଗନ ତାରା ସଦୃଶ, ବର୍ଷା ଧାରା ସଦୃଶ, ସିନ୍ଧୁ ଲହରୀ ସଦୃଶ ଅଗଣିତ ପୁଣି ପୟୋନିଧି ଅଦୃଶ, ବର୍ଷା ଧାରା ସଦୃଶ, ସିନ୍ଧୁ ଲହରୀ ସଦୃଶ ଅଗଣିତ ପୁଣି ପୟୋନିଧି ସଦୃଶ ଅକଳିତ ହୋଇ ଉଠିଛି । ସେସବୁ ବର୍ଣ୍ଣନା କରିବସିଲେ କାବ୍ୟର ଆକାର ଅସମ୍ଭବ ଭାବରେ ଅନାୟତ୍ତ ହୋଇଉଠିବ ।

ସେଥିପାଇଁ କବି ମତ୍ତହସ୍ତୀରୂପୀ ମନକୁ ଆୟତ୍ତ କରିବାପାଇଁ 'କହିବି କେତେ' ବା ସମଜାତୀୟ ପଂକ୍ତି ସବୁକୁ ଅଙ୍କୁଶରୂପେ ବ୍ୟବହାର କରିଛନ୍ତି । 'କହିଲେ ପଦ ବହୁତ ହୋଇବ ।' ଅନେକ ସମୟରେ କବି ଏହି ପଂକ୍ତିଗୁଡ଼ିକୁ ବିଭିନ୍ନ ଭାବନା ଖଣ୍ଡର ମଧ୍ୟବର୍ତ୍ତୀ ସୀମାରେଖା ରୂପେ ଗ୍ରହଣ କରିଛନ୍ତି । ରସକଲ୍ଲୋଳର ତୃତୀୟ ଛାନ୍ଦ ଏହାର ଏକ ବିଶିଷ୍ଟ ଉଦାହରଣ । ଏହି ଛାନ୍ଦର ପ୍ରଥମ ଭାଗରେ (୧ରୁ ୮ ପଦ) ଶ୍ରୀକୃଷ୍ଣ ଦର୍ଶନଲାଳସୀ ଗୋପବାଳାମାନଙ୍କର ବିଭ୍ରମ, ଦ୍ୱିତୀୟ ଭାଗରେ (୧୦ରୁ ୧୭ ପଦ ) ଗୋପ କାମିନୀମାନଙ୍କର ଗମନ ସୌନ୍ଦର୍ଯ୍ୟ ଓ ତୃତୀୟ ଭାଗରେ (୨୯ରୁ ୫୫ ପଦ) ଶ୍ରୀକୃଷ୍ଣଙ୍କ ଦର୍ଶନରେ ସେମାନଙ୍କ ଅବସ୍ଥା ବର୍ଣ୍ଣିତ । ଏହି ତିନୋଟି ଭାବନା ଖଣ୍ଡକୁ ପୃଥକ କରି ସୀମାରେଖା ରୂପେ ରହିଥିବା ପଂକ୍ତି ଦୁଇଟି ହେଉଛି,(୧) କେତେ ରୂପେ ଧାଇଁଲେ ଗୋପବାଳୀ/କେ କହିବ ତା ଅବା ମନେ ଭାଳି । ୩-୯ । (୨) କେତେ ରୂପେ ଧାଇଁଲେ କେତେ ନାରୀ/କହିବାକୁ ତା ବଚନେ ନପାରି । ୩-୨୮ ।

ଦ୍ୱିତୀୟଟିରେ ଦୀନତା ବୈଷ୍ଣବ ମତବାଦ ଦୃଷ୍ଟିରୁ । ଏହିଗୁଣ ବୈଷ୍ଣବର ଶ୍ରେଷ୍ଠତ୍ୱ ପ୍ରତିପାଦନ କରେ । ବୈଷ୍ଣବ କବି ଦୀନକୃଷ୍ଣ ନିଜର ପରିଚୟ ଦେବାକୁ ଯାଇ କୁହନ୍ତି, "କୋଟିଏ କୀଟେ କୀଟ ମୁଁ ଏକ । କେତେ ମୋର ବୁଦ୍ଧି କେତେ ବିବେକ" । ଦୀନତାର ଏଇ ପରିମାପରେ କବିର ସମସ୍ତ ଶକ୍ତି ଲୋପ ପାଇ ଯାଇଛି । ଶ୍ରୀକୃଷ୍ଣଙ୍କର ଶୋଭା, ମହିମା, ଯଶଃ, କୀର୍ତ୍ତିର ବର୍ଣ୍ଣନା କଲାବେଳେ କବି ନିଜକୁ ଅକ୍ଷମ ଅପାରଗ ମନେ କରିଛନ୍ତି । କାବ୍ୟ ମଧ୍ୟରେ 'କହିବି କେତେ' ଏହି ଅକ୍ଷମତା ବା ଅପାରଗତାର ନିଦର୍ଶନ । ଏହି ପଂକ୍ତିରେ କେବଳ ବୈଷ୍ଣବର ଦୀନତା ନୁହେଁ, କବିର ନମ୍ରତା ବି ଅଛି । ସାରଳା, ବଳରାମ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ଓ ଜଗନ୍ନାଥ ପ୍ରଭୃତି କବିକୃତ ଗ୍ରନ୍ଥଚୟର ଏପରି ଉକ୍ତିମାନ ଦେଖି ସମାଲୋଚକ ଦିଗଭ୍ରଷ୍ଟ ହୋଇଛି । କେତେବେଳେ କାହାକୁ ଶିଶୁ, କାହାକୁ ମୂର୍ଖ କହି ନିଜର ଯୁକ୍ତି ବାଢ଼ିଛି ।

ଆଳଙ୍କାରିକ ଦୃଷ୍ଟିରୁ ବିଚାର କଲେ ଏଥିରେ ତିନୋଟି ଅଳଙ୍କାରର ସୂଚନା ମିଳେ । ପ୍ରଥମ ହେଉଛି ଆକ୍ଷେପ ଅଳଙ୍କାର, ଏହାର ଲକ୍ଷଣ ନିର୍ଦ୍ଦେଶ କରି ସାହିତ୍ୟ ଦର୍ପଣାକାର କହନ୍ତି, "ବସ୍ତୁନୋ ବକ୍ତୁମିଷ୍ଟସ୍ୟ ବିଶେଷ

ପ୍ରତିପତ୍ତୟେ ନିଷେଧାଭାଷ ଆପେକ୍ଷ'' ଅର୍ଥାତ୍ ଯଦି କୌଣସି ବିବକ୍ଷିତ ବସ୍ତୁରେ ବିଶେଷତା ସଂପାଦନ କରିବା ପାଇଁ ତାହାର ନିଷେଧ ପ୍ରାୟ ଉକ୍ତିର ପ୍ରଯୁକ୍ତ ହୁଏ, ତାହାକୁ ଆକ୍ଷେପ ଅଳଙ୍କାର କହନ୍ତି । କାବ୍ୟ ମଧ୍ୟରେ କୌଣସି ପ୍ରସଙ୍ଗ ବର୍ଣ୍ଣନା କରୁଥିବାବେଳେ କବି ଦୀନକୃଷ୍ଣ 'କହିବି କେତେ', 'କହିଲେ ପଦ ବହୁତ ହୋଇବ' ପ୍ରଭୃତି ନିଷେଧ ପ୍ରାୟ ଉକ୍ତିର ପ୍ରୟୋଗ କରି ବିବକ୍ଷିତ ବସ୍ତୁର ବିଶେଷତ୍ୱ ସଂପାଦନ କରିଛନ୍ତି । ''ଲୋକାତିଶୟ ସମ୍ପତ୍ତି ବର୍ଣ୍ଣନୋ ଦାତ୍ତମୁଚ୍ୟତେ/ଯଦ୍ୱାପି ପ୍ରସ୍ତୁତ ସ୍ୟାଙ୍ଗ ମହତାଂଚରିତଂ ଭବେତ ।'' ଅର୍ଥାତ୍ ଯଦି ଲୋକାତିଶାୟୀ ବା ଅଲୌକିତ ସମ୍ପତ୍ତିର ବର୍ଣ୍ଣନା ଅଥବା କୌଣସି ମହାପୁରୁଷର ଚରିତ୍ର ବର୍ଣ୍ଣନୀୟ ବସ୍ତୁର ଅଙ୍ଗ ହୋଇଥାଏ ତାହାହେଲେ ଉଦାତ୍ତ ଅଳଙ୍କାର ହୁଏ । ରସକଲ୍ଲୋଳର କବି ମହୀୟାନ ଶ୍ରୀକୃଷ୍ଣଙ୍କର ଯଶ, କୀର୍ତ୍ତି, ମହିମା; ଗୋପୀମାନଙ୍କ ସୌନ୍ଦର୍ଯ୍ୟ ଓ ଗୋପପୁର ଉତ୍ସବ ବର୍ଣ୍ଣନା କଲାବେଳେ ଏହିସବୁ ପଂକ୍ତିର ସାହାଯ୍ୟ ନେଇଥିବା ହେତୁ ଏହା ଉଦାତ୍ତ ଅଳଙ୍କାରର ଅନ୍ତର୍ଭୁକ୍ତ । ପୁଣି ଏପରି କେତୋଟି ପଂକ୍ତି ରହିଛି ଯେଉଁଥିରୁ କି ଅସଂବଧାତିଶୟୋକ୍ତି ଅଳଙ୍କାରର ଲକ୍ଷଣ ପ୍ରକାଶ ପାଏ । ଯେଉଁ ସ୍ଥାନରେ ସମ୍ବନ୍ଧ ଥାଇ ମଧ୍ୟ ସମ୍ବନ୍ଧର ଅଭାବ କୁହାଯାଏ, ତାହାକୁ ଅଂସବଧାତିଶୟୋକ୍ତି ଅଳଙ୍କାର କୁହନ୍ତି । ''କହି ଶେଷ କେ କରିବ ସେ ସୁଖ । କବି ହୋଇଥିଲେ ଦଶଶତ ମୁଖ'', ବା କହି ତାହାର ମହିମା ଅନନ୍ତ । କରି ନାହାନ୍ତି ଆଜଯାଏ ଅନ୍ତ ପ୍ରଭୃତି ପଂକ୍ତିରେ ସମ୍ବନ୍ଧ ଥାଇ ମଧ ସମ୍ବନ୍ଧରେ ଅଭାବ ପରିକଳ୍ପିତ ।

ଲକ୍ଷ୍ୟକରି ଦେଖିଲେ କଥିତ ଭାଷାରୁ ଏହିପରି ବହୁ ଉଦାହରଣ ମିଳିବ । ନାଟ୍ୟକାର ନାଟକରେ ଏଇଥିରୁ ଗୋଟିଏ ଗୋଟିଏ ନିର୍ବାଚନ କରି ହାସ୍ୟରସର ସୃଷ୍ଟିକରେ । କବି ଦୀନକୃଷ୍ଣ ନିଜ ଅଭ୍ୟାସର ଏହି ବ୍ୟବହାରକୁ କାବ୍ୟରେ ମୂର୍ତ୍ତିମନ୍ତ କରି ପ୍ରକାଶ କରିଛନ୍ତି । ଯେ କୌଣସି କାରଣରୁ ହେଉ ଏସବୁ ପଂକ୍ତିର ବହୁଳ ବ୍ୟବହାର ଏହାକୁ ମହତ୍ତ୍ୱପୂର୍ଣ୍ଣ କରିଛି । ଏପରିକି ରସକାଲ୍ଲୋଳକୁ ଅନୁକରଣ କରି କବିତା (Parody) ଲେଖିବାକୁ ଗଲେ, ଏସବୁ ପଂକ୍ତିକୁ ପରିତ୍ୟାଗ କରିବା ଏକ ପ୍ରକାର ଅସମ୍ଭବ

'କହିବି କେତେ' ବା ସମଜାତୀୟ ଅନ୍ୟାନ୍ୟ ପଂକ୍ତିର ବହୁଳ ବ୍ୟବହାର ରସକଲ୍ଲୋଳ ବ୍ୟତୀତ ଜଗମୋହନ ଚାନ୍ଦରେ ମଧ୍ୟ ଅଛି । ବ୍ୟବହାରର

ନିୟମ ଓ ଆଦର୍ଶଦୃଷ୍ଟିରୁ ଉଭୟ ଗ୍ରନ୍ଥ ପ୍ରାୟ ସମାନ । କିନ୍ତୁ କବି ଦୀନକୃଷ୍ଣଙ୍କ ଅନ୍ୟାନ୍ୟ ଗ୍ରନ୍ଥ ରସ ବିନୋଦ, ନାମରତ୍ନ ଗୀତା, ଭୂତକେଳି ଓ ଗୁଣସାଗର ପ୍ରଭୃତିରେ କହିବି କେତେର ଉଲ୍ଲେଖ ଥିଲେ ବି, ତାହା ଏତେ ସ୍ପଷ୍ଟ ନୁହେଁ । ପକ୍ଷାନ୍ତରରେ ରସବିନୋଦ ଓ ନାମରତ୍ନ ଗୀତାରେ କହିବି କେତେ ଅପେକ୍ଷା କହିବା ବିସ୍ତାରି ବିଶେଷ ଭାବରେ ପ୍ରଯୁକ୍ତ । କାଳ ଓ କଉତୁକ ଅପେକ୍ଷା ଦିବ୍ୟ ଶବ୍ଦ ବିଶେଷ ପ୍ରାଧାନ୍ୟ ଲାଭ କରିଛି । ହୁଏତ ଏସବୁ ପାର୍ଥକ୍ୟ ଅନୁଶୀଳନ କରି ରସବିନୋଦ ଓ ରସକଲ୍ଲୋଳର କବିଙ୍କୁ ସ୍ୱତନ୍ତ୍ର ରୂପେ ଗ୍ରହଣ କରାଯାଇ ପାରେ । କିନ୍ତୁ ଏହି କୁଟିଳ ପ୍ରକୃତି ବିଶିଷ୍ଟ ଶବ୍ଦ ସବୁ ପ୍ରସଙ୍ଗ ପରିବର୍ତ୍ତନ ସଙ୍ଗେ ସଙ୍ଗେ ପରିବର୍ତ୍ତିତ ହୋଇଥାନ୍ତି । ରସବିନୋଦର ତତ୍ତ୍ୱ ବିଶ୍ଳେଷଣ ରସକଲ୍ଲୋଳ ବା ଜଗମୋହନ ଛାନ୍ଦରେ ନାହିଁ । ସେଥିପାଇଁ 'କହିବା ବିସ୍ତାରି' 'ନିରୋଳା କହିବା' ବା 'ଦୁଧରୁ ସର ବାହାର କରିବା', ରସକଲ୍ଲୋଳର ପ୍ରସଙ୍ଗ ଦୃଷ୍ଟିରୁ ଆବଶ୍ୟକ ହୋଇନାହିଁ ବରଂ କବି ଏ ବିଷୟରେ ନୀରବ ରହିପାଠକ ସାଧାରଣ ତଥା ସମାଲୋଚକ ଉପରେ ଏହି ଭାର ଅର୍ପଣ କରିଛନ୍ତି । କବିଙ୍କ ଭାଷାରେ, କେବଳ କ୍ଷୀର ସିନ୍ଧୁ ପ୍ରାୟେ ମଛି । କର ରସ ଜାତ । କରି ଧୀଷରା ମନ୍ଦର ପର୍ବତ । ତେଣୁ ରସକଲ୍ଲୋଳ ଓ ରସବିନୋଦର କବିଙ୍କୁ ଜଣେ ବା ଦୁଇଜଣ କରିବାର ଗୁରୁ ଦାୟିତ୍ୱ 'କାଳ', 'କଉତୁକ' ଓ 'କହିବି' କେତେ ଉପରେ ରଖିବା ଅନୁଚିତ । ବିଶେଷକରି 'କହିବି କେତେ', 'କହିବା ବିସ୍ତାରି' ଓ 'ନିରୋଳି କହିବା' ପ୍ରଭୃତି ପଂକ୍ତି କେବଳ ରସକଲ୍ଲୋଳାକାର ବା ବିନୋଦିକାରଙ୍କର ନୁହେଁ । ଏହା ଉପରେ ପ୍ରାଚୀନ ସମସ୍ତ ଓଡ଼ିଆ କବିଙ୍କର ଅବାଧିକ ଅଧିକାର ଅଛି ଓ ଏଅସବୁକୁ ଆପଣାର କରି ଦୀନକୃଷ୍ଣ ନିଜର ସ୍ୱକୀୟତା ରଖିଛନ୍ତି ।

-o-